

# ଭକ୍ତକବି ସାଲବେଗ:
# ଜୀବନୀ ଓ ପଦ୍ୟାବଳୀ

# ଭକ୍ତକବି ସାଲବେଗ

## ଜୀବନୀ ଓ ପଦାବଳୀ

ଶ୍ରୀ ନୀଳମଣି ମିଶ୍ର
କ୍ୟୁରେଟର୍, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ,
ଭୁବନେଶ୍ୱର

ଗ୍ରନ୍ଥ ମନ୍ଦିର

# ଭୂମିକା

ଓଡ଼ିଆ ସାହିତ୍ୟରେ ଭଜନ ଗୋଟିଏ ସମୃଦ୍ଧ ବିଭାଗ । ଏହି ବିଭାଗରେ ସାରଳା ଦାସଙ୍କ ଯୁଗରୁ ଆରମ୍ଭ କରି ଆଜି ସୁଦ୍ଧା ଶହ ଶହ କବି କୋବିଦଙ୍କ ରଚନା ସ୍ଥାନପାଇଛି । ସେହି ଭଜନଗୁଡ଼ିକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଏ—ଶ୍ରୀ ଜଗନ୍ନାଥ ଭଜନ, ଅଣାକାରଭଜନ ଓ ଶ୍ରୀକୃଷ୍ଣ ପ୍ରଭୃତି ଅନ୍ୟାନ୍ୟ ଦେବଦେବୀଙ୍କ ଭଜନ । ଏହା ମଧ୍ୟରେ ରାଜ୍ୟ ସାଂସ୍କୃତିକ ବିଭାଗର ଭୂତପୂର୍ବ ଶାସନ ସଚିବ ଶ୍ରୀଯୁକ୍ତ ରମାକାନ୍ତ ରଥଙ୍କ ଉଦ୍ୟମ ଫଳରେ ଗୋଟିଏ ଭଜନ ସଂଗ୍ରହ ପ୍ରକାଶ ପାଇଛି । ସେହି ଭଜନଗୁଡ଼ିକ ସଂଗ୍ରହ କରୁଥିବା ସମୟରେ, ସାଲବେଗଙ୍କ ନାମରେ ଭଣିତା ହୋଇଥିବା ଭଜନଗୁଡ଼ିକର ଉପାଦେୟତା ପ୍ରତି ମୋର ଦୃଷ୍ଟି ଆକର୍ଷିତ ହୋଇଥିଲା । ତେଣୁ ସାଲବେଗଙ୍କ ଭଜନଗୁଡ଼ିକ ଏକତ୍ର ସଙ୍କଳନ କରିବାର ବାସନା ମୋ ମନରେ ଜାଗ୍ରତ ହୋଇଥିଲା ।

ରାଜ୍ୟ ସଂଗ୍ରହାଳୟରେ ଥିବା ପୋଥିଗୁଡ଼ିକର ବିଶେଷ ଅଧ୍ୟୟନ ଫଳରେ ସାଲବେଗଙ୍କ ନାମରେ ଭଣିତ ଆହୁରି କେତେଗୁଡ଼ିଏ ଭଜନ ମୁଁ ପାଇଲି । ବନ୍ଧୁ ଶ୍ରୀନିବାସ ରଥ ତାଙ୍କ ସଙ୍କଳନରୁ କେତୋଟି ସାଲବେଗଙ୍କ ଭଜନ ମୋତେ ଯୋଗାଇଦେଲେ । ପ୍ରାଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତିଙ୍କ ଲିଖିତ 'ସାଲବେଗ' ଶୀର୍ଷକ ପ୍ରବନ୍ଧ ମଧ୍ୟ ମୋତେ ଏ ଦିଗରେ ଉତ୍ସାହ ପ୍ରଦାନ କଲା । ତଦ୍‌ବ୍ୟତୀତ ପ୍ରସିଦ୍ଧ ଐତିହାସିକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ମଧ୍ୟ ସାଲବେଗଙ୍କ ଭଜନ ସଙ୍କଳନ କରିବାକୁ ମୋତେ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ତତ୍‌ସମ୍ପର୍କୀୟ ସମସ୍ତ ପ୍ରକାର ଐତିହାସିକ ଉପାଦାନ ଅକୁଣ୍ଠ ଚିତ୍ତରେ ଯୋଗାଇଦେଲେ ।

ଏହା ବ୍ୟତୀତ ମୋର ବନ୍ଧୁ ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗର ସମ୍ପାଦକ ଶ୍ରୀ ଭଗବାନ ପଣ୍ଡା, ଅନ୍ୟତମ ସମ୍ପାଦିକା ଶ୍ରୀମତୀ ପ୍ରମିଳା ମିଶ୍ର ମୋର ଉଦ୍ୟମକୁ ସଫଳ କରିବା ଲାଗି ସବୁପ୍ରକାର ସାହାଯ୍ୟ କରି ମୋତେ ଆହୁରି ଉତ୍ସାହିତ କଲେ । ଏହି ପ୍ରସଙ୍ଗରେ ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ଡକ୍ଟର କୁଞ୍ଜବିହାରୀ ଦାଶ ଓ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଆଶୀର୍ବାଦ ଓ ପରାମର୍ଶ ମୋତେ କମ୍ ଉତ୍ସାହିତ କରିନାହିଁ । ତେଣୁ ଆଜି ଏହି ଅବସରରେ ମୋର ହିତୈଷୀ, ଶୁଭଚିନ୍ତକ, ସାହାଯ୍ୟକାରୀ ବ୍ୟକ୍ତିମାନଙ୍କଠାରେ ମୁଁ ଭକ୍ତିପୂତ ଶ୍ରଦ୍ଧା ନିବେଦନ କରୁଛି । ବିଶେଷତଃ ଖ୍ୟାତିପ୍ରାପ୍ତ ସାହିତ୍ୟିକ ଓ କବି ଶ୍ରୀଯୁକ୍ତ ରମାକାନ୍ତ ରଥ ଆଇ.ଏ.ଏସ୍‌ଙ୍କ ପ୍ରେରଣା ମୁଁ ଜୀବନରେ ଭୁଲିପାରିବି ନାହିଁ । ଅଧିକ ସଂଖ୍ୟାରେ ଓଡ଼ିଆ

ବନ୍ଧ ରଚନା କରିବା ଓ ପ୍ରାଚୀନ କବିମାନଙ୍କ ଲେଖାଗୁଡ଼ିକୁ ସମ୍ପାଦନା କରିବାଲାଗି ସେ ମହୋଦୟ ମୋତେ ସବୁବେଳେ ପ୍ରେରଣା ଦେଇଛନ୍ତି । ତାଙ୍କର ପ୍ରେରଣା ଓ ସଦିଚ୍ଛା ଫଳରେ ଆଜ 'ଭକ୍ତକବି ସାଲବେଗ' ପୁସ୍ତକ ଆତ୍ମପ୍ରକାଶ କରିବାକୁ ଯାଉଛି ।

ସମସ୍ତଙ୍କ ସହଯୋଗ ଫଳରେ ଏବେ 'ଭକ୍ତକବି ସାଲବେଗ' ପୁସ୍ତକଟି ଆତ୍ମପ୍ରକାଶ କରିପାରିଛି । ଏଥିରେ ସଙ୍କଳନଜନିତ ଦୋଷତ୍ରୁଟି ରହିବା ଅସମ୍ଭବ ନୁହେଁ । ତେଣୁ ଭକ୍ତକବି ସାଲବେଗଙ୍କ ଭକ୍ତିଭାବାପ୍ଳୁତ ଭଜନ ଓ ତତ୍ସମ୍ବନ୍ଧୀୟ ଆଲୋଚନା ଉଦାର ଦୃଷ୍ଟିରେ ପାଠ କରିବା ଲାଗି ମୁଁ ଓଡ଼ିଶାର ପାଠକ ଓ ଆଲୋଚକମାନଙ୍କୁ ବିନମ୍ର ନିବେଦନ କରୁଛି ।

ବିନୀତ
**ନୀଳମଣି ମିଶ୍ର**

ଭୁବନେଶ୍ୱର
ଶ୍ରୀପଞ୍ଚମୀ, ୧୯୭୬

# ଦ୍ୱିତୀୟ ସଂସ୍କରଣ

ଓଡ଼ିଶାର ବିଜ୍ଞ ସମାଲୋଚକ ଓ ସୁଧୀ ପାଠକପାଠିକାବୃନ୍ଦ 'ସାଲବେଗ' ବହିଟିକୁ ଆଦର କରିଛନ୍ତି; ନୋହିଲେ ଦୁଇବର୍ଷ ମଧ୍ୟରେ ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବା ସମ୍ଭବ ହୋଇନଥା'ନ୍ତା ।

ଏହା ମଧ୍ୟରେ ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାର ଲାଗି ନୂତନ ସଂଗୃହୀତ ପୋଥି-ଗୁଡ଼ିକରୁ ସାଲବେଗଙ୍କ ନାମ ଭଣିତା ଥିବା କେତୋଟି ନୂତନ ଭଜନ ମିଳିଲା ଏବଂ ବନ୍ଧୁ ଶ୍ରୀନିବାସ ରଥ ଆଉ କେତୋଟି ଭଜନ ଯୋଗାଇଦେଲେ । ସେହିସବୁଡ଼ିକ ପ୍ରସ୍ତୁତ ସଂସ୍କରଣରେ ସନ୍ନିବେଶିତ ହୋଇଛି । ତେଣୁ ପ୍ରଥମ ସଂସ୍କରଣ ପରି ଦ୍ୱିତୀୟ ସଂସ୍କରଣଟି ପାଠକ ପାଠିକା ଓ ଆଲୋଚକଙ୍କ ମହଲରେ ଆଦୃତ ହେବାର ଆଶା କରାଯାଏ ।

ସାଲବେଗ ମୁସଲମାନ ଭକ୍ତକବି ଭାବରେ ଓଡ଼ିଶାର ଘରେ ଘରେ ସୁପରିଚିତ । ତାଙ୍କ ଭଜନଗୁଡ଼ିକ ଓଡ଼ିଆ ଭକ୍ତ-ସମାଜରେ ଏତେ ଲୋକପ୍ରିୟ ଯେ, ପରବର୍ତ୍ତୀକାଳୀନ ଭକ୍ତକବିମାନେ ତାଙ୍କ ଭଜନଗୁଡ଼ିକର ଅନୁକରଣ କରିବାର ଲୋଭ ସମ୍ବରଣ କରିପାରି ନାହାନ୍ତି ।

ଯା'ହେଉ, ଦ୍ୱିତୀୟ ସଂସ୍କରଣଟି ଓଡ଼ିଶାର ସୁଧୀବୃନ୍ଦଙ୍କ ହାତରେ ଅର୍ପଣ କରୁଛି । ସେଇମାନେ ଏହାର ପ୍ରକୃତ ଆଲୋଚକ ।

ପ୍ରସ୍ତୁତ ପୁସ୍ତକର ନାମ ପ୍ରଥମ ସଂସ୍କରଣରେ ଭକ୍ତକବି ସାଲବେଗ : ଜୀବନୀ ଓ ଭଜନାବଳୀ' ବୋଲି ଥିଲା; କିନ୍ତୁ ଦ୍ୱିତୀୟ ସଂସ୍କରଣରେ 'ଭଜନାବଳୀ' ସ୍ଥାନରେ 'ପଦ୍ୟାବଳୀ' କରାଯାଇଛି । ଏହାର କାରଣ ସ୍ୱରୂପ ଏତିକି କୁହାଯାଇ ପାରେ ଯେ, ସାଲବେଗଙ୍କ ନାମରେ ଭଣିତ ସମସ୍ତ ଗୀତ ଭଜନ କୋଟିର ନୁହେଁ । ତେଣୁ 'ଗୋପାଳକୃଷ୍ଣ ପଦ୍ୟାବଳୀ' ଆଦି ପରି ସାଲବେଗଙ୍କ ପଦ୍ୟାବଳୀ ବୋଲି ଉଲ୍ଲେଖ କରିବା ଅସମୀଚୀନ ନୁହେଁ । ପ୍ରସ୍ତୁତ ସଂସ୍କରଣ ଲାଗି କେତୋଟି ନୂତନ ପଦ୍ୟ ବନ୍ଧୁ ଶ୍ରୀନିବାସ ରଥ ଯୋଗାଇ ଥିବାରୁ, ସେ ଅଶେଷ ଧନ୍ୟବାଦର ପାତ୍ର ।

ବିନୀତ
**ନୀଳମଣି ମିଶ୍ର**

ବୁଦ୍ଧପୂର୍ଣ୍ଣିମା
୨୨ ମେ ୧୯୭୮
**ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର**

# ତୃତୀୟ ସଂସ୍କରଣ

ଓଡ଼ିଶାର ବିଜ୍ଞ ପାଠକ ପାଠିକା 'ସାଲବେଗ'ଙ୍କ ପଦ୍ୟଗୁଡ଼ିକୁ ଆଦରର ସହିତ ଗ୍ରହଣ କରିଛନ୍ତି; ନୋହିଲେ ଏତେ ଅଳ୍ପଦିନ ମଧ୍ୟରେ ପ୍ରସ୍ତୁତ ପୁସ୍ତକର ତୃତୀୟ ସଂସ୍କରଣ ପ୍ରକାଶ ପାଇ ନଥାନ୍ତା । ଏହି ସଂସ୍କରଣରେ ଏକଶହ ତେଇଶିଟି ପଦ୍ୟ ସନ୍ନିବେଶିତ ହୋଇଛି ।

ସାଲବେଗ ଯବନ କୁଳରେ ଜାତ ହୋଇଥିଲେ ହେଁ, ତାଙ୍କର ଭକ୍ତିଭାବନା ଯେ କୌଣସି ହିନ୍ଦୁ-ଭକ୍ତକବିଙ୍କ ତୁଳନାରେ ଆଦୌ ଊଣା ନୁହେଁ । ତାଙ୍କ ରଚିତ ଭକ୍ତିଭାବାତ୍ମକ ପଦ୍ୟଗୁଡ଼ିକ ପ୍ରତ୍ୟେକ ଧରଣର ପାଠକ ପାଠିକାଙ୍କ ହୃଦୟକୁ ସ୍ପର୍ଶ କରିପାରିଛି । ସେଇଥିପାଇଁ ପରବର୍ତ୍ତୀ ଯୁଗର କବିମାନେ ତାଙ୍କ ପଦ୍ୟର ଅନୁକରଣ ତଥା ଅନୁସରଣ କରିବାର ଲୋଭ ସମ୍ବରଣ କରିପାରି ନାହାନ୍ତି ।

ସାଲବେଗଙ୍କ ସମ୍ପର୍କରେ ମୋର ଏହି ପୁସ୍ତକ ପ୍ରକାଶ ପାଇବା ପରେ, ବହୁ ଆଲୋଚକ ବନ୍ଧୁ ତାଙ୍କ ସମ୍ବନ୍ଧରେ ବିଭିନ୍ନ ଦିଗରୁ ଆଲୋଚନା କରୁଛନ୍ତି, ଏହା କମ୍ ଆନନ୍ଦର ବିଷୟ ନୁହେ ! ଭକ୍ତକବିଙ୍କ ସମ୍ବନ୍ଧରେ ଯେତେ ବେଶି ଆଲୋଚନା ହେବ, ଆମ ସମାଲୋଚନା ସାହିତ୍ୟର ଗନ୍ତାଘର ସେତିକି ସମୃଦ୍ଧ ହେବ ଏବଂ ସାଲବେଗଙ୍କ ପଦ୍ୟାବଳୀର ପ୍ରଶସ୍ତି ସର୍ବସାଧାରଣଙ୍କ ସ୍ତରରେ ଗୀତ ହୋଇ ପାରିବ । ଏହା ଆମ ରାଜ୍ୟ ପକ୍ଷରେ କମ୍ ଗୌରବର ବିଷୟ ହେବନାହିଁ ।

ଦୋଳପୂର୍ଣ୍ଣିମା, — ବିନୀତ
ମାର୍ଚ୍ଚ, ୧୯୮୦ — ନୀଳମଣି ମିଶ୍ର

# ସୂଚୀ

ବିଷୟ ପୃଷ୍ଠା



**ପରିଶିଷ୍ଟ**



□□□

# ଓଡ଼ିଶା ଇତିହାସର ଏକ ବିହଙ୍ଗମ ଦୃଷ୍ଟି

ଓଡ଼ିଶାର ଯେ କୌଣସି ବିଷୟ ଉପରେ ଆଲୋଚନା କରିବାକୁ ହେଲେ, ସର୍ବ-ପ୍ରଥମେ ଓଡ଼ିଶାର ଇତିହାସ ଆଲୋଚନା କରିବା ଅପରିହାର୍ଯ୍ୟ । କାରଣ, ବଳିଷ୍ଠ ଜାତୀୟ ଚେତନା ନ ଥାଇ କୌଣସି ଜାତି କଳା, ସାହିତ୍ୟ, ଶିଳ୍ପ ଓ ବାଣିଜ୍ୟର ଉତ୍ତୁଙ୍ଗ ଶିଖରକୁ ଆରୋହଣ କରିପାରେନାହିଁ । ତେଣୁ କେଉଁ ଜାତୀୟ ଚେତନାର ପରିପ୍ରେକ୍ଷୀରେ ଓଡ଼ିଶାର ଜାତୀୟ ଜୀବନ ସୁଗଠିତ ହୋଇଥିଲା, ତାହାର ପୁଙ୍ଖାନୁପୁଙ୍ଖ ଆଲୋଚନା କେବଳ ଜାତିର ଇତିହାସରୁ ହିଁ ମିଳିଥାଏ । କାରଣ ଇତିହାସ ହେଉଛି ଜାତୀୟ ଜୀବନର ଦର୍ପଣ; ଜାତିର ଇତିହାସକୁ ବାଦ୍ ଦେଇ ସଂସ୍କୃତି ସମ୍ବନ୍ଧରେ ଆଲୋଚନା କରାଯାଇ ନପାରେ । ତେଣୁ ଭକ୍ତକବି ସାଲବେଗ ଯେଉଁ ଦେଶର ପାଣିପବନରେ ପୁଷ୍ଟ ହୋଇ, ସାହିତ୍ୟର ସେତୁବନ୍ଧରେ ବାଲୁକା ପକାଇପାରିଥିଲେ, ସେହି ଦେଶର ଇତିହାସ ଆଲୋଚନା ସର୍ବାଦୌ କାମ୍ୟ ।

ଆଜିର ଓଡ଼ିଶା ଦିନେ ଜଗଦ୍‌ବାସୀଙ୍କ ସମକ୍ଷରେ କଳିଙ୍ଗ ନାମରେ ପ୍ରସିଦ୍ଧି ଲାଭ କରିଥିଲା । ଏହି କଳିଙ୍ଗ ଦେଶ ମହାଭାରତ ଯୁଗରୁ ଏକ ପ୍ରଖ୍ୟାତ ଦେଶ ରୂପେ ପରିଚିତ ଥିଲା । ମହାଭାରତ ଯୁଦ୍ଧରେ କଳିଙ୍ଗରାଜାଙ୍କ ଯୋଗଦାନ ମହର୍ଷି ଦ୍ୱୈପାୟନ ବ୍ୟାସଦେବଙ୍କ ଲେଖନୀରେ ଅମର ହୋଇ ରହିଛି । କେବଳ ମହାଭାରତ ନୁହେଁ; ବ୍ରହ୍ମ, ବ୍ରହ୍ମାଣ୍ଡ, ବିଷ୍ଣୁ ଆଦି ପ୍ରଖ୍ୟାତ ପୁରାଣଗ୍ରନ୍ଥମାନଙ୍କରେ କଳିଙ୍ଗର ପ୍ରସିଦ୍ଧି, କଳିଙ୍ଗବୀରମାନଙ୍କର ପ୍ରଖ୍ୟାତି, କଳିଙ୍ଗ ରାଜକନ୍ୟାର ସୌନ୍ଦର୍ଯ୍ୟ ତଥା କଳିଙ୍ଗଦେଶର ପ୍ରାକୃତିକ ବର୍ଣ୍ଣନା ପରିପୂର୍ଣ୍ଣ ହୋଇ ରହିଛି ।

ପ୍ରାଚୀନ ପୁରାଣ ଗ୍ରନ୍ଥଗୁଡ଼ିକ ବ୍ୟତୀତ ବୌଦ୍ଧ ଓ ଜୈନ ଗ୍ରନ୍ଥମାନଙ୍କରେ ମଧ୍ୟ କଳିଙ୍ଗର ଖ୍ୟାତି ଓ କଳିଙ୍ଗର ବଣିକମାନଙ୍କର ସୁଦୂରପ୍ରସାରୀ ବାଣିଜ୍ୟଆଦିର ଉଲ୍ଲେଖରହିଛି ।

ସମଗ୍ର ଭାରତରେ ନିଜ ପରାକ୍ରମର ଡିଣ୍ଡିମ ବଜାଇବା ପରେ, ପୂର୍ବଭାରତର ଉନ୍ନତ ରାଜ୍ୟ କଳିଙ୍ଗ ବିରୁଦ୍ଧରେ, ମଗଧ ସମ୍ରାଟ୍ ଅଶୋକଙ୍କ ଯୁଦ୍ଧ ଘୋଷଣା ଇତିହାସରେ ଏକ ଚମକପ୍ରଦ ଘଟଣା । ପ୍ରଜାତନ୍ତ୍ର ରାଜ୍ୟ କଳିଙ୍ଗର ଜନସାଧାରଣ ଶତ୍ରୁ ଆଗରେ ପଦାନତ ହେବା ଅପେକ୍ଷା, ଲକ୍ଷ ଲକ୍ଷ ସଂଖ୍ୟାରେ ଆତ୍ମାହୁତି ଦେଇ ଦେଶ-ମାତୃକାର ଜୟଗାନ କରିଥିଲେ । ଶେଷକୁ ଦୁର୍ଦ୍ଧର୍ଷ ମଗଧବାହିନୀ ହସ୍ତରେ କଳିଙ୍ଗର ପରାଜୟ ଘଟିଲା ସତ; କିନ୍ତୁ ଇତିହାସରେ କଳିଙ୍ଗ ବୀରମାନଙ୍କ ଅଭୂତପୂର୍ବ ଦେଶାତ୍ମବୋଧ ତଥା ବୀରତ୍ୱର କାହାଣୀ ଯୁଗ-ଯୁଗାଧିରି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଲା । ତା' ସହିତ ବିଜେତା ସମ୍ରାଟ ଅଶୋକଙ୍କର ମଧ୍ୟ ଅସାଧାରଣ ପରିବର୍ତ୍ତନ ଘଟିଲା । ସେ ପ୍ରଚଣ୍ଡ ସ୍ୱଭାବ ତ୍ୟାଗକରି

'ଧର୍ମାଶୋକ'ରେ ପରିଣତ ହେଲେ । ଏହି ଦେବଭୂମି କଳିଙ୍ଗରୁ ତଥାକଥିତ ଉପଗୁପ୍ତଙ୍କ ପାଖରେ ଦୀକ୍ଷିତହୋଇ, ଅଶୋକ ବୌଦ୍ଧଧର୍ମର ଶ୍ରେଷ୍ଠପ୍ରଚାରକରୂପେ ଜଗତ୍‌ବିଖ୍ୟାତ ହେଲେ ।

କଳିଙ୍ଗର ସେ ପଦାନତ ଅବସ୍ଥା ବେଶି ଦିନ ରହିଲନାହିଁ । ଗୋଟିଏ ବୀରଜାତି ବେଶି ଦିନ ମସ୍ତକ ଅବନତ କରି ରହିପାରେ ନାହିଁ । ତା'ପରେ ଅଭ୍ୟୁତ୍ଥାନ ହେଲା ମହିମାଶାଳୀ ସମ୍ରାଟ୍ ଖାରବେଳଙ୍କର । ସେ ଦକ୍ଷିଣରେ ପାଣ୍ଡ୍ୟ ରାଜ୍ୟଠାରୁ ଆରମ୍ଭକରି ଉତ୍ତରରେ 'ଗୋରଥ ଗିରି' ଅର୍ଥାତ୍ ମଥୁରା ପର୍ଯ୍ୟନ୍ତ ବିଜୟ ଅଭିଯାନ ଚଳାଇ କଳିଙ୍ଗର ହୃତଗୌରବର ପୁନରୁତ୍ଥାନ କରାଇଲେ । ତାଙ୍କରି ନେତୃତ୍ୱରେ କଳିଙ୍ଗ ପୁଣି ଏକ ସମୃଦ୍ଧିଶାଳୀ ଦେଶରେ ପରିଣତ ହୋଇପାରିଲା ।

ସମ୍ରାଟ୍ ଖାରବେଳଙ୍କ ପରେ ଦୀର୍ଘଦିନବ୍ୟାପୀ କଳିଙ୍ଗର ଭାଗ୍ୟାକାଶ ଧୂମାଚ୍ଛନ୍ନ ହୋଇ ରହିଲା । ସେହି ସୁଯୋଗରେ ସମୁଦ୍ରଗୁପ୍ତ, କନିଷ୍କ, ଶ୍ରୀହର୍ଷ ଓ ଶଶାଙ୍କଙ୍କ ଶାସନ କଳିଙ୍ଗରେ ସୂତ୍ରପାତ ହୋଇଥିବାର ଅନୁମାନ କରାଯାଏ । ପ୍ରାୟ ପାଞ୍ଚ ଶହ ବର୍ଷ ବ୍ୟାପୀ କଳିଙ୍ଗବାସୀ ବିଭିନ୍ନ ଶାସନାଧୀନରେ ରହି ନିଜର ଗୌରବ ହରାଇବସିଲେ ।

ତା'ପରେ ଅବଶ୍ୟ 'ମାଠର' ଓ ଶୈଳୋଦ୍ଭବ ରାଜବଂଶର ଅଭ୍ୟୁତ୍ଥାନ କଳିଙ୍ଗ ପକ୍ଷରେ ଏକ ବରଦାନ ସ୍ୱରୂପ ହୋଇଥିଲା ସତ୍ୟ; କିନ୍ତୁ ଖାରବେଳଙ୍କ ସମୟର ଗୌରବ ଆଉ ଫେରିପାରିଲା ନାହିଁ । ଯାହାହେଉ, ପୁଣି ଜାତୀୟଜୀବନ ସଂଗଠିତ ହେବାକୁ ଲାଗିଲା ଏବଂ କଳିଙ୍ଗବାସୀ ଗୋଟିଏ ଶାସନାଧୀନରେ ରହିବା ଲାଗି ପୁଣି ଆପ୍ରାଣ ଚେଷ୍ଟା ଚଳାଇଲେ ।

ଏହି ଅଦମ୍ୟ ଚେଷ୍ଟାର ଫଳସ୍ୱରୂପ 'ଭୌମକର' ବଂଶର ଉତ୍ଥାନ ସମ୍ଭବ ହୋଇ-ପାରିଲା । ଭୌମକରବଂଶର ରାଜାମାନେ ଦୀର୍ଘ ଦୁଇ ଶହ ବର୍ଷ ବ୍ୟାପୀ ସୁଶାସନ ଚଳାଇ ଦେଶମାତୃକାର ସର୍ବବିଧ ଉନ୍ନତି କରିବାରେ ବଦ୍ଧପରିକର ହେଲେ । 'ଭୌମକର'ମାନଙ୍କ ରାଜତ୍ୱ ସମୟରେ ଦେଶର କଳା ଓ ସଂସ୍କୃତି କ୍ଷେତ୍ରରେ ଆଶାତୀତ ସମୁନ୍ନତି ସମ୍ଭବ ହେଲା । ଶାକ୍ତ ମତବାଦର ପ୍ରଭାବରେ 'ତନ୍ତ୍ରଯାନ' ସମ୍ପ୍ରଦାୟ ଭାରତର ଭାଗ୍ୟାକାଶରେ ଯେଉଁ ପରିବର୍ତ୍ତନ ଆଣିଥିଲା ତାହିଁକି, ପ୍ରାଚୀନ ଓଡ଼ିଶାକୁ ଏକ କଳାପ୍ରିୟ ରାଜ୍ୟରୂପେ ଗଢ଼ି ତୋଳିବାରେ ଯଥେଷ୍ଟ ସାହାଯ୍ୟ କରିଥିଲା ।

ସେହିଠାରେ ସୋମବଂଶୀ ରାଜାମାନେ ଉତ୍କଳର ପଶ୍ଚିମାଞ୍ଚଳରେ 'କୋଶଳ' ନାମଧାରୀ ରାଜ୍ୟରେ ଶାସନକର୍ତ୍ତା ରୂପେ ଧୀରେ ଧୀରେ ମୁଣ୍ଡ ଟେକୁଥିଲେ । ଭୌମକର-ମାନଙ୍କର ଦୁର୍ବଳତାର ସୁଯୋଗ ନେଇ ସେମାନେ ଉତ୍କଳର କେନ୍ଦ୍ର ଶାସନକୁ ହସ୍ତଗତ କଲେ । ସୋମବଂଶୀମାନେ 'କେଶରୀ' ଉପାଧିରେ ଭୂଷିତହୋଇ ପ୍ରାୟ ତିନି ଅଧିକେ ଦୁଇଶହ ବର୍ଷବ୍ୟାପୀ ଏ ଦେଶର ଶାସନକ୍ଷେତ୍ରରେ ଅଧିଷ୍ଠିତ ହୋଇଥିଲେ । ସେମାନଙ୍କ ସମୟରେ ଉଭୟ ଶାକ୍ତ ମତବାଦ ଓ ଶୈବ ମତବାଦ ପାରସ୍ପରିକ ସାହଚର୍ଯ୍ୟରେ ଭାରତର ଧର୍ମଜଗତରେ ପ୍ରତିଷ୍ଠିତ ହୋଇପାରିଥିଲା । 'ଭୌମ'ମାନଙ୍କଠାରୁ ଆରମ୍ଭକରି 'ସୋମ'-ମାନଙ୍କ ପର୍ଯ୍ୟନ୍ତ ଏହି ଦୀର୍ଘ ଚାରିଶହ ବର୍ଷ ବ୍ୟାପୀ କଳା, ବାଣିଜ୍ୟ ଓ ସାହିତ୍ୟ କ୍ଷେତ୍ରରେ ପ୍ରାଚୀନ ଓଡ଼ିଶା ଭାରତରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ ହୋଇପାରିଥିଲା ।

ସୋମବଂଶୀ ରାଜାମାନେ ମଧ୍ୟ ପୂର୍ବ ରାଜବଂଶ ପରି ମୃହବିବାଦରୂପକ ଦୁର୍ବିପାକରେ ପଡ଼ି ଶାସନକ୍ଷେତ୍ରରୁ ଅସ୍ତମିତ ହୋଇଗଲେ । ସେମାନଙ୍କ ଦୁର୍ବଳତାର ସୁଯୋଗ ନେଇ ଆଖପାଖ ଅଞ୍ଚଳରେ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜବଂଶ ସ୍ୱାଧୀନ ଭାବରେ ଶାସନ ଚଳାଇବା ଲାଗି, କେନ୍ଦ୍ର ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । 'ସୋମ'ମାନଙ୍କ କେନ୍ଦ୍ର-ଶାସନ ସୁଦୃଢ଼ ନ ଥିବାରୁ, ସେମାନେ ନିଜକୁ ଗୋଟିଏ ଗୋଟିଏ କ୍ଷୁଦ୍ର ଅଞ୍ଚଳର ଅଧିପତି ରୂପେ ଘୋଷଣାକରି ପୃଥକ୍ ପୃଥକ୍ ରାଜବଂଶ ଚଳାଇଲେ ।

ଏହି ସୋମବଂଶୀ ରାଜାମାନଙ୍କ ଅମଳରେ ଓଡ଼ିଶାର ସଂସ୍କୃତି କ୍ଷେତ୍ରରେ ନାହିଁ-ନଥିବା ଉନ୍ନତି ସମ୍ଭବ ହୋଇପାରିଥିଲା । ସେମାନେ ଶୈବ ମତାବଲମ୍ବୀ ଥିବାରୁ ଦେଶରେ ଅସଂଖ୍ୟ କାରୁକାର୍ଯ୍ୟପୂର୍ଣ୍ଣ ଶିବମନ୍ଦିର ଗଢ଼ିଉଠିଲା ଏବଂ ରାଜାଶ୍ରୟ ଲାଭକରି ବହୁ କବି କୋବିଦ ସେମାନଙ୍କ ଜ୍ଞାନର ପରାକାଷ୍ଠା ଦେଖାଇ ବହୁ ନୂତନ ଗ୍ରନ୍ଥମାନ ପ୍ରଣୟନ କଲେ ।

ସେହିକାଳବେଳେ ଓଡ଼ିଶାର ଦକ୍ଷିଣାଞ୍ଚଳ ତଥା ଆଧୁନିକ ବିଶାଳ ଆନ୍ଧ୍ର ରାଜ୍ୟର ଉତ୍ତରାଞ୍ଚଳରେ ଗଙ୍ଗବଂଶୀ ରାଜାମାନେ ସୁଦୃଢ଼ ଶାସନ ଚଳାଇ ଧୀରେ ଧୀରେ ଲୋକପ୍ରିୟ ହୋଇପାରିଥିଲେ । ସୋମବଂଶର ଅଧଃପତନ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇ ଗଙ୍ଗରାଜାମାନେ ସମୟର ସଦୁପଯୋଗ ଲାଗି ଚାହିଁ ବସିଥିଲେ ଏବଂ ସେମାନଙ୍କ ମଧ୍ୟରେ ଗୃହକଳହର ସୁବିଧା ନେଇ ଗଙ୍ଗବଂଶ ସମଗ୍ର ଉତ୍କଳକୁ କବଳିତ କରି ବିଶାଳ କଳିଙ୍ଗର ମୂଳପତ୍ତନ ସୁଦୃଢ଼ କରିଦେଲେ । ଗଙ୍ଗବଂଶର ପ୍ରଖ୍ୟାତ ଶାସକ ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ଅନଙ୍ଗଭୀମ ଦେବ ଓ ନରସିଂହ ଦେବଙ୍କ ସୁଶାସନ ଓ ପ୍ରଜାବତ୍ସଳତା ଫଳରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ କଳିଙ୍ଗରେ ସ୍ୱର୍ଣ୍ଣଯୁଗର ଆରମ୍ଭ ହୋଇଗଲା । ଶ୍ରୀଜଗନ୍ନାଥ ମନ୍ଦିର, ଅନନ୍ତ ବାସୁଦେବ ମନ୍ଦିର, କୋଣାର୍କର ସୂର୍ଯ୍ୟ ମନ୍ଦିର ଆଦି ବିଶାଳ କୀର୍ତ୍ତିସ୍ତମ୍ଭର ଏହି ନିର୍ମାଣ ବଂଶର ବିଶେଷ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ରୂପେ ଅଦ୍ୟାପି ବିଶ୍ୱରେ ପ୍ରଖ୍ୟାତି ଲାଭକରୁଛି । ଭାଷା, ସାହିତ୍ୟ, କଳା ଓ ସଂସ୍କୃତିକ୍ଷେତ୍ରରେ ଗଙ୍ଗମାନଙ୍କର ଅବଦାନ ଅତୁଳନୀୟ ।

ଏହି ବଂଶର ପୃଷ୍ଠପୋଷକତାରେ ଓଡ଼ିଶାର ସଂସ୍କୃତିକ୍ଷେତ୍ରରେ ଯେଉଁ ଅଭୂତ-ପୂର୍ବ ଉନ୍ନତି ଦେଖାଦେଲା, ଆଜି ଉତ୍କଳୀୟମାନେ ସେହି ପ୍ରାଚୀନ ବିଭୂତିକୁ ନେଇ ବିଶ୍ୱଦରବାରରେ ମହିମାନ୍ୱିତ ହୋଇପାରିଛନ୍ତି ।

ଦୀର୍ଘ ତିନିଶହ ବର୍ଷ କାଳ ଶାସନକ୍ଷେତ୍ରରେ ଅଭୂତପୂର୍ବ ଶୌର୍ଯ୍ୟ ପ୍ରଦର୍ଶନ କରିବା ପରେ, ଗଙ୍ଗବଂଶର ସୂର୍ଯ୍ୟ ପଶ୍ଚିମ ଦିକ୍‌ଚକ୍ରବାଳରେ ଅସ୍ତମିତ ହେବାକୁ ଲାଗିଲେ । ଏହି ବଂଶର ଶେଷ ଦାୟାଦ ନୃପତିଙ୍କ ଭାନୁଦେବ (୪ର୍ଥ) ସୂର୍ଯ୍ୟବଂଶୀ ବୀର କପିଳେନ୍ଦ୍ରଙ୍କଦ୍ୱାରା ପରାଭୂତ ହେଲେ ଏବଂ ଓଡ଼ିଶାରେ ପ୍ରତିଷ୍ଠିତ ହେଲା ସୂର୍ଯ୍ୟବଂଶର ଶାସନ ।

'ରାମାୟଣ'ର ମହାବୀର ପରଶୁରାମ ଓ 'ମହାଭାରତ'ର ଶ୍ରେଷ୍ଠ ଯୋଦ୍ଧା ଅର୍ଜୁନଙ୍କ ତୁଲ୍ୟ ପରାକ୍ରମଶାଳୀ ବୀର ଗଜପତି କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବ ପ୍ରାୟ ଏକଶହ ବର୍ଷ କାଳ ଓଡ଼ିଶାର ଶାସନକ୍ଷେତ୍ରରେ ଆରୂଢ଼ ହୋଇ ରହିଲେ ।

ସେମାନଙ୍କ ଶାସନକାଳରେ ଓଡ଼ିଶାର କଳାକ୍ଷେତ୍ରରେ ସେପରି ଉଲ୍ଲେଖନୀୟ ଅଭ୍ୟୁନ୍ନତି ହୋଇ ନ ଥିଲେ ମଧ୍ୟ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଉନ୍ନତିକଳ୍ପେ ସୂର୍ଯ୍ୟବଂଶୀ ରାଜାମାନେ ଆଶାନୁରୂପ ପୃଷ୍ଠପୋଷକତା କରିଥିଲେ । ସେହିମାନଙ୍କ ଶାସନକାଳରେ ରାମାୟଣ, ମହାଭାରତ ଓ ଭାଗବତର ଆଖ୍ୟାୟିକା ଅବଲମ୍ବନରେ ସଂସ୍କୃତରେ ତିନୋଟି ମହାକାବ୍ୟ ରଚନା କରାଯାଇପାରିଥିଲା । ବିଶେଷତଃ ଓଡ଼ିଆ ଭାଷାରେ ସାରଳା ଦାସଙ୍କ 'ମହାଭାରତ', 'ସପ୍ତକାଣ୍ଡରାମାୟଣ', 'ଚଣ୍ଡୀପୁରାଣ', ବଳରାମଦାସଙ୍କ 'ଜଗମୋହନ ରାମାୟଣ', 'ବିଲଙ୍କା-ରାମାୟଣ', ଜଗନ୍ନାଥଦାସଙ୍କ 'ଭାଗବତ' ଓ ଅଚ୍ୟୁତାନନ୍ଦଙ୍କ 'ଭାଗବତଲହରୀ ହରିବଂଶ' ଆଦି ଗ୍ରନ୍ଥ ପ୍ରଣୀତ ହୋଇଥିଲା ।

ସୂର୍ଯ୍ୟବଂଶର ଶେଷ ଦାୟାଦ ଗଜପତି ପ୍ରତାପରୁଦ୍ରଙ୍କ ଶାସନ କାଳରେ ଓଡ଼ିଶାର ଧର୍ମଜଗତରେ ବୈଷ୍ଣବ ଭକ୍ତିଧାରାର ଉତ୍ସ ପ୍ରବଳବେଗରେ ଜନସାଧାରଣଙ୍କୁ ଆପ୍ଲୁତ କରିଥିଲା । ବିଶେଷତଃ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ ପଞ୍ଚସଖା ବା ପଞ୍ଚଶାଖା ରୂପେ ଦେଶବାସୀଙ୍କ ପ୍ରାଣରେ ଭକ୍ତିଭାବର ମଧୁର ନିସ୍ୟନ୍ଦନୀ ସିଞ୍ଚନ କରିବା ସଙ୍ଗେ ସଙ୍ଗେ ସାହିତ୍ୟ କ୍ଷେତ୍ରରେ ଭକ୍ତିଧାରାର ପ୍ରବାହ ଛୁଟାଇ ପାରିଥିଲେ ।

ଅବଶ୍ୟ ପଞ୍ଚସଖାଙ୍କ ଏକତ୍ର ଅବସ୍ଥିତି ବା ଅସ୍ତିତ୍ୱ ସମ୍ବନ୍ଧରେ କେତେକ ଗବେଷକ ଭିନ୍ନ ମତ ପୋଷଣ କରନ୍ତି; ତଥାପି ସେମାନଙ୍କଦ୍ୱାରା ରଚିତ ବିଶାଳ ଗ୍ରନ୍ଥଭଣ୍ଡାରର ଆଲୋଡ଼ନ ଫଳରେ ଏତିକି ନିଃସନ୍ଦେହରେ କୁହାଯାଇପାରିବ ଯେ, 'ପଞ୍ଚସଖା'ଙ୍କର ଅସ୍ତିତ୍ୱ ଏ ଦେଶରେ ନିଶ୍ଚିତ ଭାବରେ ଥିଲା ଏବଂ ସେମାନେ ଓଡ଼ିଆ ସାହିତ୍ୟରେ 'ଭକ୍ତିଧାରା'ର ସ୍ରଷ୍ଟା । ଆଧ୍ୟାତ୍ମିକ ଚିନ୍ତା, ସଂସାରର ଅନିତ୍ୟତା ଓ ବ୍ରହ୍ମର ଉପାସନାଦ୍ୱାରା ଗୋଟିଏ ମୁକ୍ତିକ୍ଳାନ୍ତ ମୁମୂର୍ଷୁ ଜାତିର ପ୍ରାଣରେ ସେମାନେ ଆଶାର ସନ୍ଧାନ ଦେଇ, ଓଡ଼ିଶାର ଜାତୀୟ ଜୀବନ ଗଠନରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ସେହି 'ପଞ୍ଚସଖା'ଙ୍କ ମହନୀୟ ଚିନ୍ତା-ଧାରାରେ ଉଦ୍‌ବୁଦ୍ଧ ହୋଇ ପରବର୍ତ୍ତୀ କାଳୀନ କବିମାନେ ଓଡ଼ିଆ ସାହିତ୍ୟରେ ଭଜନ ଆଦି ଭକ୍ତିଭାବପ୍ରଧାନ କବିତା ଓ କାବ୍ୟମାନ ପ୍ରଣୟନ କରିଥିଲେ ।

ସୂର୍ଯ୍ୟବଂଶର ପତନ ପରେ ଓଡ଼ିଶାରେ ଆଫଗାନ ଓ ମୋଗଲମାନଙ୍କର ଶାସନ ପ୍ରାୟ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଅବ୍ୟାହତ ରହିଲା । ଏହି ଦୁର୍ଦ୍ଦିନରେ ଓଡ଼ିଶାର ଶାସନ କ୍ଷେତ୍ରରେ ବୈଦେଶିକମାନଙ୍କ ଅଖଣ୍ଡ କ୍ଷମତା ରହିଥିଲେ ହେଁ, ସାହିତ୍ୟ କ୍ଷେତ୍ରରେ ତା'ର ବିଶେଷ ପ୍ରଭାବ ପଡ଼ିନଥିଲା । ସେହି ସମୟରେ ଓଡ଼ିଶାର ଶ୍ରେଷ୍ଠ ଶ୍ରେଷ୍ଠ ସାମନ୍ତ ରାଜା ଓ ଜମିଦାରମାନଙ୍କ ପୃଷ୍ଠପୋଷକତା ଲାଭକରି କେତେକ ବିଚକ୍ଷଣ କବି ରୀତି କାଳୀନ ପଦ୍ଧତିରେ ଆଦିରସାତ୍ମକ କାବ୍ୟ ଓ କବିତାଦିର ରଚନାରେ ପ୍ରବୃତ୍ତ ହୋଇଥିଲେ । କବିମାନଙ୍କର ପ୍ରତିଭା କେବଳ ଯେ ଆଦିରସାତ୍ମକ କାବ୍ୟକବିତା ରଚନାରେ ସୀମାବଦ୍ଧ ହୋଇ ରହିଲା ତା'ନୁହେଁ; ବୈଦେଶିକ ଆକ୍ରମଣରୁ ଉଦ୍ଧାରପାଇବା ପାଇଁ ଭକ୍ତକବିମାନେ ସ୍ୱ ସ୍ୱ ଇଷ୍ଟଦେବଙ୍କୁ ସ୍ମରଣକରି ଭକ୍ତିଭାବାତ୍ମକ କାବ୍ୟମାନ ରଚନା କରିଗଲେ ।

ଅବଶ୍ୟ ତତ୍‌ପରବର୍ତ୍ତୀ ଯୁଗ ଅର୍ଥାତ୍ ମରହଟ୍ଟାମାନଙ୍କ ଶାସନ କାଳରେ ଅବସ୍ଥାର କେତେକ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା । ମରହଟ୍ଟାମାନେ ହିନ୍ଦୁ ଧର୍ମାବଲମ୍ବୀ ହୋଇଥିବାରୁ ସେମାନେ ଧନରତ୍ନ ଲୋଭରେ ରାଜନୀତିରେ ହସ୍ତଚମତ୍କ ଦେଖାଇଲେ ସିନା; ମାତ୍ର ଧର୍ମପୀଠ ଓ ମନ୍ଦିର ଆଦି ଉପରେ ସେମାନଙ୍କ ଅତ୍ୟାଗ୍ରହ ବିଶେଷ ପ୍ରଭାବ ପକାଇ ପାରିଲାନାହିଁ । ତେଣୁ ପ୍ରତିଭାଶାଳୀ କବିମାନେ ଏହି ଧର୍ମପୀଠ ଓ ମନ୍ଦିର ଆଦିର ସଂରକ୍ଷଣରେ ରହି ଭଜନ, ଜଣାଣ, ପଦ୍ୟାବଳୀ ତଥା ରାମ-କୃଷ୍ଣ-ଭକ୍ତିଧାରା ସମନ୍ୱିତ କାବ୍ୟମାନ ରଚନା କରିଥିଲେ । ଶାସନଗତ ବିଶୃଙ୍ଖଳା ଓ ଉପଦ୍ରବରେ ଅତିଷ୍ଠ ନ ହୋଇ କାବ୍ୟକବିତାଦିର ପ୍ରଣୟନ ଲାଗି କବିମାନେ ବିଶେଷ ତତ୍ପର ହୋଇଉଠିଥିଲେ । କାରଣ ଓଡ଼ିଆ ସାହିତ୍ୟର ଆଲୋଚନାରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧରୁ ଆରମ୍ଭକରି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ପୋଇ, ବୋଲି, କୋଇଲି, ପଦ, ପଦଅ଼, ଚଉପଦୀ, ଚଉତିଶା ତଥା ସ୍ୱତନ୍ତ୍ର କାବ୍ୟମାନ ବହୁସଂଖ୍ୟାରେ ରଚିତ ହୋଇଛି । ସେହି ପରାଧୀନ ଦେଶରେ ଯଦି ସେମାନେ ବିଶେଷ ଅତ୍ୟାଗ୍ରହିତ ହୋଇଥା'ନ୍ତେ, ତା'ହେଲେ ବୋଧହୁଏ ସାହିତ୍ୟ କ୍ଷେତ୍ରରେ ଏପରି ସମୁନ୍ନତି ସମ୍ଭବ ହୋଇନଥା'ନ୍ତା ।

ଯାହାହେଉ, ଇଂରେଜମାନଙ୍କ ଆଗମନ ପର୍ଯ୍ୟନ୍ତ ଓଡ଼ିଶାରେ ରାଜନୀତି କ୍ଷେତ୍ର ଅତ୍ୟନ୍ତ ବିପଦସଙ୍କୁଳ ହୋଇଉଠିଲା । ସେହି ସମୟର ସାଧାରଣ ଜନତା ରାଜନୈତିକ ରୂପରେ ବିଶେଷ ଉତ୍ପୀଡ଼ିତ ହୋଇଥିଲେ ମଧ୍ୟ ନିଜର ମନୋବଳ ଦୃଢ଼ ଥିବାରୁ, ସେମାନେ ସାହିତ୍ୟ ସୃଷ୍ଟି କରିବାରେ ବିଶେଷ ପରାଙ୍ମୁଖ ହୋଇନଥିଲେ ।

ଇଂରେଜମାନଙ୍କ ଆଗମନ ଫଳରେ ପାଶ୍ଚାତ୍ୟ ଦେଶର ନୂତନ ଭାବଧାରା ରାଜନୀତି କ୍ଷେତ୍ରରେ ଯେପରି ନୂତନ ଶାସନ ପଦ୍ଧତିର ସୂତ୍ରପାତ କରିଥିଲା, ସାହିତ୍ୟ କ୍ଷେତ୍ରରେ ମଧ୍ୟ ଅନୁରୂପ ନୂତନ ଶୈଳୀ ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା ।

ଅବଶ୍ୟ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଯେତେ ଶୀଘ୍ର ପାଶ୍ଚାତ୍ୟ ଶୈଳୀର ଅବଲମ୍ବନରେ ସାହିତ୍ୟ ସୃଷ୍ଟି ହୋଇଥିଲା; ଓଡ଼ିଶାରେ ସେତେ ଶୀଘ୍ର ସମ୍ଭବ ହୋଇନଥିଲା ।

ଓଡ଼ିଶାର ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ଏ ଦେଶର ବୁଦ୍ଧିଜୀବିମାନେ ସହଜରେ ପ୍ରାଚୀନ ପଦ୍ଧତିକୁ ତ୍ୟାଗ କରି ନୂତନ ଶୈଳୀକୁ ଗ୍ରହଣ କରିପାରନ୍ତି ନାହିଁ । ତେଣୁ ଓଡ଼ିଶାରେ ଖ୍ରୀ: ଅ: ୧୮୦୩ରୁ ଇଂରେଜ ଶାସନ ପ୍ରବର୍ତ୍ତିତ ହୋଇଥିଲେ ମଧ୍ୟ ସାହିତ୍ୟ କ୍ଷେତ୍ରରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ନୂତନ ଶୈଳୀର ଅନୁକରଣ କରାଯାଇଥିଲା । □□□

# ଶ୍ରୀମନ୍ଦିର ଉପରେ ଯବନ ଆକ୍ରମଣ

କେଉଁ ଅଧମ ଯୁଗରୁ ଶ୍ରୀଜଗନ୍ନାଥ ଭିନ୍ନ ଭିନ୍ନ ରୂପରେ ପ୍ରତିଭାତ ହୋଇ ଶେଷରେ ଦାରୁବ୍ରହ୍ମ ରୂପେ 'ଜଗତର ନାଥ' ନାମ ବୋଲାଇବା ସଙ୍ଗେ ସଙ୍ଗେ ଓଡ଼ିଆ ଜାତିର ଜାତୀୟ ଦେବତା ହିସାବରେ ସ୍ୱୀକୃତ ହୋଇଆସୁଛନ୍ତି । ତାଙ୍କର ପ୍ରସିଦ୍ଧି ବିଶ୍ୱବ୍ୟାପୀ ହୋଇଥିବାରୁ ପ୍ରତ୍ୟେକ ଧର୍ମାବଲମ୍ବୀ ତାଙ୍କୁ ନିଜ ନିଜ ଧର୍ମମତର ପ୍ରତୀକ-ବିଗ୍ରହ ରୂପେ ଗ୍ରହଣ କରିବାରେ ଦ୍ୱିଧା ବୋଧ କରିନାହାନ୍ତି । ଶୂନ୍ୟବାଦୀ ଇସ୍‌ଲାମ, ମାନବବାଦୀ ଖ୍ରୀଷ୍ଟିୟାନ୍ ଧର୍ମ ସହିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିଗ୍ରହର ତୁଳନା କରି ଅଲୋଚକମାନେ ମତ ଦେଇଛନ୍ତି ।

ଭାରତୀୟ ଅସ୍ତିକ୍ୟଦର୍ଶନ ଓ ନାସ୍ତିକ୍ୟଦର୍ଶନ ଉପରେ ପ୍ରତିଷ୍ଠିତ ଧର୍ମଗୁଡ଼ିକ ଶ୍ରୀଜଗନ୍ନାଥଙ୍କୁ 'ବ୍ରହ୍ମା ବିଷ୍ଣୁ ମହେଶ୍ୱର', 'ଭୈରବ ଭୈରବୀ', ଚତୁର୍ଦ୍ଧାମୂର୍ତ୍ତି, ନିଶ୍ଚିତ୍ୟ ଓ ନିରଞ୍ଜନର ପ୍ରତୀକ ରୂପେ ଆରାଧନା କରୁଥିବାର ପ୍ରମାଣ ଅଭାବ ନାହିଁ । ତଦ୍‌ବ୍ୟତୀତ ଆଦିବାସୀମାନେ 'ବୃକ୍ଷଦେବତା' ରୂପେ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ନିଜ ଧର୍ମମତରେ ମିଶାଇ ନେଇଛନ୍ତି ।

ଏତେ ବଡ଼ ମହିମାନ୍ୱିତ ବିଗ୍ରହ ଶ୍ରୀଜଗନ୍ନାଥ ହିନ୍ଦୁଜାତିର ପରମ ପୂଜ୍ୟ ହୋଇ-ଥିବାରୁ ତାଙ୍କଠାରେ ହିନ୍ଦୁ ଜନତାର ଅଟଳ ବିଶ୍ୱାସ ଠୁଳ ହୋଇପାରିଛି ଏବଂ ତାଙ୍କ ଶ୍ରୀକ୍ଷେତ୍ର ବା 'ନୀଳାଚଳ' ଚତୁର୍ଦ୍ଧାମ ମଧ୍ୟରେ ଅନ୍ୟତମ ଧାମ ରୂପେ ପ୍ରସିଦ୍ଧି ଅର୍ଜନ କରି ପାରିଛି ।

ଏହି ଜାତୀୟ ବିଗ୍ରହର ସୁରକ୍ଷା ଲାଗି ଓଡ଼ିଶାର ପ୍ରତ୍ୟେକ ରାଜବଂଶ ପ୍ରାଣପଣ ଚେଷ୍ଟା କରିଛି । ତଥାପି ତାଙ୍କୁ ବୈଦେଶିକ ଅକ୍ରମଣରୁ ରକ୍ଷାକରିବା ସମ୍ଭବ ହୋଇନାହିଁ ।

ଓଡ଼ିଶାର ଗଙ୍ଗବଂଶ ପ୍ରବଳ ପରାକ୍ରମ ବଳରେ ବହୁ ପଡ଼ୋଶୀ ରାଜ୍ୟ ଜୟକରି 'ଶ୍ରୀଜଗନ୍ନାଥ ମହାପ୍ରଭୁ'ଙ୍କ ଚରଣ ତଳେ ସାମ୍ରାଜ୍ୟ ଅର୍ପଣ କରି, ଓଡ଼ିଶାକୁ 'ଶ୍ରୀଜଗନ୍ନାଥ ସାମ୍ରାଜ୍ୟ' ରୂପେ ତଥା ନିଜେ 'ଚଳନ୍ତି ବିଷ୍ଣୁ' ଅର୍ଥାତ୍ ଦେବପ୍ରତିନିଧି ଭାବରେ ଶାସନକ୍ଷମତା ଗ୍ରହଣକରିଥିଲେ । ସେହି ପ୍ରତାପଶାଳୀ ଗଙ୍ଗରାଜାଙ୍କ ଅମଳରେ ପ୍ରାୟ ଖ୍ରୀଷ୍ଟାବ୍ଦ ୧୩୬୦ରେ ଭାନୁଦେବ (ତୃତୀୟ) ଙ୍କୁ ପରାସ୍ତ କରି ଦିଲ୍ଲୀ ସୁଲତାନ୍ ଫିରୋଜ୍ ଶାହ ତୋଗଲକ

ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ ଆକ୍ରମଣ କରିଥିବାର କେତେକ ସୂତ୍ରରୁ ସୂଚନା ମିଳେ । କିନ୍ତୁ ସେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ 'ଅପବିତ୍ର' କରିଥିଲେ କି ନାହିଁ, ସେ ସମ୍ବନ୍ଧରେ ଅଭ୍ରାନ୍ତ ପ୍ରମାଣ ଅଦ୍ୟାପି ମିଳିନାହିଁ । *

ଗଜପତି ପ୍ରତାପରୁଦ୍ରଙ୍କ ସମୟ (ଖ୍ରୀ: ଅ: ୧୫୧୦)ରେ ଉତ୍କଳାଧୀଶଙ୍କ ଅନୁପସ୍ଥିତିର ସୁଯୋଗ ନେଇ ସୁଲ୍‌ତାନ୍ ହୁସେନ୍ ଶାହ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିଥିବାର ସୂଚନା 'ମାଦଳାପାଞ୍ଜି'ରୁ ମିଳେ—

"ଏ ରାଜାଙ୍କ ୧୭ ଅଙ୍କେ ଗଉଡ଼ରୁ ମୁଗଲ ବାହିଲେ । କଟକ ନିକଟେ ସେ ଛେଉଣ୍ଟ ପକାଇଲେ । କଟକ ରକ୍ଷିଆ ହୋଇଥିଲେ ଭୋଇ ବିଦ୍ୟାଧର । ସେ ଯାଇଁ ଧଇଲେ ସାରଙ୍ଗଗଡ଼ । ପରମେଶ୍ୱରଙ୍କୁ ଚକା ଛଡ଼ାଇ ଗୁପରେ ବସାଇ ଚଡ଼ାଇ ଗୁହା ପର୍ବତେ ବିଜେ କରାଇଲେ । ଶ୍ରୀପୁରୁଷୋତ୍ତମେ ଆସି ଗୌଡ଼ ପାତଶା ଅମର ସୁରଥାନ ପ୍ରବେଶ ହୋଇଲେ, ଚଡ଼ି ଦେଉଳେ ଯେତେ ପିତୁଳାମାନ ଥିଲେ ସବୁକୁ ହିଁ ଖଣ୍ଡ କଲେ ।"**

ଅନ୍ୟତ୍ର ମଧ୍ୟ ଜଣାଯାଏ ଯେ ଖ୍ରୀ: ଅ: ୧୫୬୮ରେ ଓଡ଼ିଶା ରାଜା ମୁକୁନ୍ଦ ଦେବଙ୍କୁ ପରାସ୍ତ କରି ବଙ୍ଗ ନବାବ୍, ସୁଲେମାନ୍ କର୍‌ରାନୀ ଶ୍ରୀମନ୍ଦିର ମୂର୍ତ୍ତି ବିଗ୍ରହଙ୍କୁ ଅପବିତ୍ର କରିଥିଲେ । ଏ ସମ୍ବନ୍ଧରେ ସମସାମୟିକ ମୋଗଲ ଐତିହାସିକ ଓ ଅନ୍ୟାନ୍ୟ ଇତିହାସ ପୁସ୍ତକମାନଙ୍କରୁ ବିବରଣୀ ମିଳେ; କିନ୍ତୁ ଶ୍ରୀମନ୍ଦିର ଉପରେ ଏ ସମସ୍ତ ବୈଦେଶିକ ଆକ୍ରମଣ କେବଳ ସାମୟିକ ତଥା ଅତର୍କିତ ବୋଲି କୁହାଯାଇ ପାରେ; କିନ୍ତୁ ପରବର୍ତ୍ତୀ ଭୋଇବଂଶର ଶାସନକାଳରେ ଶ୍ରୀମନ୍ଦିର ଉପରେ ପ୍ରଚଣ୍ଡ ଆକ୍ରମଣ ହୋଇଥିବାର ବହୁପ୍ରମାଣ ଇତିହାସପୃଷ୍ଠାରେ ଲିପିବଦ୍ଧ ହୋଇ ରହିଛି ।

ଓଡ଼ିଶାରୁ ସୂର୍ଯ୍ୟବଂଶୀ ଗଜପତିମାନଙ୍କ ରାଜତ୍ୱର ଅବସାନ ପରେ ଗୋବିନ୍ଦ ବିଦ୍ୟାଧର, ମୁକୁନ୍ଦ ହରିଚନ୍ଦନ ନାମକ ଦୁଇ ଜଣ ପ୍ରଖ୍ୟାତ ଯୋଦ୍ଧା ଦେଶର ଶାସନଭାର ଗ୍ରହଣ କରିଥିଲେ । ସେ ଦୁହିଁଙ୍କ ରାଜତ୍ୱକାଳ ମଧ୍ୟ ବିଶେଷ ଉଲ୍ଲେଖନୀୟ ନୁହେଁ; କାରଣ ଉଭୟଙ୍କ ଶାସନକାଳରେ ଗୃହକଳହ, ବୈଦେଶିକ ଆକ୍ରମଣ ତଥା ବିଭିନ୍ନ ପ୍ରକାର ଷଡ଼ଯନ୍ତ୍ରର ଶିକାର ହୋଇ କଣ୍ଟକମୟ ରାଜସିଂହାସନରେ ସେ ଦୁହେଁ ସିନେ ହେଲେ ଶାନ୍ତିରେ ବସିପାରିନଥିଲେ । ବରଂ ଶେଷୋକ୍ତ ରାଜା ମୁକୁନ୍ଦ ଦେବଙ୍କ ଶାସନକାଳରେ ଶ୍ରୀମନ୍ଦିର ଉପରେ କଳାପାହାଡ଼ର ପ୍ରଚଣ୍ଡ ଆକ୍ରମଣ ସମ୍ଭବ ହୋଇଥିଲା ।

ସେ ଦୁହିଙ୍କ ଅନ୍ତେ ଖ୍ରୀ: ଅ: ୧୫୬୮-୧୬୦୦ ପର୍ଯ୍ୟନ୍ତ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର ରାମଚନ୍ଦ୍ର ଦେବ (୧ମ) ଖୋରଧାର ଭୋଇବଂଶର ପ୍ରତିଷ୍ଠାତା ରୂପେ ପରିଚିତ ହେଲେ । ତାଙ୍କ ରାଜ୍ୟର ସୀମା ନିତାନ୍ତ ସଙ୍କୁଚିତ ହୋଇଯାଇଥିଲେ ହେଁ, ଅଧୁନିକ କଟକ ଜିଲାର କିଛି ଅଂଶ, ସମଗ୍ର ପୁରୀ ଜିଲା ଓ ଗଞ୍ଜାମ ଜିଲାର ଆଠଟି ଜମିଦାରୀ ସମେତ

* ଖୋରଧା ଇତିହାସ—ପୃ: ୧୦
** ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ (ପ୍ରାଚୀ)—ପୃ: ୧୭-୧୮

କିଛି ଅଂଶ ରାମଚନ୍ଦ୍ର ଦେବଙ୍କ ଶାସନ ଅଧୀନରେ ଥିଲା । ସେତେବେଳେ ସେହି ଅଞ୍ଚଳକୁ ହିଁ ଓଡ଼ିଶା ବୋଲି କୁହାଯାଉଥିଲା ।

ଖୋରଧା ରାଜା ତିନି ହଜାର ପାଞ୍ଚଶହ ସୈନ୍ୟ ରଖି ପାରିବାର ଅନୁମତି ପାଇ 'ମନ୍‌ସୁବାଦାର' ହେବାର ସୌଭାଗ୍ୟ ଲାଭ କରୁଥିଲେ । ଖୋରଧା ରାଜାଙ୍କ ପ୍ରତ୍ୟକ୍ଷ ଶାସନାଧୀନରେ ପୁରୀର ଶ୍ରୀମନ୍ଦିର ରହିଥିବାରୁ ଖୋରଧା ରାଜାଙ୍କୁ ପରମ୍ପରାକ୍ରମେ 'ଠାକୁର ରଜା' ବା 'ଚଳନ୍ତି ବିଷ୍ଣୁ' ଉପାଧିରେ ଓଡ଼ିଶାର ଜନସାଧାରଣ ଭୂଷିତ କରିଥିଲେ ।

ଗଜପତି ରାମଚନ୍ଦ୍ର ଦେବ ଜଣେ ପ୍ରତାପୀ ବୀର ଓ ଦକ୍ଷ ଶାସକ ଥିବାର ବହୁ ପ୍ରମାଣ, ବିଶେଷତଃ ଶ୍ରୀମନ୍ଦିରର ଐତିହାସିକ ବିବରଣୀ 'ମାଦଳାପାଞ୍ଜି' ଓ ସାମୟିକ କାବ୍ୟକବିତାରୁ ମିଳିଥାଏ ।

ରାମଚନ୍ଦ୍ର ଦେବଙ୍କ ସମୟରେ ମୋଗଲ୍ ବାଦଶାହ ଅକ୍‌ବରଙ୍କ ପକ୍ଷରୁ ରାଜା ମାନସିଂହ ଖରୁଧା ରଜାଙ୍କ 'ବରୁଣେଇ ଗଡ଼' ଉପରେ ଆକ୍ରମଣ କରିଥିଲେ; କିନ୍ତୁ ରାମଚନ୍ଦ୍ର ଦେବଙ୍କ ପ୍ରଚଣ୍ଡ ଆକ୍ରମଣ ଫଳରେ ମାନସିଂହ ବାଧ୍ୟ ହୋଇ ତାଙ୍କ ସହିତ ସନ୍ଧି କରିଥିଲେ । ନିଜେ ରାଜା ମାନସିଂହ ହିନ୍ଦୁ ହୋଇଥିବାରୁ, ସେ ହିନ୍ଦୁ ମନ୍ଦିର ଓ ବ୍ରାହ୍ମଣ-ଶାସନଗୁଡ଼ିକ ଉପରେ ଆକ୍ରମଣ ଚଳାଇ ନଥିଲେ । କେବଳ ଖୁରୁଧା ରାଜାଙ୍କୁ ମୋଗଲ ଶାସନର ଆନୁଗତ୍ୟ କରାଇବା ହିଁ ଥିଲା—ତାଙ୍କ ଆକ୍ରମଣର ଏକମାତ୍ର ଉଦ୍ଦେଶ୍ୟ ।

ଖ୍ରୀଃ ଅଃ ୧୬୦୦ରେ ଗଜପତି ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ପରେ, ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଆରମ୍ଭରୁ, ତାଙ୍କ ପୁତ୍ର ଗଜପତି ପୁରୁଷୋତ୍ତମ ଦେବ ଖୋରଧା ରାଜସିଂହାସନ ଆରୋହଣ କରିଥିଲେ ।

ଗଜପତି ପୁରୁଷୋତ୍ତମ ଦେବ ସିଂହାସନ ଆରୋହଣ କରିବା ପୂର୍ବରୁ ନିଜର ପିତାଙ୍କ ଜୀବିତାବସ୍ଥାରେ ସେ ମୋଗଲ ସେନାପତି ରାଜା ମାନସିଂହଙ୍କ ସହଣରେ ଦିଲ୍ଲୀ ଯାଇ ବାଦଶାହ ଆକବରଙ୍କ ସ୍ନେହଭାଜନ ହୋଇଥିଲେ ।

ଆକବରଙ୍କ ଅନ୍ତେ ଭାରତବର୍ଷରେ ମୋଗଲ ରାଜତ୍ୱର ଶାସନ ନୀତି ପରିବର୍ତ୍ତିତ ହେବାକୁ ଲାଗିଲା ଏବଂ ଓଡ଼ିଶା ବଙ୍ଗ ସୁବେଦାରଙ୍କ ଅଧୀନରୁ ଆସି ଏକ ସ୍ୱତନ୍ତ୍ର 'ସୁବା'ରେ ପରିଣତ ହୋଇଥିବାରୁ, ମୋଗଲ ସୁବେଦାରଙ୍କ ପ୍ରଧାନ କାର୍ଯ୍ୟାଳୟ କଟକଠାରେ ଅବସ୍ଥାପିତ ହେଲା । ଏହା ଫଳରେ ସୁବେଦାରମାନେ ଦିଲ୍ଲୀ ବାଦଶାହଙ୍କ ପରିତୁଷ୍ଟି ନିମିତ୍ତ ଖୋରଧା ରାଜ୍ୟ ଆକ୍ରମଣ କରି ଧନରତ୍ନ ଲୁଣ୍ଠନ ତଥା ରାଜାଙ୍କଠାରୁ ବଳପୂର୍ବକ ଧନରତ୍ନ, ହାତୀଘୋଡ଼ା ଓ ଦାସଦାସୀ ଅପହରଣ କରି ଦିଲ୍ଲୀ ପଠାଉଥିଲେ । ସୁବେଦାରମାନଙ୍କର ଏ ପ୍ରକାର ଅପଚେଷ୍ଟା ଫଳରେ ଖୋରଧା ରାଜ୍ୟର ପ୍ରଜାମାନେ ବେଳେବେଳେ ବିଦ୍ରୋହର ସ୍ୱର ଉତ୍ତୋଳନ କରୁଥିଲେ । ସେ ପ୍ରକାର ବିଦ୍ରୋହ ପରୋକ୍ଷରେ ଖୋରଧା ରାଜାଙ୍କଦ୍ୱାରା ପରିଚାଳିତ ବୋଲି ମନେକରି, ସୁବେଦାରମାନେ ଖୋରଧା ରାଜ୍ୟ ଆକ୍ରମଣ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ଜଗତର ଅନ୍ୟତମ ଧର୍ମପୀଠ ଶ୍ରୀମନ୍ଦିର ଉପରେ ଆକ୍ରମଣ କରୁଥିଲେ ।

ସେଥିଲାଗି କେତେଥର ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରୀମନ୍ଦିର ଛାଡ଼ି ବିଭିନ୍ନ ବଣଜଙ୍ଗଲ ଓ ପାହାଡ଼ ଖୋଲରେ ଶରଣାର୍ଥୀ ଜୀବନ ଯାପନକରିଥିଲେ ।

ଗଜପତି ରାଜା ପୁରୁଷୋତ୍ତମ ଦେବ ଖ୍ରୀ: ଅ: ୧୬୦୦-୧୬୨୧ ପର୍ଯ୍ୟନ୍ତ ଖୋରଧା ସିଂହାସନରେ ଅଧିଷ୍ଠିତ ହୋଇଥିଲେ । ଓଡ଼ିଶା 'ସୁବା'ର ପ୍ରଥମ ମୋଗଲ ସୁବେଦାର ହାସିମ୍ ଖାଁ ଖ୍ରୀ: ଅ: ୧୬୦୭-୧୬୧୧ ପର୍ଯ୍ୟନ୍ତ ରହିଥିଲେ । ସେ ଜଣେ କଟ୍ଟର ମୁସଲମାନ ହୋଇଥିବାରୁ, ହିନ୍ଦୁମାନଙ୍କ ଦେବଦେବୀମୂର୍ତ୍ତିକୁ ଭାଙ୍ଗିବା ଓ ମନ୍ଦିର ଲୁଣ୍ଠନ କରିବା ତାଙ୍କର ମୁଖ୍ୟ ଅଭିପ୍ରାୟ ଥିଲା । କଟକ ନିକଟବର୍ତ୍ତୀ ଅଞ୍ଚଳର ଜନୈକ ରାଜପୁତ୍ର କେଶୋ ଦାସଙ୍କ ସହାୟତାରେ ସେ ଶ୍ରୀଜଗନ୍ନାଥ ମନ୍ଦିର ସମେତ ବହୁ ଦେବମନ୍ଦିର ଲୁଣ୍ଠନ କରି, ବାଦଶାହଙ୍କୁ ପରିତୁଷ୍ଟ କରାଇଥିଲେ । ହାସିମ୍ ଖାଁଙ୍କର ଏ ପ୍ରକାର ଲୁଣ୍ଠନକାରୀ ମନୋଭାବଯୋଗୁଁ ଗଜପତି ଠାକୁରରାଜା .ପୁରୁଷୋତ୍ତମ ଦେବ ଅତ୍ୟନ୍ତ ବ୍ୟଥିତ ହୋଇଥିଲେ ଏବଂ ଶେଷକୁ ତାଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମରେ ପ୍ରବୃତ୍ତ ହୋଇଥିଲେ । ବିରାଟ ମୋଗଲ-ବାହିନୀ ବିରୁଦ୍ଧରେ ତାଙ୍କର ଯୁଦ୍ଧଘୋଷଣା ନିତାନ୍ତ ଅପରିଣାମଦର୍ଶିତାର ପରିଚୟ ଦେଇଥିଲା; ତଥାପି ଜଣେ ରାଜ୍ୟ-ଶାସକ ଦୃଷ୍ଟିରୁ ପ୍ରଜାବର୍ଗର ହିତସାଧନ ନିମିତ୍ତ ସେ ଦୁଃସାହସିକ କାର୍ଯ୍ୟ କରିବା ଲାଗି ବାଧ୍ୟ ହୋଇଥିଲେ ।

କେଶୋ ଦାସ ଜଣେ ହିନ୍ଦୁ ରାଜପୁତ୍ର ହୋଇଥିଲେ ହେଁ ନିଜର ସ୍ୱାର୍ଥସିଦ୍ଧି ଲାଗି ସେ ସୁବେଦାର ହାସିମ୍ ଖାଁଙ୍କ ପ୍ରରୋଚନାରେ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିଥିଲେ ଏବଂ ଏହି ଆକ୍ରମଣ ବିରୁଦ୍ଧରେ ଖୋରଧା ରାଜା ପ୍ରତିଆକ୍ରମଣ ଚଳାଇ, ପରିଶେଷରେ ବାଧ୍ୟ ହୋଇ ସନ୍ଧି ସ୍ଥାପନ କରିବା ସଙ୍ଗେ ସଙ୍ଗେ ବହୁ ଧନ ରତ୍ନ ଓ ହାତୀ ଘୋଡ଼ା ଅର୍ପଣ କରି ସୁବେଦାରଙ୍କୁ ସନ୍ତୁଷ୍ଟ କରାଇଥିଲେ ।

ସୁବେଦାର ହାସିମ୍ ଖାଁଙ୍କ ପରେ ରାଜା କଲ୍ୟାଣ ମଲ୍ଲ ଖ୍ରୀ: ଅ: ୧୬୧୧—୧୬୧୭ ପର୍ଯ୍ୟନ୍ତ ଓଡ଼ିଶାର ସୁବେଦାରରୂପେ ଅଧିଷ୍ଠିତ ହୋଇଥିଲେ । ସେ ମଧ୍ୟ ମୁସଲମାନ ସୁବେଦାରଙ୍କ ପରି ବାଦଶାହ ଜାହାଙ୍ଗୀରଙ୍କୁ ସନ୍ତୁଷ୍ଟ କରାଇବାଲାଗି ଖୋରଧା ରାଜ୍ୟ ଆକ୍ରମଣ କରି ଧନରତ୍ନ ଲୁଣ୍ଠନ କରିଥିଲେ ଏବଂ ରାଜାଙ୍କର ଉତ୍କୃଷ୍ଟ ହସ୍ତୀକୁ ଦିଲ୍ଲୀ ବାଦଶାହଙ୍କ ନିକଟକୁ ପଠାଇଥିଲେ ।

ରାଜା କଲ୍ୟାଣ ମଲ୍ଲ ଜଣେ କୂଟନୀତିବିଶାରଦ ସୁବେଦାର ଥିଲେ । ସେ ଓଡ଼ିଶା ରାଜା ପୁରୁଷୋତ୍ତମ ଦେବଙ୍କ ଦକ୍ଷିଣ ହସ୍ତ ସ୍ୱରୂପ ସୁଦକ୍ଷ ସେନାପତି ଦାସ ବିଦ୍ୟାଧର ଓ ଅନ୍ୟାନ୍ୟ ଷୋଳଜଣ ସେନାପତିଙ୍କୁ ହତ୍ୟା କରିଥିଲେ ।

ଏହି କପଟ ହତ୍ୟାକାଣ୍ଡ ଫଳରେ ଉମୂଳ ବିଦ୍ରୋହ ସଙ୍ଗଠିତ ହୋଇଥିଲା ଏବଂ ଖୋରଧା ପାଇକମାନଙ୍କ ଆକ୍ରମଣ ଫଳରେ ରାଜା କଲ୍ୟାଣ ମଲ୍ଲ ପ୍ରାଣ ଘେନି ପଳାୟନ କରିଥିଲେ; କିନ୍ତୁ ଓଡ଼ିଆ ପାଇକମାନେ ବୀରତ୍ୱ ସହକାରେ ତାଙ୍କର ଅନୁଗମନକରି

ପିପିଲି ନିକଟବର୍ତ୍ତୀ ବାଣସରସ୍ପୁରଠାରେ ତାଙ୍କୁ ଚତୁର୍ଦ୍ଦିଗରୁ ଆକ୍ରମଣକରି ମାରି-ପକାଇଲେ । *

ଆହୁରି ଗୋଟିଏ ବିବରଣୀରୁ ଜଣାଯାଏ ଯେ ସୁବେଦାର ମକରମ୍ ଖାଁ ଖୋରଧା ଆକ୍ରମଣ କରିଥିଲେ । ତାଙ୍କ ଆକ୍ରମଣରେ ଚ୍ଚାପ ସହି ନ ପାରି ରାଜା ପୁରୁଷୋତ୍ତମ ଦେବ ଖୋରଧା ଛାଡ଼ି ପ୍ରାୟ ଏକବର୍ଷ ପର୍ଯ୍ୟନ୍ତ 'ଗଡ଼ମାଣିତ୍ରୀ'ଠାରେ କଟକ ସ୍ଥାପନ କରି ଗୋପନ ଭାବରେ ରହିଲେ ଏବଂ ସେହି ଅବସରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପଣ୍ଡାମାନେ ନେଇ 'ଗବପଦା'ଠାରେ ଲୁଚାଇ ରଖିଲେ । ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ମତରେ, ସେଥର ସୁବେଦାର ମକରମ ଖାଁ ପ୍ରବଳ ଭାବରେ ଶ୍ରୀମନ୍ଦିର ଉପରେ ଚଢ଼ାଉ କରିଥିଲେ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଉପରେ ହୋଇଥିବା ଆକ୍ରମଣ ସମ୍ବନ୍ଧରେ ଆଲୋଚନା କଲେ ଆହୁରି ମଧ୍ୟ ଜଣାଯାଏ ଯେ, ଖୋରଧା ରାଜା ନରସିଂହ ଦେବ (ଖ୍ରୀଃ ଅଃ ୧୬୨୧-୧୬୪୭)ଙ୍କ ରାଜତ୍ୱର ପ୍ରାୟ ଏକବର୍ଷ ପରେ ବେଗମ୍ ନୁରଜାହାନଙ୍କ ଭାଇଙ୍କ ପୁଅ ମୀର୍ଜା ଅହମ୍ମଦ ବେଗ ଓଡ଼ିଶାର ସୁବେଦାରରୂପେ ନିଯୁକ୍ତ ହୋଇଥିଲେ । ସେ ଖ୍ରୀଃଅଃ୧୬୨୧-୧୬୨୪ ମଧ୍ୟରେ ମାତ୍ର ଚାରିବର୍ଷ ଲାଗି ଏଠାକାର ଶାସନ ଦାୟିତ୍ୱରେ ଥିଲେ । ସେ ବାଦଶାହଙ୍କର ଅତ୍ୟନ୍ତ ଆତ୍ମୀୟ ଓ ବିଶ୍ୱାସର ପାତ୍ର ହୋଇଥିବାରୁ ତାଙ୍କ ପରିତୁଷ୍ଟି ପାଇଁ ଓଡ଼ିଶାର ଦେବମନ୍ଦିର ଉପରେ ଆକ୍ରମଣ କରିଥିବା ଆଦୌ ଅସମ୍ଭବ ନୁହେଁ । ଗୌଡ଼ୀୟ ଭକ୍ତପ୍ରବର ରସିକାନନ୍ଦ ଗୋସ୍ୱାମୀଙ୍କ ରଚିତ 'ରସିକମଙ୍ଗଳ' ଶୀର୍ଷକ ପୁସ୍ତକରୁ ଜଣାଯାଏ ଯେ, ଅହମ୍ମଦ ବେଗ ଜଣେ ଦୁର୍ଦ୍ଦାନ୍ତ ବ୍ୟକ୍ତି ଥିଲେ ଏବଂ ତାଙ୍କ ପ୍ରତାପରେ ସମଗ୍ର ଓଡ଼ିଶା ଥରହରି କମ୍ପୁଥିଲା । ସେ କେବଳ ଯେ ଦେବମନ୍ଦିର ଉପରେ ଆକ୍ରମଣ କରୁଥିଲେ, ତା ନୁହେଁ, ସେ ମଧ୍ୟ ସର୍ବ-ସାଧାରଣ ନିରୀହ ଜନତାଙ୍କ ଉପରେ ପ୍ରବଳ ଅତ୍ୟାଚାର ଚଳାଇ ଆତଙ୍କ ସୃଷ୍ଟି କରିଥିଲେ ।

"ତାର ବିବରଣ କହି ଶୁନ ସର୍ବଜନ,
ଆହମ୍ମଦ ବେଗ ବଡ଼ ଦୁଷ୍ଟ ସେ ଯବନ ।
ଉଡ଼ିଶ୍ୟା ଦେଶେତେ ଯତ ରାଜା ଭୂଞ୍ୟାବୈସେ
ସବାକାର ଘରଦ୍ୱାର ଭାଙ୍ଗିଲ ବିଶେଷେ ।
ଘରବାଡ଼ି ଭାଙ୍ଗିଲ କାଟିଲ ସବ ବନ,
ସବାକାର ସଙ୍ଗେ ଧରି ଲଇଲ ଯବନ ।
ବଡ଼ଇ ପ୍ରତାପୀ ଦୁଷ୍ଟ ଯବନ ରାଜନ
ଥରହରି କମ୍ପେ ସବ ଭୂଞ୍ୟା ରାଜାଗନ ।
ସବେ ସେବା କରେ ସେଇ ବାଣପୁର ସ୍ଥାନେ,
ଭୟେ ଏକ ଦିନ ଯାୟ ଯୁଗେର ସମାନେ ।

* ଖୁରୁଧା ଇତିହାସ—ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର; ପୃ—୫୧

ପ୍ରତାପବନ ଦୁଇଗୁର କରେ ସଂହାରଣ
ଅତଏବ ଦୁଷ୍ଟ କର୍ମ କରେ ସେ ଯବନ ।*

ନରସିଂହ ଦେବଂକ ଅମଳରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମନ୍ଦିର ଉପରେ ଯବନମାନଙ୍କ ଆକ୍ରମଣ ହୋଇଥିବାର ବିବରଣୀ ମଧ୍ୟ 'ମାଦଳାପାଞ୍ଜି'ରୁ ନିମ୍ନଲିଖିତମତେ ମିଳିଥାଏ—

"ଏଥି ଉତ୍ତାରେ ଏହାଙ୍କ ପୁଅ ନରସିଂହ ଦେବ ମହାରାଜା ହୋଇଲେ । ଏ ମହାରାଜାଂକ ସ୍ତରଅଂକେ ଅହମଦ ବେଗ ବୋଇଲା କୁଟୁମ୍ବ ରାଜାଂକର କଟକ ନେଅ । ଏଥିକୁ ରଜା ଅନ୍ଧାରି ମଦ୍ଧମଠାରୁ ଭାଙ୍ଗି ମାଣିତ୍ରୀ କଟକକୁ ବିଜେ କରିଗଲେ । ତାହି ଭିତରୁ ପରମେଶ୍ୱରଙ୍କଠାରୁ ବ୍ରହ୍ମମାନ ବାହାର କରି ଦଇତାପତି ଲୁଗାରେ ପୁରାଇ ମାଣିତ୍ରର କଟକେ ଶ୍ରୀ ନଅରେ ବିଜେ କରାଇଥିଲେ । X X X ଏ ମହାରାଜାଙ୍କ ଅ ୧୨ଙ୍କ ସାହାଜାଦା ପାତଶା ପଟଣାକୁ ଭାଗି ଅଇଲାକୁ ପରମେଶ୍ୱରଙ୍କୁ ଖୋରଧା କଟକେ ନେଇ ମେରଦାରେ ବିଜେ କରାଇଲେ । ସାହାଜାନ ପାତଶା ଭାଗି ଆସି ଦକ୍ଷିଣ ଗଲା ଉତ୍ତାରେ ଶ୍ରୀ ପୁରୁଷୋତ୍ତମ ପରମେଶ୍ୱରଙ୍କୁ ନିଚଳ ସିଂଘାସନେ ବିଜେ କରାଇଲେ । X X X ଏ ମହାରାଜାଙ୍କ ଅ ୩୨ ଙ୍କ ମିଥୁନ ୭ ଦିନ ରାତ୍ରି ପାହିବାକୁ ନବାବ ମତମଦଆର ଖାଁ । ଆସି ଶ୍ରୀ ପୁରୁଷୋତ୍ତମ ଦକ୍ଷିଣ ପାରୁଶ ନଅରେ ରଜାଙ୍କର ଅନିରୁଦ୍ଧ ରାସ୍ତେ ପିତାମହଙ୍କୁ ସାଙ୍ଗକରି ରାଜା— ଠାକୁରଙ୍କ ମୁଣ୍ଡ କାଟିଦେଲା । ଶ୍ରୀ ନଅର ଦ୍ରବ୍ୟଯାକ ନେଲା । ପରମେଶ୍ୱରଙ୍କ ଭଣ୍ଡାର ସବୁ ନେଲା ।" **

ଖୋରଧା ଗଜପତି ମୁକୁନ୍ଦଦେବ (୧ମ) ଙ୍କ ଅମଳରେ ମଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମନ୍ଦିର ଉପରେ ଘନ ଘନ ଆକ୍ରମଣ ହୋଇଥିବାର ସୂଚନା ମିଳେ । ଏହି ରାଜାଙ୍କ ସମୟରେ ସୁବେଦାର ସାୟସ୍ତ ଖାଁଙ୍କ ପୁତ୍ର ଆବୁନସର ଖାଁ ଓଡ଼ିଶାର ବହୁ ଦେବଦେବୀଙ୍କ ମନ୍ଦିର ଉପରେ କୋପଦୃଷ୍ଟି ପକାଇ, ସେଗୁଡ଼ିକୁ ଭାଙ୍ଗି ନଷ୍ଟଭ୍ରଷ୍ଟ କରାଇଥିଲେ । ଏହାଙ୍କ ଦ୍ୱାରା ଝଙ୍କଡ଼ର ସାରଳା ଦେବୀଙ୍କ ମନ୍ଦିର ଓ ଯାଜପୁରର ଅନେକ ପ୍ରସିଦ୍ଧ ମନ୍ଦିର ଧ୍ୱସ୍ତ-ବିଧ୍ୱସ୍ତ ହୋଇଥିବାର ପ୍ରମାଣ ଉପଲବ୍ଧି ହୁଏ ।

ଗଜପତି ମୁକୁନ୍ଦଦେବ (୧ମ)ଙ୍କ ପୁତ୍ର ଗଜପତି ଦିବ୍ୟସିଂହ ଦେବ (୧ମ) ହେଉଛନ୍ତି ଖୋରଧା ରାଜବଂଶର ସପ୍ତଦଶ ଶତାବ୍ଦୀର ଶେଷ ରାଜା । ସେ ଖ୍ରୀ:ଅ:୧୬୮୮–୧୭୧୬ ପର୍ଯ୍ୟନ୍ତ ରାଜସିଂହାସନ ଆରୋହଣ କରିଥିଲେ । ଖୁବ୍ ସମ୍ଭବତଃ ମୁକୁନ୍ଦଦେବଙ୍କ ମୃତ୍ୟୁ ବେଳକୁ ଓଡ଼ିଶାରେ ଯବନମାନଙ୍କ ଅତ୍ୟାଚାର ପ୍ରବଳ ହୋଇଥିବାରୁ ରାଜା ଦିବ୍ୟସିଂହଙ୍କର ରାଜ୍ୟାଭିଷେକ ଉତ୍ସବ ଖୋରଧା ଦୁର୍ଗରେ ଅନୁଷ୍ଠିତ ନ ହୋଇ ରଥୀପୁରଠାରେ ହୋଇଥିଲା ।

---

*"ରସିକମଙ୍ଗଳ" (ବଙ୍ଗଳାକ୍ଷରରେ ମୁଦ୍ରିତ) ପୃ—୧୨୦
** ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ, (ପ୍ରାଚୀ) ପୃ—୨୭-୨୧

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ମୋଗଲ ସୁବେଦାର ନବାବ ଇକ୍ରମ୍ ଖାଁ କଠୋର ନୀତି ଅବଲମ୍ବନ କରି ହିନ୍ଦୁ ରାଜା ଓ ସେମାନଙ୍କ ଆରାଧ୍ୟ ଦେବଙ୍କୁ ନଷ୍ଟଭ୍ରଷ୍ଟ କରିବାରେ ବଦ୍ଧପରିକର ହୋଇଥିଲେ ।

ନବାବ ଇକ୍ରାମ ଖାଁ ଭାରତ ଇତିହାସର କୁଖ୍ୟାତ ହିନ୍ଦୁବିଦ୍ୱେଷୀ ମୋଗଲ ବାଦଶାହ ଆଉରଙ୍ଗଜେବଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀ ଥିଲେ । ବାଦଶାହଙ୍କ ଆଦେଶରେ ସେ ପୂର୍ବଭାରତର ପ୍ରଖ୍ୟାତ ଦେବମନ୍ଦିର ତଥା ଭାରତବର୍ଷର ସୁଖ୍ୟାତ ଚତୁର୍ଦ୍ଧାମ ମଧ୍ୟରେ ଅନ୍ୟତମ ପୀଠ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରଟିକୁ ଭାଙ୍ଗି, ଦେବବିଗ୍ରହକୁ ଅପବିତ୍ର କରିବା ଲାଗି ବଦ୍ଧପରିକର ହୋଇଥିଲେ । କାରଣ ହିନ୍ଦୁବିଦ୍ୱେଷୀ ବାଦଶାହାଙ୍କର ଧାରଣା ଥିଲା ଯେ, ହିନ୍ଦୁ ଜନତାକୁ ଉତ୍ପୀଡ଼ିତ କରିବା ପରିବର୍ତ୍ତେ, ସେମାନଙ୍କଦ୍ୱାରା ପୂଜିତ ଦେବବିଗ୍ରହକୁ ଭାଙ୍ଗି ନଷ୍ଟଭ୍ରଷ୍ଟ କରିଦେଲେ, ସାଧାରଣ ଜନତା, ଯୋଦ୍ଧା ତଥା ଶାସକଙ୍କ ମନୋବଳ ସହଜରେ ଭାଙ୍ଗିପଡ଼େ ଓ ସେମାନଙ୍କୁ ତା'ପରେ ଯୁଦ୍ଧରେ ଜୟକରିବା ଅତ୍ୟନ୍ତ ସହଜ ବ୍ୟାପାର ହୋଇଥାଏ । ଭାରତବର୍ଷରେ ଯେତେ ଯେଉଁଠି ଦେବମନ୍ଦିର ରହିଛି, ସେଗୁଡ଼ିକୁ ନଷ୍ଟଭ୍ରଷ୍ଟ କରିବା ମୂଳରେ ଇସଲାମ୍‌ଧର୍ମୀ ଶାସକମାନଙ୍କଦ୍ୱାରା ଏହି ନୀତି ଅନୁସୃତ ହୋଇଛି ।

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଶେଷ ଦଶକରେ ମଧ୍ୟ ପୁଣି ଥରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ ଆକ୍ରମଣ କରାଯାଇଥିଲା । ମୀର ସୟଦ ମହମ୍ମଦ ନାମକ ଜଣେ କର୍ମଚାରୀଙ୍କୁ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଭାଙ୍ଗି, ପୂଜିତ ଦେବତା ଶ୍ରୀଜଗନ୍ନାଥଙ୍କୁ ବାଦଶାହ ଆଉରଙ୍ଗଜେବଙ୍କ ନିକଟକୁ ପଠାଇଦେବା ଲାଗି ଆଦେଶ ଦିଆଯାଇଥିଲା । ମୀର୍ ସୟଦ୍ ଦିବ୍ୟସିଂହ ଦେବ (୧ମ)ଙ୍କୁ ଡକାଇ ବାଦଶାହଙ୍କ ଆଦେଶ ଶୁଣାଇଥିଲେ । ତଦନୁସାରେ ଗଜପତି ରାଜା ବାଦଶାହଙ୍କ ନିକଟରେ ଛଳନା କରି ଶ୍ରୀମନ୍ଦିରର ପ୍ରବେଶ ଦ୍ୱାରଟିକୁ ଭାଙ୍ଗି ପକାଇ ଚନ୍ଦନ କାଠରେ ନିର୍ମିତ ଗୋଟିଏ ଦେବବିଗ୍ରହ ବାଦଶାହଙ୍କ ନିକଟକୁ ବିଜାପୁର ପଠାଇଥିଲେ । ସେଠାରେ ସେହି ବିଗ୍ରହଟିକୁ ମସଜିଦ୍‌ର ପାହାଚ ତଳେ ପକାଯାଇଥିଲା ବୋଲି 'ତାବ୍‌ସିରତ ଉଲ୍-ନଜରିନ୍' (Tabsirat-ul-Naizirin) ନାମକ ପୁସ୍ତକରେ ଦେଖିବାକୁ ମିଳେ ।

ଏ ସମ୍ବନ୍ଧରେ ମାଦଳାପାଞ୍ଜିରେ ନିମ୍ନଲିଖିତ ମତେ ବିବରଣୀ ଥିବାର ଦେଖାଯାଏ—

"ଏ ମହାରାଜାଙ୍କ ଅଙ୍କ ବୃଷଭ ଦି ୧୮ ନ ମୋଗଲ୍ ଗୋଳରେ ଏ ଦିନ ପଲାଉଣୀ ନିମନ୍ତେ ରାତ୍ର ତିନିପ୍ରହରଠାରେ ପରମେଶ୍ୱରେ ଚତୁର୍ଦ୍ଧାମୂରତି ପହଣ୍ଡି ବିଜେକଲେ । ଭିତର ବେଢ଼ାରେ ବିମଳାଇଙ୍କ ପଛଆଡ଼ ବେଢ଼ାରେ ବିଜେକଲେ । ଦକ୍ଷିଣ ଘରୁ ଦେବତାମାନେ ପୋକାଲ ଗଡ଼ (କୋକାଲ ଗଡ଼)କୁ ବିଜେକଲେ । ଏ ଦିନ ପାହାନ୍ତି ଅବକାଶେ ଦୁଇ ପ୍ରହର ଧୂପ ବଢ଼ିଲା ଉତ୍ତାରୁ, ବଡ଼ଠାକୁରଙ୍କ ବାଡ଼ରୁ ଆରୋହଂମାନ ହୋଇଲେ ।

× × × ବୃଷଭ ଦି ୧୯ ନେ ହରିଣ ଏକାଦଶୀ ଦିନ ପାତିଶା ଆଉରଙ୍ଗଶାହାଙ୍କ ନବାବ ଏକରାମ ଖାଁ ଏହାଙ୍କଠାରୁ ଅଇଲା । ଏହା ଭାଇ ମରମସ୍ତ ଖାଁ ଜମାଉଲ୍ଲା ଏ ସଙ୍ଗତେ ଇମାମ କୋଲି ଅସୁଆର ୫୦ ଗୋଟା ଘେନି ରାଜା ଦିବ୍ୟସିଂହ ଦେବେ ବାରୁ ଲଗି ହୋଇ-ଥାଇ ସିଂହଦ୍ୱାର ଗୁମୁଟ ଭାଙ୍ଗିଲେ । ଭୋଗମଣ୍ଡପରୁ ଚକ ନେଲେ । କାଠର ଜଗନ୍ନାଥ ପ୍ରତିମାକୁ ମୁଠେଇ ନେଲେ । ଦେଉଳ ସିଂହାସନ ଉପରକୁ ନବାବ ଭାଇ ଗଲା । ଦେଉଳ ସିଂହଦ୍ୱାର ଦକ୍ଷିଣ ଦ୍ୱାର ମଧ୍ୟ ମୁଦିକଲା ।"*

'ମାଦଳାପାଞ୍ଜି'ରେ ବର୍ଣ୍ଣିତ ବୃଷଭ (ବୃଷ) ୧୯ ଦିନ ହରିଣ ଏକାଦଶୀ ତିଥି ଖ୍ରୀ: ଅ: ୧୬୯୨ ମସିହା ମେ ମାସ ୧୬ ତାରିଖରେ ପଡ଼ିଥିଲା ବୋଲି ପ୍ରସିଦ୍ଧ ଐତିହାସିକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ତାଙ୍କ 'ଖୁରୁଧା ଇତିହାସ'ରେ ଉଲ୍ଲେଖ କରିଛନ୍ତି ।

ଏ ସମ୍ବନ୍ଧରେ କେବଳ ଯେ 'ମାଦଳାପାଞ୍ଜି'ରେ ବିବରଣୀ ରହିଛି ତା' ନୁହେଁ, 'ଚକଡ଼ା' ପୋଥିରେ ମଧ୍ୟ ଏହି ଲୋମହର୍ଷଣକାରୀ ଘଟଣାର ଉଲ୍ଲେଖ ରହିଛି ।

ଉକ୍ତ ବର୍ଣ୍ଣନାଗୁଡ଼ିକରୁ ଜଣାଯାଏ ଯେ, ଗଜପତି ଦିବ୍ୟସିଂହ ଦେବଙ୍କ ରାଜତ୍ୱର ଶେଷଭାଗରେ ଶ୍ରୀଜଗନ୍ନାଥ ମନ୍ଦିର ତଥା ଓଡ଼ିଶାର ଅନ୍ୟାନ୍ୟ ଦେବମନ୍ଦିରଗୁଡ଼ିକ ଉପରେ ନାହିଁନଥିବା ବିପତ୍ତି ପଡ଼ିଥିଲା । ତେଣୁ ଭାରତର ପ୍ରଖ୍ୟାତ ହିନ୍ଦୁତୀର୍ଥ ଶ୍ରୀଜଗନ୍ନାଥ ଧାମର ମହତ୍ତ୍ୱକୁ ସମ୍ପୂର୍ଣ୍ଣରୂପେ ଧୂଳିସାତ୍ କରିବା ଉଦ୍ଦେଶ୍ୟରେ ଦୁର୍ଦ୍ଧର୍ଷ ଶାସକ ଆଉରଙ୍ଗଜେବ ବଦ୍ଧପରିକର ହୋଇଥିଲେ । ତାଙ୍କର ଇଙ୍ଗିତରେ ପୁରୀରେ ନାନାପ୍ରକାର ଅକଥନୀୟ ଆକ୍ରମଣ କରାଯାଇଥିଲା ଏବଂ ବିଶେଷତଃ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଓ ବିଗ୍ରହ ଉପରେ ଯବନ-ମାନେ ଭୀଷଣ ଆକ୍ରମଣ ଚଳାଇଥିଲେ ।

ସେହି ବିପଦ ସମୟରେ ପୁରୀର ସେବକମାନେ ଉପାୟହୀନ ହୋଇ ଗଜପତି ରାଜାଙ୍କ ଇଙ୍ଗିତରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରଥମେ ମନ୍ଦିର ବେଢ଼ାରେ କିଛି ଦିନ ଲୁଚାଇ ରଖିବା ପରେ, ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଚିଲିକାର ଜଳମାର୍ଗରେ ସୁଦୂର ବାଣପୁର ଅଞ୍ଚଳକୁ ନେଇଯାଇ ଲୁଚାଇ ରଖିଥିଲେ । ସେତେବେଳେ ଶ୍ରୀମନ୍ଦିରରେ ଆଉ କୌଣସି ପ୍ରକାର ପର୍ବପର୍ବାଣି ଆଦି ପାଳିତ ହୋଇ ନ ଥିଲା, ଏପରିକି ଯବନ-ଶାସକମାନଙ୍କ ଭୟରେ ସେବକମାନେ ଶ୍ରୀମନ୍ଦିରରେ ଘଣ୍ଟାବାଦନ, ନୀତି-ନିଯୋଗ ଆଦି ବନ୍ଦ କରିଦେଇଥିଲେ । ଇତିହାସରେ ଏଭଳି ଦୁର୍ଦ୍ଧର୍ଷ ଆକ୍ରମଣ ଆଉ କେବେ ହୋଇନଥିଲା । ଓଡ଼ିଶାର ଦୁର୍ବଳ ରାଜଶକ୍ତି ପ୍ରବଳ ମୋଗଲ ଶାସନର ସମ୍ମୁଖୀନ ହେବାରେ ଆଦୌ ସକ୍ଷମ ହୋଇନଥିଲେ । ମୋଗଲ ଶାସନ ବିରୁଦ୍ଧରେ ତତ୍କାଳୀନ ଗଜପତି ଦିବ୍ୟସିଂହ ଦେବ ଛଳନାପୂର୍ଣ୍ଣ ବ୍ୟବହାର କରିନଥିଲେ, ଶ୍ରୀମନ୍ଦିରର ଅସ୍ତିତ୍ୱ ସେହିଦିନରୁ ଲୋପପାଇଥା'ନ୍ତା ।

* ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ (ପ୍ରାଚୀ ସଂସ୍କରଣ) ପୃ—୩୧

ଗଜପତି ରାମଚନ୍ଦ୍ର ଦେବ (୨ୟ) ଖ୍ରୀ: ଅ: ୧୭୨୭ରୁ ୧୭୩୭ ପର୍ଯ୍ୟନ୍ତ ଗଜପତି ସିଂହାସନ ଆରୋହଣ କରି, ଠାକୁରରାଜା ରୂପେ ପ୍ରଖ୍ୟାତ ହେଲେ । ରାଜା ରାମଚନ୍ଦ୍ରଙ୍କ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଶୁଣାଯାଏ । ତନ୍ମଧ୍ୟରେ ଗୋଟିଏ କିମ୍ବଦନ୍ତୀ ହେଉଛି— ସେ ଇସ୍‌ଲାମ୍ ଧର୍ମ ଗ୍ରହଣ କରିଥିଲେ । ତେଣୁ ତାଙ୍କ ପୁଅମାନଙ୍କ ମଧ୍ୟରୁ ଅନ୍ୟତମ ଭାଗୀରଥି କୁମାର ବିଦ୍ରୋହୀ ହୋଇ ପିତାଙ୍କ ବିରୁଦ୍ଧାଚରଣ କରିଥିଲେ । ଉକ୍ତ ଜନଶ୍ରୁତିରୁ ମଧ୍ୟ ଜଣାଯାଏ ଯେ, ରାମଚନ୍ଦ୍ର ଦେବ ମୁସଲମାନ ହୋଇଥିଲେ ମଧ୍ୟ ତାଙ୍କ ବଂଶର ଇଷ୍ଟଦେବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ଅଶେଷ ଶ୍ରଦ୍ଧା ଜ୍ଞାପନ କରୁଥିଲେ ଏବଂ ଶ୍ରୀମନ୍ଦିରର ସୁରକ୍ଷା ଲାଗି ସେ ସର୍ବଦା ଯତ୍ନଶୀଳ ଥିଲେ ।

ତାଙ୍କର ଅନ୍ୟତମ ପୁତ୍ର ଭାଗୀରଥି କୁମାର ବିଦ୍ରୋହୀ ହୋଇ ବିଭିନ୍ନ ସ୍ଥାନରେ ଆତ୍ମଗୋପନ କରି ରହିଲେ । ସେତେବେଳେ ସେ ବହୁ କଷ୍ଟ ସ୍ୱୀକାର କରି କାଳାତିପାତ କରୁଥିଲେ । କିମ୍ବଦନ୍ତୀରୁ ଆହୁରି ମଧ୍ୟ ଜଣାଯାଏ ଯେ, ଭାଗୀରଥି କୁମାର ବିଭିନ୍ନ ସ୍ଥାନରେ ଶରଣାର୍ଥୀ ଜୀବନ ଯାପନ କରୁଥିବା ସମୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମନ୍ଦିରର ସୁରକ୍ଷା ନିମିତ୍ତ ସର୍ବଦା ସତର୍କ ଦୃଷ୍ଟି ରଖିଥିଲେ ଏବଂ ଆବଶ୍ୟକ ସମୟରେ ମୋଗଲ ସେନାଙ୍କୁ ଆକ୍ରମଣ କରି ସେମାନଙ୍କର ଅଶେଷ କ୍ଷତି ଘଟାଉଥିଲେ । ଏହି ଅବସରରେ ସେ ଆଖପାଖର ରାଜା, ଜମିଦାର ଓ ସୁଯୋଗ୍ୟ ସର୍ଦ୍ଦାରମାନଙ୍କଠାରୁ ଯଥାମତ ସାହାଯ୍ୟ ପାଉଥିଲେ ।

ସେତିକବେଳେ ମହମ୍ମଦ ତକି ଖାଁ ନାମକ ଜଣେ ଦୁର୍ଦ୍ଧର୍ଷ ମୋଗଲସାର ଓଡ଼ିଶାର ସୁବେଦାର ହୋଇଥିଲେ । ସେ ନିଜର ପିତା ସୁଜାଉଦ୍ଦୀନ୍‌ଙ୍କ ଅପେକ୍ଷା ଅଧିକ ହିନ୍ଦୁ ବିରୋଧୀ ଥିଲେ ଏବଂ ଖୋର୍ଦ୍ଧା ରାଜାଙ୍କୁ କଳେ ବଳେ କୌଶଳେ ପରାସ୍ତ କରି, ଓଡ଼ିଶାର ଦେବ-ମନ୍ଦିର ଓ ଦେବବିଗ୍ରହଗୁଡ଼ିକୁ ଧ୍ୱଂସକରିବା ସଙ୍ଗେ ସଙ୍ଗେ ଶ୍ରୀମନ୍ଦିରର ଧ୍ୱଂସସାଧନରେ ବ୍ରତୀ ହୋଇଥିଲେ ।

ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ 'ଖୁର୍ଦ୍ଧା ଇତିହାସ'ରୁ ଜଣାଯାଏ * ଯେ ଖୁର୍ଦ୍ଧା ଦୁର୍ଗରେ ନଜରବନ୍ଦୀ ଥିବା ସମୟରେ ଗଜପତି ରାମଚନ୍ଦ୍ର ସବୁବେଳେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମନ୍ଦିର ଉପରେ ଯବନମାନଙ୍କ ପକ୍ଷରୁ ଆକ୍ରମଣ ହେବାର ଆଶଙ୍କା କରୁଥିଲେ । ତେଣୁ ସେ ତାଙ୍କର ବିଶ୍ୱସ୍ତ କର୍ମଚାରୀମାନଙ୍କ ସହ ପରାମର୍ଶକରି, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଚିଲିକାର ଜଳମାର୍ଗରେ ନେଇ ବାଣପୁରଠାରେ ଗୋପନରେ ରଖାଇଲେ । ଏ ସମ୍ବାଦ ପାଇ ତକିଖାଁ କ୍ରୋଧରେ ଜର୍ଜରିତ ହୋଇ ଖୋର୍ଦ୍ଧା ଆକ୍ରମଣ କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଘେରାଉକଲେ । ରାଜା ରାମଚନ୍ଦ୍ର ଦେବ ମୋଗଲ ଆକ୍ରମଣ ଭୟରେ ଖୋର୍ଦ୍ଧା ଛାଡ଼ି ପଳାୟନ କଲେ ଏବଂ ନୟାଗଡ଼ ଓ ଖଣ୍ଡପଡ଼ାରେ ଆଶ୍ରୟ ଗ୍ରହଣକଲେ ।

---

* ଖୁର୍ଦ୍ଧା ଇତିହାସ; ପୃଷ୍ଠା—୫୬

ଏହି ସମୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପବିତ୍ରତା ରକ୍ଷାକରିବା ଉଦ୍ଦେଶ୍ୟରେ ପଣ୍ଡା ଓ ସେବକମାନେ ମହାପ୍ରଭୁଙ୍କୁ ବାଣପୁରଠାରୁ ନେଇ ଖଲିକୋଟର ଏକ ନିଭୃତ ଅଞ୍ଚଳ 'ଚିକିଲି'ଠାରେ ରଖାଇଲେ ।

ରାଜା ରାମଚନ୍ଦ୍ରଙ୍କ ପଳାୟନର ସୁଯୋଗ ନେଇ, ତାଙ୍କର ବିଦ୍ରୋହୀ ପୁତ୍ର ଭଗୀରଥି କୁମାର ତକିଖାଁଙ୍କର ବିଶ୍ୱାସଭାଜନ ହୋଇ ଖୁରୁଧା ସିଂହାସନ ଅଧିକାର କରିନେଲେ ।

ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ବିଜାତୀୟ ଶାସକଙ୍କ ହାତରୁ ଶ୍ରୀଜଗନ୍ନାଥଙ୍କୁ ରକ୍ଷା-କରିବା ପାଇଁ ତାଙ୍କର ସେବକମାନେ ବିଭିନ୍ନ ସ୍ଥାନରେ ଆରାଧ୍ୟ ଦେବଙ୍କୁ ଲୁଚାଇ ରଖି-ଥିଲେ । ତନ୍ମଧ୍ୟରେ ଆଠଗଡ଼ (ଗଞ୍ଜାମ), 'ମାରଦା' ବା 'ମେରଦା' ଓ ମଥୁରା ଗ୍ରାମ ଅନ୍ୟତମ । ଆଠଗଡ଼ (ଗଞ୍ଜାମ)ର କାରିଗରମାନେ ବହୁ ପରିଶ୍ରମ କରି ଶ୍ରୀଜଗନ୍ନାଥଙ୍କ ଅବସ୍ଥାନ ନିମିତ୍ତ ମଥୁରାଠାରେ ଏକ ମନ୍ଦିର ନିର୍ମାଣ କରିଥିଲେ । ତକିଖାଁଙ୍କ ଶାସନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ଅର୍ଥାତ୍ ଖ୍ରୀ: ଅ: ୧୭୨୭-୧୭୩୫ ପର୍ଯ୍ୟନ୍ତ, ବହୁବାର ଶ୍ରୀମନ୍ଦିର ଉପରେ ଯବନମାନଙ୍କ ଦ୍ୱାରା ଆକ୍ରମଣ କରାଯାଇଥିଲା ଏବଂ ବିପଦ ସମୟରେ ଶ୍ରୀମନ୍ଦିର ସେବକ ଓ ଗଜପତି ରାଜାଙ୍କ ପାତ୍ରମନ୍ତ୍ରୀମାନେ ବଡ଼ଠାକୁରଙ୍କୁ ବିଭିନ୍ନ ଗୋପନୀୟ ସ୍ଥାନରେ ଲୁଚାଇରଖି, ହିନ୍ଦୁମାନଙ୍କର ମାନ ମହତ୍ତ୍ୱ ରକ୍ଷାକରିପାରିଥିଲେ । □□□

# ଲାଲବେଗ ଓ ଓଡ଼ିଶା

ମିର୍ଜା ନାଥନ୍‌ଙ୍କ 'ବାହାରସ୍ତାନ-ଇ-ଘାଇବ' ନାମକ ପୁସ୍ତକରୁ ଜଣାଯାଏ ଯେ ଜାହାଙ୍ଗୀର୍ ବାଦ୍‌ଶାହଙ୍କ ଅମଳରେ ଜାହାଙ୍ଗୀର୍ କୁଲିଖାଁ ନାମକ ଜଣେ ସୁଯୋଗ୍ୟ ବ୍ୟକ୍ତି ତାଙ୍କର ବିଶ୍ୱାସଭାଜନ ହୋଇଥିଲେ । ଜାହାଙ୍ଗୀର୍ କୁଲିଙ୍କର ଡାକ ନାମ ଥିଲା 'ଲାଲ୍‌ବେଗ୍'; ତାଙ୍କ ପିତାଙ୍କ ନାମ ଥିଲା ନିଜାମ୍ । ନିଜାମ୍ ହୁମାୟୁନ୍ ବାଦ୍‌ଶାହଙ୍କ ଅମଳରେ ଜଣେ ପାଠାଗାରର ସଂରକ୍ଷକରୂପେ କାର୍ଯ୍ୟ କରୁଥିଲେ । ଲାଲବେଗ ନିଜ ବୁଦ୍ଧିମତ୍ତାବଳରେ ବାଦଶାହ ଜାହାଙ୍ଗୀରଙ୍କର ଅତ୍ୟନ୍ତ ପ୍ରିୟପାତ୍ର ହୋଇପାରିଥିଲେ ଏବଂ ନିଜ କାର୍ଯ୍ୟଦକ୍ଷତାର ପ୍ରମାଣ ସ୍ୱରୂପ ଜଣେ ମୁଖ୍ୟ ସର୍ଦ୍ଦାର ଭାବରେ ପରିଗଣିତ ହୋଇଥିଲେ । ଧୀରେ ଧୀରେ ବାଦ୍‌ଶାହଙ୍କର ସେ ଅତ୍ୟନ୍ତ ପ୍ରିୟପାତ୍ର ହୋଇପାରିଲେ ଏବଂ ଚାରିହଜାର ଘୋଡ଼ସବାର ବାହିନୀର ମୁଖ୍ୟ ବା 'ମନ୍ ସବାଦାର' ରୂପେ ତାଙ୍କୁ ବିହାରର ସୁବାଦାରରୂପେ ଜାହାଙ୍ଗୀର ନିଯୁକ୍ତ କରିଥିଲେ; କିନ୍ତୁ ବଙ୍ଗଳାର ସୁବାଦାର କୁତବୁଦ୍ଦୀନ୍, ଶେର୍ ଆଫଗାନ୍‌ଙ୍କଦ୍ୱାରା ନିହତ ହୁଅନ୍ତେ, ବାଦ୍‌ଶାହ ଜାହାଙ୍ଗୀର କୁଲିଖାଁ (ଲାଲ୍‌ବେଗ୍)ଙ୍କୁ ବଙ୍ଗଳାର ସୁବାଦାର୍ ରୂପେ ନିଯୁକ୍ତ କରିଥିଲେ । 'ଇକ୍‌ବାଲ୍‌ନାମା ଜାହାଙ୍ଗୀର' ପ୍ରଭୃତି ବିବରଣୀରୁ ଜଣାଯାଏ ଯେ ଲାଲ୍‌ବେଗ୍ ମେ ୩୦ ତାରିଖ ୧୬୦୭ରେ ବଙ୍ଗଳାର ସୁବାଦାର୍ ରୂପେ ନିଯୁକ୍ତ ହୋଇଥିଲେ ଏବଂ ଅପ୍ରେଲ ୪ ତାରିଖ ୧୬୦୮ରେ ତାଙ୍କର ମୃତ୍ୟୁ ହୋଇଥିଲା ।

"Jahangir Quli Khan originally known as Lala Beg was son of Nizam, Humayun's librarian. He entered Jahangir's service when he was still a prince. On Jahangir's accession he was raised to the command of 4000 horses and appointed Subahdar of Bihar. When Qutub-ud-Din, Governor of Bengal was killed by Sher Afghan on May 30, 1607, he was appointed Governor of Bengal. He succumbed to the climate of Bengal soon after. Jahangir learnt of his death on 20 Muharam, 1018 A. H. (27-4-1608). *

---

* Journal of Indian History, Vol. XI, Page—337.

ଖ୍ରୀ: ଅ: ୧୬୦୦-୧୬୨୧ ପର୍ଯ୍ୟନ୍ତ ଖୋର୍ଦ୍ଧା ରାଜା ଗଜପତି ପୁରୁଷୋତ୍ତମ ଦେବ 'ଠାକୁର ରାଜା' ନାମରେ ଶ୍ରୀମନ୍ଦିରର ରକ୍ଷଣାବେକ୍ଷଣ କରୁଥିଲେ । ତାଙ୍କ ସମୟରେ ଓଡ଼ିଶା ଓ ବଙ୍ଗଳା ମିଶି ଗୋଟିଏ ସୁବାଦାରଙ୍କ ଅଧୀନରେ ଶାସିତ ହେଉଥିଲା; କିନ୍ତୁ ଜାହାଙ୍ଗୀର ବଙ୍ଗଳାରୁ ଓଡ଼ିଶାକୁ ପୃଥକ୍ କରି ଗୋଟିଏ ସ୍ୱତନ୍ତ୍ର 'ସୁବା'ରେ ପରିଣତ କରିଥିଲେ । ଖୁବ୍ ସମ୍ଭବତଃ ଜାହାଙ୍ଗୀରଙ୍କ କୁଲିଖାଁ ବା ଲାଲବେଗ ବଙ୍ଗର ସୁବେଦାର ହେବାମାତ୍ରେ ଓଡ଼ିଶା ଉପରେ ଲୋଲୁପଦୃଷ୍ଟି ପକାଇଥିବେ । ବିଶେଷତଃ ହିନ୍ଦୁ-ଜଗତର ଶ୍ରେଷ୍ଠ ପୀଠ ଶ୍ରୀଜଗନ୍ନାଥଧାମ ତାଙ୍କର ହିନ୍ଦୁବିଦ୍ୱେଷ ନୀତିକୁ ଅତ୍ୟନ୍ତ ଉତ୍ତେଜିତ କରାଇ-ଥିବ । ଆଉ ମଧ୍ୟ ଶ୍ରୀଜଗନ୍ନାଥଧାମକୁ ଧ୍ୱଂସ କରି, ଚତୁର୍ଦ୍ଧାମୂର୍ତ୍ତିଙ୍କୁ ନଷ୍ଟଭ୍ରଷ୍ଟ କରିପାରିଲେ ଦିଲ୍ଲୀ ବାଦଶାହ ଅତ୍ୟନ୍ତ ପ୍ରୀତ ହେବେ ବୋଲି ତାଙ୍କର ଧାରଣା ହୋଇଥିବ । ଆହୁରି ମଧ୍ୟ ଅବସ୍ଥାଚକ୍ରରେ ପଡ଼ି ଗଜପତି ପୁରୁଷୋତ୍ତମ ଦେବ ପ୍ରଚଣ୍ଡ ମୋଗଲ ବାହିନୀର ସମ୍ମୁଖୀନ ହେବାକୁ ସାହସ କରିପାରୁନଥିବାରୁ, ସମୟ ଓ ସୁଯୋଗ ଉଣ୍ଡି ଲାଲବେଗ ଖୋର୍ଦ୍ଧା ଜୟକରି ପୁରୀର ଶ୍ରୀମନ୍ଦିର ଲୁଣ୍ଠନ କରିବାକୁ ଅଗ୍ରସର ହୋଇଥିବେ ।

ସେତେବେଳେ କଟକଠାରେ ମୋଗଲ ସୁବାଦାରମାନେ ଶିବିର ସ୍ଥାପନକରି ଖୋର୍ଦ୍ଧା ଆକ୍ରମଣ କରୁଥିଲେ ଏବଂ ଲାଲବେଗ ମଧ୍ୟ ସେହିଠାରେ ରହି ପୁରୀ ଅଭିମୁଖେ ବିଜୟ ଅଭିଯାନ ଚଳାଇଥିବା ଆଦୌ ଅସମ୍ଭବ ନୁହେଁ । ବିଶେଷତଃ ଲାଲବେଗ ନିଜର ପ୍ରତିପତ୍ତି, ଧର୍ମବିଦ୍ୱେଷ ନୀତି ଓ ନିଜର ଅନ୍ନଦାତା ଦିଲ୍ଲୀ ବାଦଶାହ ଜାହାଙ୍ଗୀରଙ୍କ ପରିତୃଷ୍ଟି ନିମିତ୍ତ ହିନ୍ଦୁଜଗତରେ ପ୍ରସିଦ୍ଧି ଲାଭକରିଥିବା ଓଡ଼ିଶା ଓ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରର ଲୁଣ୍ଠନ ଲାଗି ଖ୍ରୀ: ଅ: ୧୬୦୭ ଓ ୧୬୦୮ ମଧ୍ୟରେ ଚେଷ୍ଟା କରିଥିବେ । ସେହି ଅବସରରେ ତାଙ୍କର ସେନାଛାଉଣି କଟକଠାରେ ରହିଥିଲା । ସେ କଟକଠାରୁ ସ୍ଥଳପଥରେ ଖୋର୍ଦ୍ଧା ଓ ପୁରୀକୁ ସେନାବାହିନୀ ସହିତ ଅଗ୍ରସର ହୋଇଥିଲେ ।

ଲାଲବେଗଙ୍କ ଓଡ଼ିଶା ଆକ୍ରମଣ ଓ ଶ୍ରୀମନ୍ଦିର ଲୁଣ୍ଠନବୃତ୍ତାନ୍ତ ଅନ୍ୟ କୌଣସି ପ୍ରାମାଣିକ ସୂତ୍ରରୁ ଉପଲବ୍ଧ ହୁଏନାହିଁ; କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଭକ୍ତକବି ତଥା 'ଦାର୍ଢ୍ୟତାଭକ୍ତି ରସାମୃତ'ର ପ୍ରଣେତା କବି ରାମଦାସ ଲାଲବେଗଙ୍କ ଓଡ଼ିଶା ଆକ୍ରମଣ ସମ୍ବନ୍ଧରେ କେତେକ ସୂଚନା ଦେଇଛନ୍ତି । ଲାଲବେଗଙ୍କ ପୁଅ ସାଲବେଗ ଓଡ଼ିଆ ଭକ୍ତକବିମଣ୍ଡଳୀରେ ଜଣେ ପ୍ରସିଦ୍ଧ ସନ୍ଥକବି ହୋଇଥିବାରୁ, ତାଙ୍କ ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ ରାମଦାସ ମୋଗଲ ସେନାପତି ଲାଲବେଗଙ୍କ ସମ୍ବନ୍ଧରେ ଲେଖିଛନ୍ତି—

"କଟକ ନାମରେ ସହର, ଲାଲବାଗରେ ତାର ଘର ॥
ଜାତିରେ ଅଟଇ ପଠାଣ, ତାହାର କଥା ଏବେ ଶୁଣ ॥
ମୁଗୁଲନାମେ ଲାଲବେଗ, ତାହାର ପୁତ୍ର ସାଲବେଗ ॥
ତାହାର ଜନ୍ମ କର୍ମ ଯେତେ, ଶୁଣ କହିବା ଶୁଦ୍ଧଚିତ୍ତେ ॥
ସେ ଲାଲବେଗ ଅତି ଦୁଷ୍ଟ, ଖଳ ପ୍ରପଞ୍ଚ ବୁଦ୍ଧି ନଷ୍ଟ ॥

ଶ୍ରୀଗଜପତି ଦଣ୍ଡଧାରୀ, ସଙ୍ଗତେ ଶସ୍ତ୍ର ପଣ କରି ॥
ଅନେକ ସୈନ୍ୟ ଠୁଳକଲା, ଓଡ଼ିଶା ଯୁଝିବାକୁ ଗଲା ॥
ଉଚ୍ଛୁଳେ ବାଦ୍ୟନାଦ ଘୋଷ, ଓଡ଼ିଶା ରାଜ୍ୟରେ ପ୍ରବେଶ ॥
ସେ ମହାରାଜ କଲେ ଜୁର, ଧନ, ବସନ ଅଳଙ୍କାର ॥" *

ଏହି ଅଭିଯାନ ସମୟରେ ଯବନ ସେନାମାନେ ମାର୍ଗମଧ୍ୟରେ ପଡୁଥିବା ଗ୍ରାମ ବିଶେଷତଃ ବ୍ରାହ୍ମଣ ଶାସନଗୁଡ଼ିକୁ ଛାରଖାର କରିବା ସଙ୍ଗେ ସଙ୍ଗେ, ସେଠାକାର ଦେବ-ମନ୍ଦିର ଓ ଦେବବିଗ୍ରହଗୁଡ଼ିକୁ ନଷ୍ଟ ତଥା ବିକଳାଙ୍ଗ କରି ହିନ୍ଦୁଜନତାର ପ୍ରାଣରେ କୁଠାରା-ଘାତ କରୁଥିଲେ । ତେଣୁ ଓଡ଼ିଶାରୁ ସୂର୍ଯ୍ୟବଂଶୀୟ ଗଜପତିଙ୍କ ଶାସନର ଅବସାନ କାଳରୁ ସାଧାରଣ ଜନତା ବାରମ୍ବାର ବୈଦେଶିକ ଆକ୍ରମଣର ଘାତ-ପ୍ରତିଘାତରେ, ନିଜେ ଆତ୍ମରକ୍ଷା କରିବାଲାଗି ଯତ୍ନବାନ୍ ହେଉଥିଲେ । ବେଳେବେଳେ ଯବନମାନଙ୍କର ଅତର୍କିତ ଆକ୍ରମଣ ଫଳରେ ଉଚ୍ଛନ୍ନ ହୋଇ ଘରଦ୍ୱାର, ଧନରତ୍ନ ତ୍ୟାଗକରି, କେବଳ ପ୍ରାଣ ଘେନି ନିକଟସ୍ଥ ଘନ ଜଙ୍ଗଲ ତଥା ଅନ୍ୟ କୌଣସି ଗୋପନୀୟ ସ୍ଥାନକୁ ପଳାୟନ କରି ଆତ୍ମଗୋପନ କରିବାର ଆୟୋଜନ କରୁଥିଲେ । ସେହି ସାଂଘାତିକ ବିପଦ ମୁହୂର୍ତ୍ତରେ ବେଳେବେଳେ ନିଜ ପ୍ରାଣ ଘେନି ପଳାଇବା ବ୍ୟତୀତ, ଅନ୍ୟ କୌଣସି ଚିନ୍ତା ସେମାନଙ୍କ ମନକୁ ସ୍ପର୍ଶ କରୁନଥିଲା; ଏପରି କି ପୁଅ, ଝିଅ, ସ୍ତ୍ରୀ, ପିତାମାତା କାହାରି ପ୍ରତି ପ୍ରାଣରେ ମମତା ଜାତ ହେଉନଥିଲା । କେହି କାହାରି ଖବର ନ ରଖି କେବଳ ନିଜର ସୁରକ୍ଷାପାଇଁ ଯତ୍ନବାନ୍ ହେଉଥିଲେ । ଏପରି ଏକ ଘୋର ଦୁର୍ବିପାକ ସମୟରେ ବେଳେବେଳେ ଅସହାୟ ଅବସ୍ଥାରେ ପଡ଼ି ଗ୍ରାମର କୁଳବଧୂ ଓ ଯୁବତୀ କନ୍ୟାମାନେ ଆକ୍ରମଣକାରୀଙ୍କଦ୍ୱାରା ଲାଞ୍ଛିତା ଓ ଅପମାନିତା ହେଉଥିଲେ । ତା'ପରେ ବିପଦ ସମସ୍ତ ଅତିବାହିତ ହୋଇଯିବା ମାତ୍ରେ ଗ୍ରାମବାସୀମାନେ ଆତ୍ମୀୟସ୍ୱଜନଙ୍କ ଖୋଜଖବର ନେଇ ମନଃସନ୍ତାପରେ କାଳାତିପାତ କରୁଥିଲେ ।

ସେହିପରି ଏକ ଘୋର ଦୁର୍ଦ୍ଦିନରେ ସେନାପତି ଜାହାଙ୍ଗୀର କୁଲି ଖାଁ ବା ଲାଲବେଗ ଶ୍ରୀମନ୍ଦିର ଅଭିମୁଖେ ସୈନ୍ୟସାମନ୍ତଙ୍କ ଗହଣରେ ଯୁଦ୍ଧଯାତ୍ରା କରୁଥିବା ସମୟରେ 'ଦାଣ୍ଡମୁକୁନ୍ଦପୁର' ଶାସନର ଅଧିବାସୀମାନେ ଘରଦ୍ୱାର ଧନସମ୍ପତ୍ତିକୁ ତୁଚ୍ଛ ମନେକରି, କୌଣସି ଏକ ଗୋପନୀୟ ସ୍ଥାନରେ ଆଶ୍ରୟ ଗ୍ରହଣକରିବା କାମନାରେ ପ୍ରାଣ ଘେନି ପଳାଇଗଲେ ।

ଇତିହାସପ୍ରସିଦ୍ଧ ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦ ହରିଚନ୍ଦନ ବା ମୁକୁନ୍ଦ ଦେବ ଗଙ୍ଗାସ୍ନାନ ଅନ୍ତେ ଶ୍ରୀଜଗନ୍ନାଥ ସଡ଼କର ଉଭୟ ପାର୍ଶ୍ୱରେ 'ଦାନମୁକୁନ୍ଦପୁର' ନାମକ ଗୋଟିଏ ବୃହତ୍ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ । ଜନଶ୍ରୁତିରୁ ଜଣାଯାଏ ଯେ—

* ଦାର୍ଢ୍ୟତାଭକ୍ତି ରସାମୃତ, ସପ୍ତବିଂଶ ଅଧ୍ୟାୟ, ପୃ—୧୯୫

ଏଠାରେ ସାତଶହ ବାଉନ ଜଣ ନୈଷ୍ଠିକ ବେଦାଧ୍ୟାୟୀ ବ୍ରାହ୍ମଣଙ୍କୁ 'ମହାଜନ'ରୂପେ ସ୍ୱୀକାର କରି ଦାନ ଦିଆଯାଇଥିଲା । ସେ କାଳର ପ୍ରଚଳିତ ପ୍ରଥା ଅନୁସାରେ ମୁକୁନ୍ଦଦେବ ଶ୍ରୀଗୋପୀନାଥ ବିଗ୍ରହଙ୍କୁ ଶାସନର ପଶ୍ଚିମ ସୀମାରେ ଏକ ମନ୍ଦିର ନିର୍ମାଣକରି ପ୍ରତିଷ୍ଠା କରିଥିଲେ । ମୋଗଲ ସମ୍ରାଟ ଆକବରଙ୍କ ସେନାପତି ରାଜା ମାନସିଂହଙ୍କ ବର୍ଣ୍ଣନ ଅନୁସାରେ 'ଶ୍ରୀଜଗନ୍ନାଥ ସଡ଼କ' ମୋଗଲବନ୍ଦୀ ଓ ଖୁରୁଧା ରାଜ୍ୟ ମଧ୍ୟରେ ସୀମାରେଖାରୂପେ ନିରୂପିତ ହୋଇଥିଲା । ମାନସିଂହ ପିପିଲିଠାରୁ ଅଭିଯାନ ଚଳାଇ ଖୁରୁଧା ରାଜ୍ୟର ଗଜପତିଙ୍କୁ ପରାସ୍ତ କରିବାକୁ ସମର୍ଥ ହୋଇଥିବାରୁ, ସେ ପିପିଲିଠାରେ ଗୋଟିଏ ସ୍ଥାୟୀ ସେନାଗ୍ରଉଣି ସ୍ଥାପନା କରାଇଥିଲେ । କହିବାକୁ ଗଲେ, ଏହା ଓଡ଼ିଶା 'ସୁବା'ର ପ୍ରଧାନ ସେନାନିବାସ ଥିଲା । ପିପିଲି ଓ ଦାନମୁକୁନ୍ଦପୁରର ଦୂରତା ଅତ୍ୟନ୍ତ ଅଳ୍ପ ଥିବାରୁ, ଏଡ଼େ ବଡ଼ ବ୍ରାହ୍ମଣ ଶାସନ ଉପରେ ମୋଗଲ ସେନାମାନଙ୍କର ବାରମ୍ବାର କୁଦୃଷ୍ଟି ପଡ଼ୁଥିଲା । କାରଣ ପିପିଲି ଓ ଦାନମୁକୁନ୍ଦପୁର ଉଭୟ ପ୍ରଧାନ ସଡ଼କର ପାର୍ଶ୍ୱରେ ପଡ଼ୁଥିବାରୁ, ସେନାମାନେ ଅନାୟାସରେ ବ୍ରାହ୍ମଣ ଶାସନ ଉପରେ ଆକ୍ରମଣ କରିବାର ସୁବିଧା ପାଇପାରୁଥିଲେ ।

କାଳକ୍ରମେ ଲୋକମୁଖରେ 'ଦାନମୁକୁନ୍ଦପୁର' 'ଦାଣ୍ଡମୁକୁନ୍ଦପୁର'ରେ ପରିଣତ ହୋଇଥିଲା । ଠିକ୍ ଲାଲବେଗଙ୍କ ଆକ୍ରମଣ ସମୟରେ ଶାସନର କୌଣସି ଗୋଟିଏ ପରିବାରର ସୁନ୍ଦରୀ ବିଧବା ଯୁବତୀ ସ୍ନାନ କରିବାଲାଗି ଜଳଘାଟକୁ ଯାଇଥିଲା । ହଠାତ୍ ଯବନ ସୈନ୍ୟଙ୍କ ଆଗମନ ଫଳରେ ସେ ଅନନ୍ୟୋପାୟ ହୋଇ କେବଳ ଇଷ୍ଟଚିନ୍ତାପୂର୍ବକ ଜଳଘାଟରେ ସ୍ତମ୍ଭୀଭୂତା ହୋଇ ରହିଗଲା । ଯବନ ସେନାନୀ ଜାହାଙ୍ଗୀର କୁଲି ଖାଁର ଲୋଲୁପଦୃଷ୍ଟି ସେହି ଅନନ୍ୟସୁନ୍ଦରୀ ବିଧବା ଯୁବତୀଟି ଉପରେ ପଡ଼ିବାମାତ୍ରେ, ସେ ତାକୁ ବଳପୂର୍ବକ ଅପହରଣ କରି, ଅଶ୍ୱପିଠିରେ ବସାଇ ସ୍ୱଶିବିରକୁ ଘେନିଗଲା । ଦୁର୍ଦ୍ଧର୍ଷ ସେନାପତି ନାରୀର କମନୀୟ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ, ତାକୁ ନାନାପ୍ରକାର ବେଶ-ଭୂଷଣରେ ସୁସଜ୍ଜିତା କରି, ଅନେକ ଅନୁନୟ ବିନୟପୂର୍ବକ ଉପଭୋଗ କରିବା ସଙ୍ଗେ ସଙ୍ଗେ ପତ୍ନୀରୂପେ ନିଜ ଶିବିରରେ ରଖାଇଲା ।

କାଳକ୍ରମେ ସେହି ବ୍ରାହ୍ମଣୀ ଗର୍ଭରୁ ଗୋଟିଏ ପୁତ୍ର ସନ୍ତାନ ଜାତହେଲା । ଯବନ ସେନାପତି ଲାଲବେଗ ନିଜ ପୁତ୍ରର ନାମ 'ସାଲବେଗ' ଦେଇ ତାର ଲାଳନପାଳନ କଲେ । ଏ ସମ୍ବନ୍ଧରେ ଅନ୍ୟ କୌଣସି ପ୍ରାମାଣିକ ପୁସ୍ତକରୁ ଉପାଦାନ ଉପଲବ୍ଧ ହୁଏ ନାହିଁ କିମ୍ବା ଓଡ଼ିଆ କାବ୍ୟକବିତା ଆଦିରୁ କୌଣସି ସୂଚନା ମିଳେନାହିଁ; କେବଳ ଭକ୍ତକବି ରାମଦାସଙ୍କ ଦାର୍ଢ୍ୟତାଭକ୍ତି ରସାମୃତରୁ କେତେକ ସୂଚନା ମିଳେ । ପାଠକମାନଙ୍କ ଜିଜ୍ଞାସାର ପୂରଣ ଲାଗି ରାମଦାସଙ୍କ ରଚନାରୁ କେତେକାଂଶ ଏଠାରେ ଉଦ୍ଧୃତ ହେଲା—

"ଗ୍ରାମମାନଙ୍କେ ଯେ ଉତ୍ତମ, ଦାଣ୍ଡମୁକୁନ୍ଦପୁର ନାମ ।
× × ×
ଛାଡ଼ିଣ ବ୍ରାହ୍ମଣ ଶାସନ, ପଳାଇଗଲେ ସର୍ବଜନ ।
ତହିଁ ଏକ ବିଧବା ନାରୀ, ଯାଇଥିଲା ସେ ସ୍ନାନକରି ।

ଏକାକୀ ଜନ ଜଳଘାଟେ, ସେନ୍ୟ ତା' ଦେଖିଲା ନିକଟେ ।
ଡରେ ସେ ନ ପାରିଲା ଯାଇ, ରହିଲା ସ୍ତମ୍ଭୀଭୂତ ହୋଇ ।
ଏକେ ବ୍ରାହ୍ମଣୀ ଦୁଜେ ଯୁବା, କେ କହିପାରେ ତାର ଶୋଭା ।
ଚମ୍ପକ ପୁଷ୍ପ ପରି କାନ୍ତି, ମୁକୁତାଶ୍ରେଣୀ ଦନ୍ତପନ୍ତି ।
ସୁନାସା ସୁନ୍ଦର କପାଳ, ବଦନ ଚନ୍ଦ୍ରମାମଣ୍ଡଳ ।
ନେତ୍ର କୁରଙ୍ଗ ଶୋଭା ଜିଣି, ଅପୂର୍ବ ଭଙ୍ଗିମା ଗ୍ରହିଣି ।
ଅଞ୍ଜନୁ ବଳି କେଶ ଆଭା, ବାହୁଯୁଗଳ ଦିବ୍ୟ ଶୋଭା ।
ହୃଦୟୁ ଭାଗ ଅତି ଉଚ୍ଚ, ଶ୍ରୀଫଳ ଜିଣି ବେନି କୁଚ ।
କଟିକ୍ଷୀଣ ତା କହି ନୋହେ, ଶୋଭାରେ ଜନମନ ମୋହେ ।
ଏମନ୍ତ ନାରୀ ନଦୀକୂଳେ, ଉଭା ତା' ଜୀବନବଳକଲେ ।
ଏମନ୍ତ ବେଳେ ଲାଲବେଗ, ଆସି ମିଳିଲା ତାର ଆଗ ।
ଏକେ ସେ ଦୁଷ୍ଟ ବଳବନ୍ତ, ତା ସଙ୍ଗେ ବଳ ହିଁ ବହୁତ ।
ଦେଖିଣ ଅତ୍ୟନ୍ତ ସୁନ୍ଦରୀ, ମଦନଶରେ ହେଲା ଘାରି ।
ବଳେ ଧରିଲା ତାର ଭୁଜ, ମୃଗୀକୁ ଯେହ୍ନେ ମୃଗରାଜ ।
ବସାଇ ଅଶ୍ୱର ଉପରେ, ସେ ନାରୀ ଦଇବ ସ୍ମରେ ।
ଘେନିଣ ଚଳିଗଲା ବେଗେ, ସମସ୍ତ ସୈନ୍ୟଙ୍କର ଆଗେ ।
କେ ତାକୁ ଚହ୍ନି ନପାରିଲେ, ସମସ୍ତ ସୈନ୍ୟ ଲେଉଟିଲେ ।
ତା' ପୁର ଦେଖି ସେ ଯୁବତୀ, ଅତି ସନ୍ତାପେ ମଥା ପୋଡି ।
ନୟନୁ ଅଶ୍ରୁ ଧାରି ଗଲେ, କାନ୍ଦି ଗଡ଼ଇ ମହୀତଳେ ।
ତା' ନିଜ କୁଟୁମ୍ବ ସୁମରି, ବୋଲଇ ଦେବି ପ୍ରାଣ ହାରି ।
ତାହା ଦେଖିଣ ସେ ପଠାଣ, ଧରି ସେ ନାରୀର ଚରଣ ।
ଅନେକ ବିନୟେ କହିଲା, କୋଳେ ବସାଇ ଚୁମ୍ବଦେଲା ।
ଅନେକ ଅଲଙ୍କାରମାନ, ତା ଅଙ୍ଗେ କଲାକ ମଣ୍ଡନ ।
ଝୀନ ବସନ ପିନ୍ଧାଇଲା, ନାନା କୁସୁମେ ବେଣୀ କଲା ।
ସର୍ବାଙ୍ଗେ ଗନ୍ଧସାର ବୋଳି, ତା ସଙ୍ଗେ କଲା କାମକେଳି ।
ନାନା ବିନୋଦେ ମନ ମୋହି, କୁଟୁମ୍ବ ଦେଲା ପାସୋରାଇ ।
ଦଇବେ ଅବଳା ଶରୀର, ସଙ୍ଗ ହିଁ ସିନା ମୂଳ ତାର ।
ତା'ଠାରୁ ରତିସୁଖ ପାଇ, ରହିଲା ପତ୍ନୀପ୍ରାୟ ହୋଇ ।
ଏମନ୍ତେ କେତେ ଦିନ ଗଲା, ସେ ନାରୀ ପୁତ୍ର ପ୍ରସବିଲା ।"*

* ଦାରୁଢ଼ୀ୍ୟତାଭକ୍ତି ରସାମୃତ—ସପ୍ତବିଂଶ ଅଧ୍ୟାୟ ।

ଭକ୍ତକବି ରାମଦାସଙ୍କ ଆଲୋଚନା ଓ ଐତିହାସିକ ପ୍ରମାଣରୁ ଏତିକି ଜଣାଯାଏ ଯେ, ଲାଲ୍‌ବେଗ୍ ବଙ୍ଗଳାର ସୁବେଦାର ଥିବା ସମୟରେ ପୁରୀ ଓ ଖୋର୍ଦ୍ଧା ଉପରେ ଆକ୍ରମଣ କରିଥିଲେ ଏବଂ ସେହି ସମୟରେ ଦାଣ୍ଡମୁକୁନ୍ଦପୁରର ବିଧବା ବ୍ରାହ୍ମଣୀକୁ ବଳପୂର୍ବକ ଅପହରଣ କରି କଟ୍ଟକଦଳ କଟକଠାରେ ଅବସ୍ଥାନ କରିଥିଲେ । ସେ ଯେଉଁଠାରେ ରହୁଥିଲେ, ପରବର୍ତ୍ତୀ ଓଡ଼ିଆ ସୁବେଦାର ସେହିଠାରେ ମୋଗଲ ଶାସନକର୍ତ୍ତାଙ୍କ ନିମିତ୍ତ ଯେଉଁ ଅଟ୍ଟାଳିକା ନିର୍ମାଣ କରିଥିଲେ, ତାକୁ 'ଲାଲବେଗ କୋଠି' ନାମରେ ନାମିତ କରିଥିଲେ । ଆଲୋଚନାରୁ ଜଣାଯାଏ ଯେ, ଲାଲ୍‌ବେଗ୍‌ଙ୍କର ମୃତ୍ୟୁ ଖ୍ରୀ: ଅ: ୧୬୦୮ରେ ହୋଇଥିଲେ ସୁଦ୍ଧା ଖ୍ରୀଃ ଅଃ ୧୬୩୩ ବେଳକୁ କଟକର 'ଲାଲ୍‌ବାଗ୍ କୋଠି' ନିର୍ମିତ ହୋଇଥିଲା ଏବଂ ସେହି ଅଞ୍ଚଳକୁ 'ଲାଲ୍‌ବାଗ୍' ନାମରେ ନାମିତ କରାଯାଇଥିଲା । ତେଣୁ ଓଡ଼ିଶା ଓ ଜାହାଙ୍ଗୀର କୁଲୀ ଖାଁ ବା ଲାଲ୍‌ବେଗ୍‌ଙ୍କ ସମ୍ପର୍କ ମାତ୍ର ଗୋଟିଏ ବର୍ଷ ମଧ୍ୟରେ ସୀମିତ ଥିଲା । ଆଜି ମଧ୍ୟ ଓଡ଼ିଶାର ବୃହତ୍ତମ ସହର କଟକର କେନ୍ଦ୍ର ସ୍ଥଳରେ ଲାଲ୍‌ବେଗ୍‌ଙ୍କ ଅତ୍ୟାଚାରର କାହାଣୀକୁ 'ଲାଲ୍‌ବାଗ୍' ବହନକରି ପ୍ରତ୍ୟେକ ଓଡ଼ିଆର ସ୍ମୃତିକୁ ଜାଗରୂକ କରିରଖିଛି ।



# ସାଲବେଗଙ୍କ ଜୀବନୀ

ଓଡ଼ିଶାରେ ପ୍ରଚଳିତ ଭକ୍ତକବି ସାଲବେଗଙ୍କ ପଦ୍ୟାବଳୀ ପାଠ କଲେ, କେହି କେବେହେଲେ ଭ୍ରମ୍ରେ ସୁଦ୍ଧା ଧାରଣା କରି ପାରିବ ନାହିଁ ଯେ, ସାଲବେଗ ଜାତିରେ ଇସ୍ଲାମ ଧର୍ମାବଲମ୍ବୀ ଏବଂ ତାଙ୍କ ପିତା ଜଣେ ଦୁର୍ଦ୍ଧର୍ଷ ଲୁଣ୍ଠନକାରୀ ଓ ନିଷ୍ଠୁର ଧର୍ମାନ୍ଧ ବ୍ୟକ୍ତି ଥିଲେ; କିନ୍ତୁ କବି ସାଲବେଗ ତାଙ୍କର କେତୋଟି ପଦ୍ୟରେ ନିଜର ପରିଚୟ ଦେଇ ଲେଖିଛନ୍ତି—

"କହେ ସାଲବେଗ ହୀନ ଜାତିରେ ମୁଁ ଯବନ ।

× × ×

ବାପ ମୋ ମୋଗଲ ପୁଅ ମାଆ ମୋ ବ୍ରାହ୍ମଣୀ,
ଏ କୁଳେ ଜନ୍ମିଲି ହିନ୍ଦୁ ନ ଖାଏ ମୋ' ପାଣି ।
ମାତା ତେଜ୍ୟା ପିତା ତେଜ୍ୟା, ଆବର ତେଜ୍ୟା ଭାଇ ।
ସକଳ କୁଟୁମ୍ବ ତେଜ୍ୟା କରି ଗୋବିନ୍ଦରେ ଧାଇଁ ।
ପିତା ମୋ ମୋଗଲ ବେଣ୍ଟା ମାତା ମୋ ବ୍ରାହ୍ମଣୀ ।
ହୀନକୁଳେ ଜାତ ମୁହିଁ ହିନ୍ଦୁ ନ ଛୁଏଁ ପାଣି ।"

× × ×

କହେ ସାଲବେଗ ହୀନ ମୂଢ଼ ମୁଁ ଅଜାତି ।

× × ×

କହେ ସାଲବେଗ ଜାତିରେ ପଠାଣ ହସ୍ତିଆ ନାଗରବର ।

× × ×

ପିତା ଦେଲେ ଜୀବଦାନ ମାତା ଦେଲେ କ୍ଷୀର
କହେ ସାଲବେଗ ହୀନ ଜାତିରେ ଫକୀର ।"

× × ×

କିନ୍ତୁ କବି ସାଲବେଗ କୌଣସି ପଦ୍ୟରେ ନିଜ ପିତାଙ୍କ ନାମ କିମ୍ବା ମାତାଙ୍କ ନାମର ସୂଚନା ଦେଇନାହାନ୍ତି; କେବଳ ପିତାଙ୍କ ଜାତି ଓ ମାତାଙ୍କ ଜାତିର ସୂଚନା ଦେଇଛନ୍ତି । ଭକ୍ତକବି ରାମଦାସଙ୍କ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ପ୍ରଦତ୍ତ ସାଲବେଗ-ଚରିତ ବ୍ୟତୀତ ଅନ୍ୟ କୌଣସି ସୂତ୍ରରୁ ସାଲବେଗଙ୍କର ପରିଚୟ ମିଳେ ନାହିଁ । ତେଣୁ

ଲାଲ୍‌ବେଗ୍‌ଙ୍କ ସମ୍ବନ୍ଧରେ ଥିବା ଐତିହାସିକ ବିବରଣୀ ଓ ରାମଦାସଙ୍କ ପ୍ରବନ୍ଧ 'ସାଲବେଗ-ଚରିତ' ଅବଲମ୍ବନରେ ଭକ୍ତକବି ସାଲବେଗଙ୍କ ଜୀବନୀ ସମ୍ପର୍କରେ କେତେକ ଆଲୋଚନା ଏଠାରେ ପ୍ରଦତ୍ତ ହେଲା ।

ଭକ୍ତକବି ସାଲବେଗଙ୍କ ପ୍ରତ୍ୟେକ କବିତାରେ ତାଙ୍କର ସଂକ୍ଷିପ୍ତ ପରିଚୟ ଦେଇଥିଲେ ହେଁ, କୌଣସିଠାରେ ସେ ନିଜର ଜନ୍ମ ସମ୍ବତ୍ସର ଓ ସ୍ଥାନର ସୂଚନା ଦେଇନାହାନ୍ତି । ଜାହାଙ୍ଗୀର କୁଲୀ ଖାଁ ଓରଫ୍ ଲାଲବେଗଙ୍କ ଆଲୋଚନା ପ୍ରସଙ୍ଗରେ ମିର୍ଜା ନାଥନ୍ ସାଲ-ବେଗଙ୍କ ପିତାଙ୍କ ସମ୍ପର୍କରେ ଯେଉଁ କେତୋଟି ଧାଡ଼ି ଲେଖିଛନ୍ତି, ସେଥିରୁ ଜଣାଯାଏ ଯେ ଖ୍ରୀ: ଅ: ୧୬୦୭ ରୁ ୧୬୦୮ ଅର୍ଥାତ୍ ଗୋଟିଏ ମାତ୍ର ବର୍ଷ ଲାଲ ବେଗ୍ ବା ଲାଲବେଗ୍ ବଙ୍ଗର ସୁବାଦାର ଥିଲେ । ସେହି ସମୟରେ ନିଜର ପୃଷ୍ଠପୋଷକ ଦିଲ୍ଲୀ ବାଦଶାହ ଜାହାଙ୍ଗୀରଙ୍କୁ ସନ୍ତୁଷ୍ଟ କରାଇବା ଢଙ୍ଗେ ସଙ୍ଗେ ନିଜର ହିନ୍ଦୁ-ବିଦ୍ୱେଷ ନୀତିକୁ ଚରିତାର୍ଥ କରିବା ଉଦ୍ଦେଶ୍ୟରେ ଦେବଭୂମି ଓଡ଼ିଶାରେ ବର୍ବରୋଚିତ ଆକ୍ରମଣ ଚଳାଇଥିବା ଅସମ୍ଭବ ମନେହୁଏ ନାହିଁ ।

ସେହି ସମୟରେ ପୁରୀଜିଲ୍ଲାର ଦାଣ୍ଡମୁକୁନ୍ଦପୁର ଶାସନରୁ ଗୋଟିଏ ତନ୍ୱୀ ବିଧବା ବ୍ରାହ୍ମଣୀକୁ ଅପହରଣ କରିନେଇ ନିଜର କାମଲାଳସା ପରିତୃପ୍ତ କରିଥିଲେ । ଯବନ ସେନାପତି ଜାହାଙ୍ଗୀର କୁଲୀ ଖାଁ କଟ୍ଟକନ କଟକଠାରେ ଅବସ୍ଥାନ କରିଥିଲେ । ତାଙ୍କର ନାମାନୁସାରେ ପରବର୍ତ୍ତୀକାଳରେ ସେ ସ୍ଥାନଟି 'ଲାଲବାଗ' ଓ ସେଠାକାର ମୋଗଲ ଶାସନ ଦପ୍ତରଟିକୁ 'ଲାଲବାଗ୍ କୋଠି' ନାମରେ ନାମିତ କରାଯାଇଥିଲା ।

ସୁନ୍ଦରୀ ବ୍ରାହ୍ମଣ ଘରର ବାଲବିଧବା କନ୍ୟାର ନବଯୌବନ ତଥା କମନୀୟ ରୂପ-ମାଧୁରୀରେ ପ୍ରଲୁବ୍ଧ ହୋଇ ଯବନ ସେନାପତି ବଳପୂର୍ବକ ହେଉ କିମ୍ବା ଅନୁନୟ ବିନୟ-ପୂର୍ବକ ହେଉ, ତାକୁ ପତ୍ନୀରୂପେ ଉପଭୋଗ କରୁଥିଲେ । କଟକରେ ଲାଲବେଗ୍‌ଙ୍କ ଅବସ୍ଥାନ କାଳରେ ସେହି ବ୍ରାହ୍ମଣୀ ଗର୍ଭରୁ ଗୋଟିଏ ସୁନ୍ଦର ବାଳକ ଜାତ ହୋଇଥିଲା । ଲାଲବେଗ୍ ପିଲାଟିର ନାମ ଦେଇଥିଲେ ସାଲବେଗ ।

ଭକ୍ତକବି ରାମଦାସ ପ୍ରାୟ ଶହେ ବର୍ଷ ପରେ ଏହି କିମ୍ବଦନ୍ତୀ ଲୋକମୁଖରୁ ଶ୍ରବଣ କରି ଲେଖିଛନ୍ତି—

"ଏମନ୍ତ କେତେ ଦିନ ଗଲା । ସେ ନାରୀ ପୁତ୍ର ପ୍ରସବିଲା ॥
ପୁତ୍ରକୁ ଦେଖି ଲାଲବେଗ । ତା ନାମ ଦେଲେ ସାଲବେଗ ॥
ମାତାପିତାଙ୍କ ସ୍ନେହ ପାଇ । କ୍ଷୀର ପାନରେ ପୁଷ୍ଟ ହୋଇ ॥
ଦିନକୁ ଦିନ ବର୍ଦ୍ଧମାନ । ହୋଇଲା ସେ ନବ ନନ୍ଦନ ॥
ପାଳିଲେ ବିଧିମତ କରି । ଅନେକ ଅଳଙ୍କାର ଭରି ॥"

ଦାଣ୍ଡମୁକୁନ୍ଦପୁରର ବିଧବା ବ୍ରାହ୍ମଣୀ ସହିତ ସମ୍ଭୋଗ ପରେ ସାଲବେଗ୍‌ଙ୍କ ଜନ୍ମ ମଧ୍ୟରେ ଏକବର୍ଷ ଅତିବାହିତ ହେବା ମଧ୍ୟରେ ଲାଲ୍‌ବେଗ୍‌ଙ୍କ ମୃତ୍ୟୁ ଅପ୍ରେଲ୍ ୨୭ ତାରିଖ ୧୬୦୮ରେ ହୋଇଥିବାର ଐତିହାସିକ ପ୍ରମାଣ ରହିଛି । ହୁଏତ ଏଠାରେ ଆଉ ଗୋଟିଏ

ପ୍ରକାର ଅନୁମାନ କରାଯାଇପାରେ । ବାଦ୍‌ଶାହ ଜାହାଙ୍ଗୀର ଦିଲ୍ଲୀ ସିଂହାସନରେ ଆରୋହଣ କରିବା ମାତ୍ରେ ଜାହାଙ୍ଗୀର କୁଲୀ ଖାଁ ବିହାରରେ ସୁବାଦାର୍ ପଦରେ ନିଯୁକ୍ତ ହୋଇଥିଲେ । ହୁଏତ ସେହି ସମୟରେ ଅର୍ଥାତ୍ ଖ୍ରୀଃ ଅ: ୧୬୦୫-୧୬୦୭ରେ ଲାଲବେଗ୍ ବିହାରରେ ସୁବାଦାରରୂପେ ବାଦ୍‌ଶାହଙ୍କ ଦ୍ୱାରା ମନୋନୀତ ହୋଇଥିବେ ଏବଂ ଜଣେ ବିଶ୍ୱସ୍ତ କର୍ମଚାରୀ-ରୂପେ ତାଙ୍କ ଉପରେ ଓଡ଼ିଶାର ଦେବମନ୍ଦିର ଲୁଣ୍ଠନ ଓ ବିଶେଷତଃ ଶ୍ରୀଜଗନ୍ନାଥ ମନ୍ଦିରର ଧ୍ୱଂସସାଧନର ଭାର ନ୍ୟସ୍ତକରାଯାଇଥିବ । ଖ୍ରୀଃ ଅଃ ୧୬୦୯ରୁ ଆରମ୍ଭକରି ଲାଲବେଗ୍ ମାତ୍ର ତିନୋଟି ବର୍ଷ ବଞ୍ଚିଥିଲେ; କିନ୍ତୁ ଭକ୍ତ ରାମଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ସାଲବେଗ୍ ଯୁବକ ବୟସରେ ଦିନେ ପିତାଙ୍କ ସଙ୍ଗରେ ଯୁଦ୍ଧକୁ ଯାଇ ଆହତ ହୋଇ ଫେରିଲେ ଏବଂ ଯେତେ ପ୍ରକାର ଔଷଧ ଉପଚାର କରାଗଲେ ମଧ୍ୟ ସେ ଭଲ ହେଲେନାହିଁ । ତା'ପରେ ସେ ନିଜ ଜୀବନ ପ୍ରତି ଆସ୍ଥା ହରାଇ, ମାତାଙ୍କ ଆଗରେ କରୁଣ ସ୍ୱରରେ ରୋଦନକରି ନିଜର ଦୁଃଖ ଜଣାଇଲେ । ଅଭାଗିନୀ ମାତା ପୁତ୍ରର ଦୁଃଖରେ ଅଧୀରା ହୋଇ ତାକୁ ସାନ୍ତ୍ୱନାଦେବା ସଙ୍ଗେ ସଙ୍ଗେ ନିଜ ଜୀବନର ଅତୀତ କାହାଣୀ କହିବସିଲେ ।

"ଏମନ୍ତେ କେତେ କାଳ ଗଲା । ଯୁବା ଅବସ୍ଥା ଆସି ହେଲା ।।
ଶିଖିଲା କ୍ଷତ୍ରି ବୃତ୍ତି ଯେତେ । ଅଶ୍ୱାରୋହ ଚଢ଼ିବା ସହିତେ ।।
କାଣ୍ଡ ଖଣ୍ଡାରେ ବିଚକ୍ଷଣ । ଆଡ଼ ଉହାଡ଼ରେ ମାରଣ ।।
ଏମନ୍ତେ ନାନାବିଦ୍ୟାମାନ । ଶିଖି ସେ କରଇ ଗୁମାନ ।।
ଏମନ୍ତେ କେତେ କାଳ ଗଲା । ତା ପିତା ଯୁଦ୍ଧେ ବାହାରିଲା ।।
ପିତାକୁ ଘେନି ସାଲବେଗ । ସୈନ୍ୟ ସଙ୍ଗତେ ଗମେ ବେଗ ।।

× × ×

ଯୁଦ୍ଧରେ ଶସ୍ତ୍ରାଘାତ ପାଇ । ଟଳିପଡ଼ିଲା ରଣଭୂଇଁ ।।
ସପତଖଣ୍ଡ ଘାତ ହେଲା । ରୁଧିର ଧାର ବହିଗଲା ।।
ପଡ଼ିଲା ମୂର୍ଚ୍ଛାଗତ ହୋଇ । ଦେଖି ସଙ୍ଗର ଲୋକେ ଧାଇଁ ।।
ସାଲବେଗକୁ ବହିନେଲେ । ତା ନିଜ ପୁରେ ପ୍ରବେଶିଲେ ।।
ଦେଖି ତାହାର ଗର୍ଭଧାରୀ । ଶୁଣ ବାହୁନି ଶୋକକରି ।।

× × ×

କେବେ ହେଁ କୁଶଳ ନୋହିଲା । ଏମନ୍ତେ କେତେ ଦିନ ଗଲା ।।
ଅତି ଆରତେ ସାଲବେଗ । କହିଲା ଜନନୀର ଆଗ ।।
ହେ ମାତ ଶୁଣ ମୋ ବଚନ । ଏଥର ଗଲାଟି ଜୀବନ ।।
ମୋତେ ତୁ ପଚାରିଲୁ ଯାହା । ଶୁଣ କହିବା ତୋତେ ତାହା ।।
ପଠାଣ ଅଟେ ତୋର ତାତ । ମୁହିଁ ବ୍ରାହ୍ମଣୀ ତୋର ମାତ ।।"

ମା'ଆଠାରୁ ନିଜ ଜୀବନ ବୃତ୍ତାନ୍ତ ଶୁଣିବା ପରେ ସାଲବେଗ ମନେ ମନେ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ବଞ୍ଚିବାର ଉପାୟ ସମ୍ବନ୍ଧରେ ମାତାଙ୍କ ଉପଦେଶକୁ ଅପେକ୍ଷା କରି ରହିଲେ ।

ପ୍ରାୟ ଏକଶତ ବର୍ଷର ପରବର୍ତ୍ତୀ କବି ସାଲବେଗଚରିତଟିକୁ ମନୋରମ କରିବା ଉଦ୍ଦେଶ୍ୟରେ ପିତାଙ୍କ ସହିତ ସାଲବେଗର ଯୁଦ୍ଧକୁ ଯିବା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ପ୍ରସଙ୍ଗରେ ତା'ର ମାତା ମୁଖରେ କହିଛନ୍ତି —

"ମୋ କଥା ଶୁଣ ଧୀରେ ବାବୁ । ଏ ଯେ ତୋହର ନିଜ ବାପୁ ॥
ତୋତେ ପାସୋରି ଦେଲା ଚାଲେ । ତା ନିଜ ସୁତ ଦାବି ମେଲେ ॥
ରହିଲି ଅଚିନ୍ତା ହୋଇଣ । ମୁଁ ଯିନା ହେଲି ଅକାରଣ ॥
ମୋ ଯୁବା ବୟସ ସରିଲା । ତେଣୁ ସେ ମୋତେ ପାଶୋରିଲା ॥
ତୁ ହ୍ୟାଦେ ଦାସୀପୁତ୍ର ଯିନା । ତାକୁ କି ଲାଗେ ତୋ ବେଦନା ॥"

କବି ରାମଦାସଙ୍କର ଏହି ଉକ୍ତିରୁ ଜଣାଯାଏ ଯେ ଲାଲବେଗ, ସାଲବେଗ ଓ ତା'ର ମାତାଙ୍କୁ ଛାଡ଼ି ଅନ୍ୟତ୍ର ଚାଲିଯାଇଥିଲା ଏବଂ ଦୀର୍ଘଦିନ ଧରି ସେମାନଙ୍କ ସମ୍ପର୍କରେ କୌଣସି ଖବର ନେଇନଥିଲା ।

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କଟକଠାରେ ଲାଲବେଗ୍ ଗୋଟିଏ ବର୍ଷ ଅବସ୍ଥାନ ପରେ, ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର 'ସୁବା'ରେ ପରିଣତ ହେବାମାତ୍ରେ ସେ ବଙ୍ଗଦେଶକୁ ଚାଲିଯାଇଥିଲେ । ବୋଧହୁଏ ସେତିକିବେଳେ ସେ ଓଡ଼ିଶାର ସୁବାଦାରଙ୍କୁ ସାଲବେଗ୍ ଓ ତାର ମାତାର ରକ୍ଷଣାବେକ୍ଷଣ ଲାଗି ଅନୁରୋଧ କରିଥିବେ ଏବଂ ମୋଗଲ ସୁବାଦାର ତାଙ୍କ ପୂର୍ବବର୍ତ୍ତୀ ସୁବାଦାର ତଥା ଜାହାଙ୍ଗୀର ବାଦ୍‌ଶାହଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ଲାଲବେଗ୍‌ଙ୍କ ଅନୁରୋଧ ମତେ ରାଜକୀୟ ସଂରକ୍ଷଣରେ ସେ ଦୁହିଁଙ୍କୁ ରଖାଇଥିବେ । ଧୀରେ ଧୀରେ ସାଲବେଗ୍‌ଙ୍କର ବୟସ ବୃଦ୍ଧି ହେବାମାତ୍ରେ, ସେ ଓଡ଼ିଶା ସୁବାଦାରଙ୍କ ସିଫାରିସ୍ କ୍ରମେ ସେନାବାହିନୀରେ ପ୍ରବେଶକରି କୃତିତ୍ୱ ଅର୍ଜନ କରିଥିବେ । ତା'ପରେ ହଠାତ୍ ଦିନେ ଭୀଷଣ ଭାବରେ ଆଘାତ ପ୍ରାପ୍ତହୋଇ ମାତାଙ୍କଠାରୁ ନିଜ ସମ୍ବନ୍ଧରେ ସମସ୍ତ ଇତିହାସ ଶ୍ରବଣ କରିବା ପରେ, ଅତ୍ୟନ୍ତ ଆତ୍ମଗ୍ଲାନିର ସହିତ ସ୍ୱଜୀବନ ପ୍ରତି ଆସ୍ଥା ହରାଇ ବସିଥିବେ । ତାହା ଦେଖି ଗର୍ଭଧାରିଣୀ ମାତା ନିଜର ପୂର୍ବସଂସ୍କାରବଶତଃ ଅନ୍ଧର ଲଉଡ଼ି' ଏକମାତ୍ର ସୁଯୋଗ୍ୟ ପୁତ୍ରର ଜୀବନରକ୍ଷା ଲାଗି, ହିନ୍ଦୁ ସଂସ୍କାର ଅନୁସାରେ ଦେବତା ଆରାଧନାରେ କାଳ ଅତିବାହିତ କରିବା ଲାଗି ତାକୁ ପରାମର୍ଶ ଦେଇଥିବେ । ତଥାପି ମୋଗଲବୀର୍ଯ୍ୟରୁ ଜାତ ହୋଇଥିବା ପୁତ୍ର ସାଲବେଗ କାଳେ ହିନ୍ଦୁ ସଂସ୍କୃତି ଅନୁସାରେ ଦେବାର୍ଚ୍ଚନରେ ମନଦେବାକୁ ଇଚ୍ଛୁକ ନ ହେବ, ସେଥିଲାଗି ବ୍ରାହ୍ମଣୀ ମାତା ପୁତ୍ରକୁ ଶପଥ କରାଇନେବା ପରେ ଶ୍ରୀବୃନ୍ଦାବନଚନ୍ଦ୍ରଙ୍କ ପାଦରେ ଭକ୍ତିର ସହିତ ନିବେଦନ ଜଣାଇବା ଲାଗି ଉପଦେଶ ଦେଇଥିବେ ।

"ତୁ ଅଛୁ ମୋର ଜୀବଧନ । ତୋ ବିନା ମୋର ସର୍ବଶୂନ୍ୟ ॥
ତୁହି ମୋ ଅନ୍ଧର ଲଉଡ଼ି । ତୁ ସିନା ମୋ ଧନ କଉଡ଼ି ॥
ତୁହି ମୋ କଣ୍ଠ ରତ୍ନମାଳା । ତୁହି ମୋ ନୟନପିତୁଳା ॥
ସ୍ୱରୂପ କହ ସ୍ଥିରେ ବାବୁ । ସତେ କି ମୋ ବୋଲ କରିବୁ !
ସତ୍ୟ ତୁ କର ମୋର ଆଗ । ତା' ଶୁଣି ବୋଲେ ସାଲବେଗ ॥
ହେ ମାତ ଲକ୍ଷେବାର ସତ୍ୟ । ତୋ ବୋଲ କରିବି ନିଶ୍ଚିତ ॥"

ମାତା ଏପରିଭାବରେ ପୁତ୍ରକୁ ସତ୍ୟ କରାଇ, ଶ୍ରୀବୃନ୍ଦାବନଚନ୍ଦ୍ରଙ୍କ ପାଦପଦ୍ମରେ ନିବେଦନ କରିବା ଲାଗି ଉପଦେଶ ଦେଇଥିଲେ; କିନ୍ତୁ ଯବନ ସଂସ୍କାରରେ ପାଳିତ ସାଲବେଗ ଶ୍ରୀକୃଷ୍ଣଙ୍କ ରୂପ, ଗୁଣ ଓ ବାସସ୍ଥାନ ସମ୍ବନ୍ଧରେ ଜିଜ୍ଞାସା ପ୍ରକଟ କରିଥିଲେ । ତାହା ଶୁଣି ବିଧବା ବ୍ରାହ୍ମଣୀ ନିଜ ଶାସନର ଗୋପୀନାଥଜିଉଙ୍କ ସମ୍ପର୍କରେ ନିଜର ଶୁଣା-କଥାଗୁଡ଼ିକୁ ବଖାଣି କହିଛନ୍ତି—

"ମୁଁ ତାଙ୍କୁ ଭଜିବି କେମନ୍ତେ । ବୁଝାଇ କହ ମାତ ମୋତେ ॥
ଶୁଣି ଜନନୀ ମନେ ହସି । ବୋଇଲା ଶୁଣ ବାଲଶିଷି ॥
ନନ୍ଦ ରାଜା ଯେ ତାଙ୍କ ତାତ । ଯଶୋଦା ଦେବୀ ତାଙ୍କ ମାତ ॥
ଗୋପନଗରେ ତାଙ୍କ ଘର । ଅଶେଷ ପରଜା ତାଙ୍କର ॥
ରାଧିକା ନାମେ ତାଙ୍କ ନାରୀ । ସେ ଦୁହେଁ କିଶୋର କିଶୋରୀ ॥
ସେ ଗୋପ ବୃନ୍ଦାବନେ ଭୂପ । କହିବି ଶୁଣ ତାଙ୍କ ରୂପ ॥"

ଜନନୀ ଏତିକି କହି ଶ୍ରୀବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣଙ୍କ ନବୀନ ଶ୍ୟାମଘନ ମୂର୍ତ୍ତି, ଦଳିତାଞ୍ଜନ କାନ୍ତି, ମର୍କତକେଶ ଛବି, ଶିରେ ଶ୍ରୀଖଣ୍ଡଚୂଳ ପ୍ରଭୃତି ସମ୍ପର୍କରେ ଏକ ଦୀର୍ଘ ବର୍ଣ୍ଣନା କଲେ; କିନ୍ତୁ ଯବନ ସାଲବେଗଙ୍କ ମନରୁ ତଥାପି ଭ୍ରାନ୍ତି ଦୂରହେଲା ନାହିଁ । ସେ ଭଜନର ମାର୍ଗ ସମ୍ବନ୍ଧରେ ପୁଣି ମାତାଙ୍କୁ ପ୍ରଶ୍ନ କଲେ । ପୁତ୍ରର ଜିଜ୍ଞାସା ଶୁଣି ମାତା ତାଙ୍କୁ ବିଶ୍ୱାସର ସହିତ ଭଜନ କରିବା ଲାଗି ଉପଦେଶ ଦେଲେ ଏବଂ ବିଶ୍ୱାସର ସହିତ ଭଜନଚିନ୍ତନ କଲେ, 'ଦ୍ୱାଦଶ ଦିନେ ଭଲ ହେବୁ' ବୋଲି ଆଶ୍ୱାସନା ବାଣୀ ଶୁଣାଇଥିଲେ । ପୁତ୍ର ସାଲବେଗ ତାହା ଶୁଣି ଏକାଗ୍ରତାର ସହିତ ଶ୍ରୀକୃଷ୍ଣଙ୍କ ରୂପଗୁଣରେ ନିମଜ୍ଜିତ ହୋଇ ଦ୍ୱାଦଶ ଦିନ ପର୍ଯ୍ୟନ୍ତ ସ୍ତୁତି କରିବାକୁ ଲାଗିଲେ; କିନ୍ତୁ ଦେହରେ ତାଙ୍କର ବେଦନା ଉପଶମ ହେବା ପରିବର୍ତ୍ତେ ଅଧିକ ବୃଦ୍ଧି ପାଇଲା । ତେଣୁ ସେ ବ୍ୟସ୍ତ ହୋଇ ପୁଣି ମାତାଙ୍କୁ ପ୍ରଶ୍ନ କରି, କହିଲେ—

"ତୁ ଯାହା ବୋଇଲୁ ଗୋ ମାତ । ଭଲ ନୋହିଲା ମୋର ଗାତ ॥
କଣ୍ଟ ତ ଆସି ପୂର୍ଣ୍ଣହେଲା । ଅଧିକ ବେଦନା ବଢ଼ିଲା ॥
ନିଶ୍ଚୟ ହେବ ମୋ ମରଣ । ରହଇ ନାହିଁ ମୋର ପ୍ରାଣ ॥"

ପୁତ୍ରର କରୁଣ ନିବେଦନରେ ମାତାର ବିଶ୍ୱାସ ଟଳେହେଲେ ଚଞ୍ଚଳ ହେଲନାହିଁ । ଈଶ୍ୱର ପ୍ରତ୍ୟେକ ଭକ୍ତର ମନ ଓ ଭକ୍ତିର ପରୀକ୍ଷା କଠୋରଭାବରେ କରନ୍ତି ବୋଲି କହି, ନିଜେ ମଧ୍ୟ ତନ୍ମୟତାର ସହିତ ପ୍ରଭୁଙ୍କ ପାଦରେ ମନ ଦେଇ ସ୍ତୁତି ଆରମ୍ଭ କଲେ—

"ଚିତ୍ତ ନିବେଶି ପଦ୍ମପାଦେ । ବୋଲନ୍ତି ମନର ବିଷାଦେ ।।
ହେ ଆର୍ତ୍ତତ୍ରାଣ ଦୀନବନ୍ଧୁ । ଭକ୍ତବତ୍ସଳ କୃପାସିନ୍ଧୁ ।।
ମୋ ଆର୍ତ୍ତି ଖଣ୍ଡ ଦେବରାଜ । ବିଳମ୍ବେ ଆଉ ନାହିଁ କାର୍ଯ୍ୟ ।।
ନଷ୍ଟେ ମରିବୁ ମାଏ ପୁଏ । ହତ୍ୟା ହୋଇବୁ ତୁମ୍ଭ ପାଏ ।।"

ଭକ୍ତବତ୍ସଳ ଦାମୋଦର ଭକ୍ତର ମନୋବାଞ୍ଛା ପୂରଣ ନିମିତ୍ତ ସ୍ୱପ୍ନରେ ରୁଗ୍ଣ ସାଲବେଗର ଶିରପାଖରେ ବସି ତା'ର ବ୍ରଣରେ ଆରୋଗ୍ୟ ନିମିତ୍ତ ବିଭୂତି ପ୍ରଦାନ କଲେ ।

ରାତ୍ରି ମଧ୍ୟରେ ସାଲବେଗଙ୍କର ଆଉ ନିଦ୍ରାଭଙ୍ଗ ହେଲା ନାହିଁ । ସେ ପ୍ରଭାତରୁ ଉଠି ନିଜ ଦେହକୁ ଚାହିଁଦେଇ ସ୍ୱପ୍ନ-ବୃତ୍ତାନ୍ତ ଚିନ୍ତାକରିବା ମାତ୍ରେ ଆନନ୍ଦର ସୀମା ରହିଲ ନାହିଁ । ଭକ୍ତର ଭଗବାନ ତାଙ୍କର ଆର୍ତ୍ତନାଦ ଶୁଣି, ତାଙ୍କୁ ମୃତ୍ୟୁମୁଖରୁ ଉଦ୍ଧାର କରିଛନ୍ତି ବୋଲି ସେ ମନେମନେ ଚିନ୍ତାକରି, ସେ ଭଗବତ୍‌ପ୍ରେମରେ ଗଦ୍‌ଗଦ ହୋଇପଡ଼ିଲେ ଏବଂ ମାତାଙ୍କୁ ଶେଯରୁ ଉଠାଇ କହିଲେ—

"ମାତାଙ୍କୁ ବୋଇଲା ଲୋ ଶୁଣ । ତୋ କଥା ହୋଇଲା ପ୍ରମାଣ ।।
ଶୁଣି ଜନନୀ ବେଗେ ଉଠି । ପୁତ୍ର ଦେହକୁ ଦେଲା ଦୃଷ୍ଟି ।।
ଦେଖିଲା ଶୁଭ କଥା ସବୁ । ବୋଇଲା ଦେଖିଲୁରେ ବାବୁ ।।
ସେ ହରି ମହିମାସାଗର । ଅସାଧ୍ୟ ଭଞ୍ଜନ ଠାକୁର ।।

ତା'ପରେ ଯବନ ସାଲବେଗଙ୍କ ମନରେ 'ଶ୍ରୀବୃନ୍ଦାବନଚନ୍ଦ୍ର'ଙ୍କ ପ୍ରତି ଗଭୀର ଅନୁରାଗ ଜାତ ହେଲା । ବିଶେଷତଃ ସେ ଶ୍ରୀକୃଷ୍ଣଙ୍କ କରୁଣାରୁ ମୃତ୍ୟୁମୁଖରୁ ନିସ୍ତାର ଲାଭ କରିଥିବାରୁ ନିଜ ଜୀବନକୁ ଆତ୍ମଜ୍ଞାନବଳରେ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ସମର୍ପଣ କରି ବିଷୟଜ୍ଞାନ ପାସୋରିଦେଲେ ଏବଂ ସନ୍ନ୍ୟାସୀ ହୋଇ ଶ୍ରୀବ୍ରଜରାଜ ଶ୍ରୀକୃଷ୍ଣଙ୍କ ଗୁଣକୀର୍ତ୍ତନରେ କାଳାତିପାତ କରିବା ପାଇଁ ମାତା ଆଗରେ ନିବେଦନ ଜଣାଇ କହିଲେ—

"ପୁତ୍ର ବୋଇଲା ସତ୍ୟ ଏହି । ପବିତ୍ର କଲୁ ମୋର ଦେହି ।।
ମୁହିଁ ସନ୍ନ୍ୟାସୀ ହୋଇବଇଁ । ସଂସାର-ସୁଖ ତେଜିବଇଁ ।।
ଏମନ୍ତ କହି ବସ୍ତ୍ର ଚିରି । ଡୋର କୌପୀନ ଆଶ୍ରେକରି ।।
ମାତାଙ୍କୁ ଦଣ୍ଡବତ କଲା । ଶୁଣ ଗୋ ଜନନୀ ବୋଇଲା ।।
ଏମନ୍ତ ପ୍ରଭୁ ଥାଉଁ ଥାଉଁ । ଯେ ଅନ୍ୟେ ଆଶ୍ରେ କରେ ଆଉ ।।
ଧିକ ବୋଲିବା ତା ଜୀବନ । ଏ ଦେହେ କିସ ପ୍ରୟୋଜନ ।।"

ମାତାଙ୍କୁ ଏପରି ଭାବରେ ପ୍ରବୋଧନା ଦେଇ ସାଲବେଗ ସନ୍ନ୍ୟାସ ଜୀବନ ଧାରଣ କରି ସାଧୁସନ୍ଥଙ୍କ ସଙ୍ଗରେ ତତ୍ତ୍ୱଚର୍ଚ୍ଚାରେ କାଳ ଅତିବାହିତ କଲେ । କମ୍ବଦନ୍ତୀରୁ ଜଣାଯାଏ ଯେ, ସାଲବେଗ ମାତାଙ୍କ ଆଶୀର୍ବାଦ ଗ୍ରହଣ କରି କିଛି ଦିନ ନିକଟସ୍ଥ ଗ୍ରାମମାନଙ୍କରେ ଶ୍ରୀକୃଷ୍ଣଙ୍କ ଭଜନକୀର୍ତ୍ତନ ସଂଗ୍ରହ କରି, ପ୍ରେମୋନ୍ମତ୍ତରେ ଗାନ କରି କାଳ ଅତିବାହିତ କଲେ । କିଛିଦିନ ସେହିପରି ଭାବରେ ଅତିବାହିତ ହେବା ପରେ ତାଙ୍କ ମନରେ ଶ୍ରୀକୃଷ୍ଣଙ୍କ ଗୁଣଗାନ କରି ପଦ୍ୟ ରଚନା କରିବାର ପ୍ରବୃତ୍ତି ଜାତହେଲା ଏବଂ ଶ୍ରୀବୃନ୍ଦାବନ-ଧାମ ଯାତ୍ରାକରି ଶ୍ରୀକୃଷ୍ଣଙ୍କ ଲୀଳାକ୍ଷେତ୍ରର ଦର୍ଶନରେ ଆତ୍ମାକୁ ପବିତ୍ର କରିବାର ଭାବନା ବଳବତୀ ହୋଇଉଠିଲା । ଭକ୍ତକବିଙ୍କ ମନରେ ଏ ପ୍ରକାର ଭାବନା ଜାତ ହୋଇଥିବାର ସୂଚନା ତାଙ୍କ ରଚିତ ଗୋଟିଏ ପଦ୍ୟରୁ ମିଳେ ।

"ଜୀବନରେ ଥିବ ଯେବେ ଯିବି ବୃନ୍ଦାବନ ।
ଦର୍ଶନ କରିବି ଯାଇ ଶ୍ରୀମଧୁସୂଦନ ॥
ରାଧାକୁଣ୍ଡେ ଶ୍ୟାମକୁଣ୍ଡେ କରିବି ସ୍ନାହାନ ।
ପରିକ୍ରମା କରୁଥିବି ଗିରିଗୋବର୍ଦ୍ଧନ ॥
ଆନନ୍ଦେ ଯମୁନାଜଳ କରିବି ମୁଁ ପାନ ।
ମୁଁ ନିକି ଭଜିବି ଯହିଁ ମୁକୁନ୍ଦଭଜନ ॥
ବ୍ରହ୍ମାଦିର ଧୂଳି ଅଙ୍ଗେ କରିବି ଲେପନ ।
କୁଞ୍ଜେ କୁଞ୍ଜେ ତରୁମୂଳେ କରିବି ଶୟନ ॥"

କମ୍ବଦନ୍ତୀ ଅନୁସାରେ ଆହୁରି ମଧ୍ୟ ଜଣାଯାଏ ଯେ, କୌଣସି ଏକ ସାଧୁଙ୍କ ଉପଦେଶମତେ ଭକ୍ତ ସାଲବେଗ ଶ୍ରୀକ୍ଷେତ୍ର ଯାଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବାରେ କିଛିଦିନ କାଳାତିପାତ କଲେ ଏବଂ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମଧ୍ୟରେ ଅଭେଦ କଳ୍ପନା କରି ବଡ଼ଦାଣ୍ଡରେ ବସି ପଦ୍ୟ ରଚନାକରି ଗାନକଲେ—

"ଆହେ ନୀଳଗିରି !
ପ୍ରଭୁ ବିଜେ କରିଅଛ ନୀଳଗିରି !
ଶ୍ରୀପୁରୁଷୋତ୍ତମ କ୍ଷେତ୍ରବାସୀ, ଭାଗ୍ୟ ଥିଲେ ସାଧୁସଙ୍ଗେ ମିଶି ।
ସବଜନମାନେ କ୍ଷେତ୍ରରେ ପ୍ରବେଶ ଗତି ମୁକ୍ତି ଯେନ ପରବାସୀ ॥
ବଡ଼ଦାଣ୍ଡେ ହେଲେ ପରବେଶ, ରେଣୁ ଧୂଳିରେ ଟୁଟିଲା ତ୍ରାସ ।
ଦାଣ୍ଡରେ ବସିଛି କୈବଲ୍ୟ ପସରା ଛଟଙ୍କ ଭୋଗଣିରେ ମନ ତୋଷ ॥"

(ଇତ୍ୟାଦି)

× × ×

ଶ୍ରୀପୁରୁଷୋତ୍ତମ ଯିବା ମନ, ସାଙ୍ଗ ହୋଇ ଯିବା ପାଞ୍ଚଜଣ ।
ଚୁନ ହୋଇ ଯିବା କେହି ନ ଜାଣିବେ ବସି ଖାଉଥିବା ମନେ ମନ ॥

ସଲଖ ସୁନ୍ଦର ବଡ଼ଦାଣ୍ଡ, ନବକୋଟି ଲୋକ ତହିଁ ଭୁଣ୍ଡ ।
ଦେଖିବା ମାତ୍ରକେ ପାପ କ୍ଷୟ ଯିବ ପାପାଧି ପାତକ ହେବ ଖଣ୍ଡ ।।"

(ଇତ୍ୟାଦି)

ଭକ୍ତକବି ପୁରୀରେ ପହଞ୍ଚି ସାଧୁସନ୍ଥଙ୍କ ମେଳରେ କାଳ ଅତିବାହିତ କରିବା ସଙ୍ଗେ ସଙ୍ଗେ ନିଜ ମନର କରୁଣ ନିବେଦନ ଜଣାଇ, ପଦ୍ୟ ରଚନା କରି ଗାନକଲେ । ସେହି ପଦ୍ୟ ମାଧ୍ୟମରେ ଭକ୍ତ ସାଲବେଗ ନିଜ ମନର ଆବେଗକୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣରେ ଅର୍ପଣ କରି ଗାଇବାରେ ଲାଗିଲେ—

"ଆହେ ନୀଳାଚଳବାସୀ !
ଶୋକ-ଜଳଧିରେ ଗଲି ଭାସି ।।
ବାରଣ ଭୟକୁ ବାରଣ କର ହେ
ଶରଣପଞ୍ଜରବାସୀ !
ଆରତନାଶନ ଖଳ ବିନାଶନ
ବାରେ ହୁଅ ବନ୍ଦୀ ସେହ୍ନା ।।" (ଇତ୍ୟାଦି)

ଭକ୍ତ ସାଲବେଗ ପୁରୀରେ କେତେ ଦିନ ରହି ମହାପ୍ରଭୁଙ୍କ ଘୋଷଯାତ୍ରା, ସ୍ନାନଯାତ୍ରା, ଚନ୍ଦନଯାତ୍ରା ଆଦି ବାହାର-ଦର୍ଶନ କରିବାର ସୁଯୋଗ ପାଇଥିଲେ । କିନ୍ତୁ ତା'ପରେ ସେ ଶ୍ରୀବୃନ୍ଦାବନଚନ୍ଦ୍ରଙ୍କ ଲୀଳାସ୍ଥଳୀ ବୃନ୍ଦାବନଧାମକୁ ପଦ-ବ୍ରଜରେ ଯାତ୍ରା କରିଥିଲେ । କିମ୍ବଦନ୍ତୀରୁ ଯାହା ଜଣାଯାଏ, ସେଥିରୁ ଅନୁମାନ କରାଯାଏ ଯେ ଭକ୍ତ ସାଲବେଗ ପ୍ରାୟ ଏକବର୍ଷ କାଳ ରହି, ଶ୍ରୀକୃଷ୍ଣଙ୍କର ସମସ୍ତ ଲୀଳା ସମ୍ବନ୍ଧରେ ଅନେକ ଭକ୍ତ-କବିଙ୍କଠାରୁ ଶ୍ରବଣ କରି, ଶ୍ରୀରାଧାକୃଷ୍ଣଙ୍କ ଭକ୍ତିଭାବରେ ଓତଃପ୍ରୋତ ହୋଇଥିଲେ । ତାହାର ଫଳରେ ସେ ଶ୍ରୀକୃଷ୍ଣଲୀଳା ସମ୍ପର୍କୀୟ ଅନେକ ମନୋରମ ପଦ୍ୟ ରଚନା କରିଥିଲେ । ସେହି ପଦ୍ୟାବଳୀରେ ଶ୍ରୀକୃଷ୍ଣଙ୍କ ବାଲଲୀଳା, ରାସ, ବିଶେଷତଃ ଶ୍ରୀରାଧାଙ୍କ ସମେତ ଗୋପୀମାନଙ୍କର ବିରହ ବର୍ଣ୍ଣନା ଅତ୍ୟନ୍ତ ହୃଦୟଗ୍ରାହିତାର ସହିତ ବର୍ଣ୍ଣିତ ହୋଇଥିବାର ଦେଖାଯାଏ ।

ବୃନ୍ଦାବନରେ ପ୍ରାୟ ଏକ ବର୍ଷ ରହିବା ପରେ ଠିକ୍ 'ଶ୍ରୀଗୁଣ୍ଡିଚା' ପୂର୍ବରୁ ଭକ୍ତକବି ସାଲବେଗ ବଡ଼ଠାକୁରଙ୍କୁ ରଥଯାତ୍ରାରେ ଦର୍ଶନ କରିବା ଲାଗି ଫେରିଆସିଲେ । ବାଟରେ ସେ ରୋଗରେ ପୀଡ଼ିତ ହୋଇ କିଛି ଦିନ ରହିଗଲେ । ସେ' ମଧ୍ୟରେ ଶ୍ରୀଗୁଣ୍ଡିଚା ଆସି ଉପସ୍ଥିତ ହୋଇଗଲା । ସେ ଦର୍ଶନଲାଲସାରେ ନିଜର ସାଧ୍ୟମତେ ଶୀଘ୍ର ଆସି ପୁରୀରେ ପହଞ୍ଚିବା ଲାଗି ଚେଷ୍ଟା କଲେ । କିନ୍ତୁ ବାହୁଡ଼ାଯାତ୍ରା ମଧ୍ୟରେ ପହଞ୍ଚିପାରିବାର କୌଣସି ଆଶା ନ ଦେଖି, ସାଲବେଗ କରୁଣ ସ୍ୱରରେ ମନର ଆବେଗତାର ସହିତ ପଦ୍ୟ ରଚନା କରି ଗାଇ ଗାଇ ବାଟ ଚାଲିଲେ—

"ଜଗବନ୍ଧୁ ହେ ଗୋସାଇଁ !
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ !
ସାତଶ ପଞ୍ଚାଶ କୋଶ ଦେଶ ଦୂର ନାହିଁ ।
ମୋହ ଯିବାଯାଏ ନନ୍ଦିଘୋଷେ ଥିବ ରହି ।।"

ଭକ୍ତଙ୍କର ଏହି କରୁଣ ଆବେଦନ ପ୍ରଭୁଙ୍କର କର୍ଣ୍ଣଗୋଚର ହେଲା । କିମ୍ବଦନ୍ତୀରୁ ଜଣାଯାଏ - ବାହୁଡ଼ାଯାତ୍ରାରେ ଶ୍ରୀମନ୍ଦିରକୁ ଫେରିଥିବା ପଥରେ ଶ୍ରୀଜଗନ୍ନାଥଙ୍କ 'ନନ୍ଦିଘୋଷ ରଥ' ବଡ଼ଦାଣ୍ଡରେ ଅନିର୍ଦ୍ଦିଷ୍ଟ କାଳଲାଗି ଅଟକି ରହିଥିଲା ଏବଂ ସାଲବେଗ ଆସି ଦର୍ଶନ କରିବାମାତ୍ରେ ପୁଣି ରଥ ଗଡ଼ିଥିଲା । ଯେଉଁଠାରେ ଭକ୍ତକୁ ଦର୍ଶନ ଦେବାଲାଗି ଚକା-ଡୋଳାଙ୍କ ରଥ ରହିଥିଲା, ସେହିଠାରେ ସାଲବେଗ ଆସନ ପକାଇ ଅବଶିଷ୍ଟ ଜୀବନକାଳ ଶ୍ରୀଜଗନ୍ନାଥଙ୍କ ଭଜନ ଗାନକରି ଅତିବାହିତ କରିଥିଲେ ଏବଂ ତାଙ୍କର ବିଷ୍ଣୁପ୍ରାପ୍ତି ପରେ ସେହିଠାରେ ହିଁ ତାଙ୍କୁ ସମାଧି ଦିଆଯାଇଥିଲା । ବଡ଼ଦାଣ୍ଡରେ ଭକ୍ତ ସାଲବେଗଙ୍କ ସମାଧି-ପୀଠ ଅବଲୋକନ କଲେ ଯେ କୌଣସି ଆଲୋଚକର ମନରେ ଜିଜ୍ଞାସା ଜାଗିଉଠେ । ସପ୍ତଦଶ ଶତାବ୍ଦୀର ସାମାଜିକ ଅବସ୍ଥା ଓ ମୁସଲମାନମାନଙ୍କ ପ୍ରତି ହିନ୍ଦୁ, ବିଶେଷତଃ ପୁରୀର ଅତ୍ୟନ୍ତ ରକ୍ଷଣଶୀଳ ହିନ୍ଦୁମାନଙ୍କର ଅନୁଦାରଭାବ ପ୍ରତି ଲକ୍ଷ୍ୟକଲେ, ବଡ଼ଦାଣ୍ଡରେ ଯବନ ସଂସ୍କାରରେ ଲାଳିତପାଳିତ ସାଲବେଗ ସମାଧିପୀଠର ଅସ୍ତିତ୍ୱ ମନରେ ଏକ ପ୍ରଶ୍ନବାଚୀ ହୋଇ ଉଙ୍କି ମାରେ । ତେଣୁ ଧାରଣା ହୁଏ ଯେ, ନିଶ୍ଚୟ କିଛି ଅଲୌକିକ ଘଟଣା ଏହାର ପୃଷ୍ଠଭୂମିରେ ରହିଛି; ଅନ୍ୟଥା ତତ୍କାଳୀନ ସାମାଜିକ ପରିପ୍ରେକ୍ଷୀ ଏ ପ୍ରକାର ତଥାକଥିତ ଅଘଟଣ କେବେହେଲେ ଘଟିନଥା'ନ୍ତା ।

ବଙ୍ଗୀୟ ଆଲୋଚକ ଶ୍ରୀ ସୁନ୍ଦରରଞ୍ଜନ ବିଦ୍ୟାବିନୋଦଙ୍କ 'ଶ୍ରୀକ୍ଷେତ୍ର' ଶୀର୍ଷକ ବଙ୍ଗଳା ପୁସ୍ତକରୁ ଜଣାଯାଏ ଯେ, ଭକ୍ତପ୍ରବର ସାଲବେଗଙ୍କ ଭକ୍ତିଭାବରେ ଅଭିଭୂତ ହୋଇ ମହାପ୍ରଭୁ 'ପତିତପାବନ' ସ୍ୱରୂପରେ ସିଂହଦ୍ୱାରଠାରେ ଆତ୍ମପ୍ରକାଶ କରିଥିଲେ । ଶ୍ରୀ ବିଦ୍ୟାବିନୋଦଙ୍କ ଆଲୋଚନାରୁ ଆହୁରି ମଧ୍ୟ ଜଣାଯାଏ ଯେ ସାଲବେଗ 'ପତିତପାବନାଷ୍ଟକ' ସଂସ୍କୃତରେ ରଚନା କରିଥିଲେ ।

"କେହ କେହ ବଲେନ, ସାଲବେଗ ନାମକ କୋନ୍ ଯବନକୁଳୋଦ୍ଭବ ଭକ୍ତକେ ଦର୍ଶନଦାନାର୍ଥ ପତିତପାବନ ଶ୍ରୀ ଶ୍ରୀଜଗନ୍ନାଥ ସିଂହଦ୍ୱାରେ ଆତ୍ମପ୍ରକଟ କରେନ୍ । × × × କଥିତ ହୟ ଜନୈକ ମୁସଲମାନ ପଠାନ୍ ସେନାପତି ଉତ୍କଳଦେଶ ଆକ୍ରମଣ କାଲେ ଜନୈକା ଉତ୍କଳୀୟା ହିନ୍ଦୁରମଣୀକେ ହରଣ କରିୟା ଲଇୟା ଯାୟ । ତାହାରଇ ଗର୍ଭେ ସାଲବେଗ ଜନ୍ମଗ୍ରହଣ କରେନ୍ । ଶ୍ରୀଜଗନ୍ନାଥଦେବେର ଦେଶେଇ ତାହାର ପୂର୍ବଦେଶ, ତିନି ପତିତା ଏବଂ ଶ୍ରୀଜଗନ୍ନାଥ ଦେବ ପତିତପାବନ ଓ ତାହାଦେର ନିତ୍ୟ ଉପାସ୍ୟ—ଇହା ମାତାର ନିକଟ ହଇତେ ଶୁନିୟା ସାଲବେଗେର ଶ୍ରୀଜଗନ୍ନାଥଦର୍ଶନେର ଜନ୍ୟ ଚିତ୍ତ ବ୍ୟାକୁଳ ହଇୟା ଉଠେ । ଶ୍ରୀଜଗନ୍ନାଥ କ୍ଷେତ୍ରେ ଆସିୟା ଶ୍ରୀଜଗନ୍ନାଥ ମନ୍ଦିରେର

ଅଭ୍ୟନ୍ତରେ ପ୍ରବେଶ କରିତେ ନା ପାରିଯା ସିଂହଦ୍ୱାରେର ବାହିରେ ଥାକିଯାଇ ସାଲ୍‌ବେଗ ପତିତପାବନ ଶ୍ରୀଜଗନ୍ନାଥକେ ସକାତରେ ଡାକିତେ ଥାକେନ୍ । କଥିତ ହୟ, ତାଁହାର ଅତିକ୍ରନ୍ଦନେ ଆକୃଷ୍ଟ ହଇଯା ଶ୍ରୀଜଗନ୍ନାଥ ଦେବ ବଡଦେଉଲ ହଇତେ ସ୍ୱୟଂ ସିଂହଦ୍ୱାରେ ଉପନୀତ ହନ୍ ଏବଂ ତଦବଧି ପତିତଗଣକେ କୃପା ବିତରଣେର ଜନ୍ୟ ସିଂହଦ୍ୱାରେ ପତିତପାବନ ଅର୍ଚ୍ଚାମୂର୍ତ୍ତି ରୂପେ ଅଧିଷ୍ଠିତ ଆଛେନ୍ । × × × ସାଲ୍‌ବେଗ ପତିତ-ପାବନ ଶ୍ରୀଜଗନ୍ନାଥ ଦେବେର ଉଦ୍ଦେଶ୍ୟେ 'ପତିତପାବନାଷ୍ଟକମ୍' ନାମକ ଏକ ଅଷ୍ଟକ ରଚନା କରିଯା ଛିଲେନ୍ ବଲିୟାଓ ଶୁନାଯାୟ ।"*

ଯା'ହେଉ, ଭକ୍ତକବି ସାଲବେଗଙ୍କ ଶେଷଜୀବନ ସମ୍ବନ୍ଧରେ କୌଣସି ପ୍ରାମାଣିକ ତଥ୍ୟ ଇତିହାସ ପୁସ୍ତକରୁ ମିଳେନାହିଁ । କେବଳ କେତେକ ଅପ୍ରତ୍ୟକ୍ଷ ପ୍ରମାଣ ବଳରେ ତାଙ୍କ ସମୟ ସମ୍ବନ୍ଧରେ ଆଲୋଚନା କରାଯାଇପାରେ ।

ଜାହାଙ୍ଗୀର କୁଲୀ ଖାଁଙ୍କର ପ୍ରଚଳିତ ନାମ ଲାଲ୍‌ବେଗ ଥିବାର ପୂର୍ବରୁ ଆଲୋଚନା କରାଯାଇଛି । ଉକ୍ତ ଆଲୋଚନାରୁ ଜଣାଯାଏ ଯେ, ଖ୍ରୀ: ଅ: ୧୬୦୮ ଅପ୍ରେଲ୍ ୧୭ ତାରିଖରେ ଲାଲବେଗ୍‌ଙ୍କ ମୃତ୍ୟୁ ହୋଇଥିଲା । ତତ୍‌ପୂର୍ବରୁ ସାଲବେଗଙ୍କ ଜନ୍ମ ହୋଇଥିବାର ଧାରଣା କରାଯାଇପାରେ । ସାଲବେଗଙ୍କ ଜନ୍ମ ପରେ ପରେ ତାଙ୍କ ପିତା ଲାଲବେଗ୍ ରାଜନୈତିକ କାରଣରୁ କଟକରୁ ବଙ୍ଗଦେଶକୁ ଚାଲିଯାଇଥିବା ଅସମ୍ଭବ ନୁହେଁ । କାରଣ ଆକବର୍ ବାଦଶାହଙ୍କ ଅମଳରୁ ଓଡ଼ିଶାର ଶାସନ ବଙ୍ଗ ସୁବାଦାରଙ୍କ ଉପରେ ନ୍ୟସ୍ତ ଥିଲା; କିନ୍ତୁ ଜାହାଙ୍ଗୀର ପୂର୍ବର ବ୍ୟବସ୍ଥାକୁ ରଦ୍ଦ କରିଦେଇ, ଓଡ଼ିଶାକୁ ଗୋଟିଏ ସ୍ୱତନ୍ତ୍ର 'ସୁବା'ରେ ପରିଣତ କରିବା ସଙ୍ଗେ ସଙ୍ଗେ କଟକଠାରେ ଜଣେ ସୁବାଦାରଙ୍କୁ ରଖାଇଥିଲେ । ଖୁବ୍ ସମ୍ଭବତଃ କଟକର ପ୍ରଥମ ସୁବାଦାର ହାସିମ୍ ଖାଁ କାର୍ଯ୍ୟରେ ଯୋଗଦେବା ମାତ୍ରେ, ଜାହାଙ୍ଗୀର କୁଲୀ ଖାଁ ବଙ୍ଗଳାକୁ ଫେରିଯାଇଥିଲେ । ସେତିକାବେଳେ ଲାଲ୍‌ବେଗ ତାଙ୍କ ରକ୍ଷିତା ପତ୍ନୀ ଓ ପୁତ୍ର ସାଲବେଗର ରକ୍ଷଣାବେକ୍ଷଣ ଲାଗି ଯେ ହାସିମ୍ ଖାଁଙ୍କୁ ଅନୁରୋଧ କରିଥିବେ । ଜଣେ ନିଷ୍ଠାପର ମୁସଲମାନ ଓ ପୂର୍ବତନ ସୁବାଦାରଙ୍କ ବ୍ରାହ୍ମଣୀ ପତ୍ନୀଙ୍କୁ ସାହାଯ୍ୟ କରିବା ଲାଗି ତତ୍କାଳୀନ ସୁବାଦାର ଆଦୌ କୁଣ୍ଠାବୋଧ କରିନଥିବେ ଏବଂ ରାଜ୍ୟଶାସନ ପକ୍ଷରୁ ମା' ପୁଅଙ୍କର ଚଳାଚଳ ଲାଗି ସମସ୍ତ ବ୍ୟବସ୍ଥା କରିଥିବେ । କଟକ ସୁବାଦାରଙ୍କ ପ୍ରତ୍ୟକ୍ଷ ପୃଷ୍ଠପୋଷକତାରେ ରହି ସାଲବେଗ ଶିକ୍ଷା ଗ୍ରହଣକରି ପରବର୍ତ୍ତୀ ଜୀବନରେ ଅର୍ଥାତ୍ ପନ୍ଦର କୋଡ଼ିଏ ବର୍ଷ ବେଳକୁ ସେନାବାହିନୀରେ ଯୋଗ ଦେଇଥିବେ ଏବଂ ଅନ୍ୟାନ୍ୟ ଇସ୍‌ଲାମ୍‌ଧର୍ମାବଲମ୍ବୀ ସୈନ୍ୟମାନଙ୍କ ପରି ଓଡ଼ିଶାରେ ଖୋରୁଧା ରାଜା, ଆଖପାଖର ରାଜା ଓ ଜମିଦାରମାନଙ୍କ ବିରୁଦ୍ଧରେ ଯୁଦ୍ଧକରି ନିଜର ଦକ୍ଷତା ଦେଖାଇଥିବେ । ହଠାତ୍ ଯୁଦ୍ଧରେ ଭୀଷଣ ଭାବରେ ଆହତ ହେବା ପରେ, ତାଙ୍କ ପ୍ରତି ଶାସନପକ୍ଷରୁ ସେପରି

* "ଶ୍ରୀକ୍ଷେତ୍ର" (ତୃତୀୟ ସଂସ୍କରଣ)—ପୃ: ୭୮-୭୯—'ପତିତପାବନାଷ୍ଟକ' ପରିଶିଷ୍ଟରେ ଦିଆଯାଇଛି ।

ବିଶେଷ ଦୃଷ୍ଟି ଦିଆଯାଇନଥିବ । ତେଣୁ ସେ ଜୀବନର ଆଶା ପରିତ୍ୟାଗ କରି ନିଜ ଜନନୀଙ୍କ ପରାମର୍ଶମତେ ଆଧ୍ୟାତ୍ମିକ ଜୀବନ ଯାପନ କରିବାର ସୁଯୋଗ ପାଇଥିଲେ ।

ସାଲବେଗଙ୍କ ଜନ୍ମ ଖ୍ରୀ: ଅ: ୧୬୦୭-୮ ବୋଲି ଗ୍ରହଣ କରାଗଲେ, ଖ୍ରୀ: ଅ: ୧୬୨୦-୧୬୨୨ ମଧ୍ୟରେ ସେ ଯୁଦ୍ଧରେ ଯୋଗଦେଇ ଆହତ ହୋଇଥିବାର ଅନୁମାନ କରାଯାଇପାରେ । ସେତେବେଳେ ଖୁରୁଧା ରାଜସିଂହାସନରେ ଗଜପତି ନରସିଂହ ଦେବ ଅଧିଷ୍ଠିତ ହୋଇଥିଲେ ଏବଂ ଓଡ଼ିଶାର ସୁବାଦାର ରୂପେ ମିର୍ଜା ଅହମ୍ମଦ ବେଗ୍ ମୋଗଲ-ମାନଙ୍କ ପ୍ରତିନିଧି ରୂପେ ଶାସନକାର୍ଯ୍ୟ ପରିଚାଳିତ କରୁଥିଲେ । ମିର୍ଜା ଅହମ୍ମଦ ବେଗ୍ ଜଣେ ଦୁର୍ଦ୍ଦାନ୍ତ ଶାସକ ତଥା ହିନ୍ଦୁବିଦ୍ୱେଷୀ ଥିବାର ଆଲୋଚନା ପୂର୍ବରୁ କରାଯାଇଛି । ତାଙ୍କ ନୃଶଂସତାର କାହାଣୀ 'ରସିକମଙ୍ଗଳ' କାବ୍ୟରେ ବର୍ଣ୍ଣିତ ହୋଇଛି । ସେ ଶ୍ରୀଜଗନ୍ନାଥ ମନ୍ଦିରକୁ ଧ୍ୱଂସ କରି ମହାପ୍ରଭୁଙ୍କ ଅପବିତ୍ର କରିବା ସଙ୍ଗେ ସଙ୍ଗେ ହିନ୍ଦୁମାନଙ୍କ ମନୋବଳର ମୂଳରେ କଠୋର ପ୍ରହାର ଦେବାଲାଗି ବାରମ୍ବାର ଚେଷ୍ଟା କରିଥିଲେ ।

ସେହି ସମୟରେ ଜାହାଙ୍ଗୀରଙ୍କର ପ୍ରାଣପ୍ରିୟା ନୂର୍‌ଜାହାନଙ୍କ ଚକ୍ରାନ୍ତ ଫଳରେ ସାହାଜାହାନ୍ ଦିଲ୍ଲୀ ସିଂହାସନରୁ ବଞ୍ଚିତ ହେବାର ଧାରଣା କରି, ମୋଗଲ ଶାସନ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଥିଲେ । ସାହାଜାହାନ୍‌ଙ୍କୁ କେତେକ ହିନ୍ଦୁ ରାଜା ଓ ସୁଲତାନ୍ ସାହାଯ୍ୟ କରୁଥିଲେ । ଗୋଲକୁଣ୍ଡାର ସୁଲତାନ୍ ଓ ରାଜା ଭୀମ ସିଂହଙ୍କ ସାହାଯ୍ୟରେ ସାହାଜାହାନ୍ ଓଡ଼ିଶାରେ ପ୍ରବେଶ କଲେ । ଅହମ୍ମଦ ବେଗ୍‌ଙ୍କ ସହିତ ତାଙ୍କର ପ୍ରବଳ ଯୁଦ୍ଧ ହୋଇଥିଲା ଏବଂ ସେତିକବେଳେ ଖୁରୁଧା ରାଜା ସାହାଜାହାନ୍‌ଙ୍କ ନିକଟରେ ବଶତା ସ୍ୱୀକାର କରି ନିଜର ଆରାଧ୍ୟ ଦେବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଧ୍ୱଂସମୁଖରୁ ରକ୍ଷାକରି ହିନ୍ଦୁଜଗତର ସ୍ମରଣୀୟ ହୋଇ ରହିଛନ୍ତି । ତତ୍‌ପୂର୍ବରୁ ଅହମ୍ମଦ ବେଗ୍‌ଙ୍କ ଘନଘନ ଆକ୍ରମଣ ଫଳରେ ଖୁରୁଧା ଓ ପୁରୀର ଜନସାଧାରଣ ଆତଙ୍କମୟ ଜୀବନ ଯାପନ କରୁଥିଲେ ଏବଂ ଗଜପତି ରାଜା ନିରୁପାୟ ହୋଇ ଶ୍ରୀମନ୍ଦିରରୁ ମହାପ୍ରଭୁଙ୍କୁ ଅନ୍ୟତ୍ର ନେଇ ଗୋପନରେ ରଖାଇବାର ବ୍ୟବସ୍ଥା କରିଥିଲେ ।

ସେତିକବେଳେ ସାଲବେଗ ଯବନ ସଂସ୍କାରରୁ ମୁକ୍ତହୋଇ ଶ୍ରୀଜଗନ୍ନାଥଙ୍କ ଚରଣ-କମଳରେ ମନୋନିବେଶପୂର୍ବକ ଶ୍ରୀକ୍ଷେତ୍ରରେ ବାସ କରୁଥିଲେ । ଯବନ ସେନାପତିଙ୍କ ପୁଣି ଆକ୍ରମଣ ସମୟରେ ପଣ୍ଡାମାନେ ଶ୍ରୀଜଗନ୍ନାଥଙ୍କୁ ଶଗଡ଼ରେ ବସାଇ ମଙ୍ଗଳା ନଦୀ ଘାଟରୁ ଜଳମାର୍ଗରେ ଚିଲିକା ଭିତରେ କୌଣସି ଗୋପନୀୟ ସ୍ଥାନକୁ ନେଇଯିବା ପାଇଁ ପ୍ରସ୍ତୁତ ହେଉଥିବା ସମୟରେ, ଭକ୍ତକବିଙ୍କ ହୃଦୟରେ କଠୋର ଆଘାତ ଲାଗିଥିଲା । ଭକ୍ତକବି ସେହି ଦୃଶ୍ୟକୁ ବର୍ଣ୍ଣନାକରି ଗୋଟିଏ ମର୍ମସ୍ପର୍ଶୀ ପଦ୍ୟ ରଚନା କରିଥିଲେ—

"କେଣେ ଯେନ ଯାଉଛ ଜଗନ୍ନାଥଙ୍କୁ
ଆମ୍ଭେ ଦର୍ଶନ କରିବୁ କାହାକୁ ?
ଖୁଣ୍ଟିଆ ଡାକ ଦେଲେ,
ପହଣ୍ଡି ବିଜେ ହେଲେ,
ବିଜୟ କର ପ୍ରଭୁ ଗୃହକୁ ।।
କୁଳବଧୂଙ୍କ ରଡ଼ି, ପଣ୍ଡାଏ ଗଡ଼ାଗଡ଼ି,
ବିଧାତା ବାମ ହେଲା ଓଡ଼ିଶାକୁ ।।
ବଡ଼ଦେଉଳରୁ ବାହାରି,
ଶଗଡ଼ରେ ବିଜେକରି,
ରେଣୁ ଯେ ପଡ଼ୁଥିବ ଶ୍ରୀମୁଖକୁ ।।
କହଇ ସାଲବେଗ, ହମିଲ୍ୟ କାହୁଁ ହେବ,
ଧିକ ଧିକ ଆମ୍ଭ ଜୀବନକୁ ।।"

ଏହି ଗୋଟିଏ ମାତ୍ର ପଦ୍ୟରୁ ମୋଗଲ ସୁବାଦାର ଅହମ୍ମଦ ଖାଁଙ୍କ ଦୁର୍ଦ୍ଦାନ୍ତ ମୂର୍ତ୍ତି, ତାଙ୍କର ପୁରୀ ଆକ୍ରମଣ ତଥା ଶ୍ରୀଜଗନ୍ନାଥଙ୍କୁ ନେଇ ଅନ୍ୟତ୍ର ରଖାଇବାର ଆଲେଖ୍ୟ ସମ୍ପୂର୍ଣ୍ଣ ଭାବରେ ଆଜିର ଆଲୋଚକଙ୍କ ମାନସପଟରେ ଭାସିଉଠେ । ଅହମ୍ମଦ ବେଗ୍ ଯେ କେବଳ ଶ୍ରୀମନ୍ଦିର ଲୁଣ୍ଠନ କରି ମହାପ୍ରଭୁଙ୍କୁ ଅପହରଣ କରିବାର ଆଶା ପୋଷଣକରି ପୁରୀ ଆକ୍ରମଣ କରିଥିଲେ ତା' ନୁହେଁ, ସାଧାରଣ ଧନଜୀବନ ଲୁଣ୍ଠନ କରିବା ବିଶେଷତଃ ନାରୀ-ମାନଙ୍କ ଉପରେ ପାଶବିକ ଅତ୍ୟାଚାର ଚଳାଇ ସେମାନଙ୍କ ସତୀତ୍ୱ ଲୁଣ୍ଠନ କରିବା ତାଙ୍କ ଲୋମହର୍ଷଣକାରୀ ଆକ୍ରମଣରେ ପ୍ରଧାନ ଲକ୍ଷ୍ୟ ଥିଲା । ତେଣୁ ଯବନ-ସେନାମାନଙ୍କର ଅତ୍ୟାଚାରରେ ମର୍ମନ୍ତୁଦ ବ୍ୟଥା ଅନୁଭବ କରି ଭକ୍ତକବି ଲେଖିଛନ୍ତି—

କୁଳବଧୂଙ୍କ ରଡ଼ି, ପଣ୍ଡାଏ ଗଡ଼ାଗଡ଼ି
ବିଧାତା ବାମ ହେଲା ଓଡ଼ିଶାକୁ ।।

ପ୍ରୋକ୍ତ ଆଲୋଚନାରୁ ନିଃସନ୍ଦେହରେ କୁହାଯାଇପାରେ ଯେ, ଭକ୍ତକବି ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ରୂପେ ଶ୍ରୀକ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲେ ।

ଭକ୍ତକବି ସାଲବେଗଙ୍କ ସମ୍ବନ୍ଧରେ ଲେଖିବାକୁ ଯାଇ ବଙ୍ଗଳାର ପ୍ରସିଦ୍ଧ ସମାଲୋଚକ ଶ୍ରୀଯୁକ୍ତ ସୁକୁମାର ସେନ ତାଙ୍କ 'History of Brajabuli Literature' ଶୀର୍ଷକ ପୁସ୍ତକରେ ତାଙ୍କୁ ଓଡ଼ିଶାର କବିରୂପେ ସ୍ୱୀକାର କରିଛନ୍ତି ଏବଂ ସେ ହିନ୍ଦୀ (ବ୍ରଜଭାଷା ଓ ବ୍ରଜବୋଲି), ବଙ୍ଗଳା ଓ ଓଡ଼ିଆ ଭାଷାରେ ବୈଷ୍ଣବ ପଦ୍ୟାବଳୀ ରଚନା କରିଥିବାର ସ୍ୱୀକାର କରିଛନ୍ତି । ଆଲୋଚକ ଡକ୍ଟର ସେନ ମଧ୍ୟ ଭକ୍ତକବିଙ୍କ ସମୟ ସପ୍ତଦଶ ଶତାବ୍ଦୀର ବୋଲି ମତ ଦେଇ ଲେଖିଛନ୍ତି—

"Three poems by Salabeg are quoted in 'Pada Kalpataru' of which one is written in Oriya (1542). The second poem (2472) shows traces of Bengali and the third (2972) shows traces of Brajabhakha. A fourth poem, written entirely in Brajabuli, is quoted in APR (443) (Aprakasita Padaratnavali) from the 'Padarasasara'.

According to Oriya tradition Salabeg was the son of a Pathan father and a Hindu mother. He became a devout Vaishnava even in his early youth, and after his mother's demise he lived at the Vraja. The Brajabhakha influence in one of his poems also shows that the poet must have retired to Brindaban."

ଆଲୋଚକ ରମଣୀମୋହନ ମଲ୍ଲିକ ତାଙ୍କର 'Mahmmedan Vaishnav Poets' ଶୀର୍ଷକ ପୁସ୍ତକରେ ସାଲବେଗଙ୍କର ଦୁଇଟି କବିତା ସଙ୍କଳନ କରିଛନ୍ତି । * *

କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ଭୂତପୂର୍ବ ପ୍ରାଧ୍ୟାପକ ଶ୍ରୀଯୁକ୍ତ ପ୍ରଭାତ ମୁଖାର୍ଜୀ ତାଙ୍କ ଲିଖିତ 'The History of Medieval Vaishnavism in Orissa' ଶୀର୍ଷକ ପୁସ୍ତକରେ ଲେଖିଛନ୍ତି—

"Another famous disciple was Salabeg. His father was Muhmmadan. He bebame a Vaishnava and set out for Puri. On the way he heard about the occult of Yasovanta. He put it to test and when convinced he hastened to dust off Yasovanta's feet. This Yavana Salabega may appear to be Salabega of the Gaudiya texts. There are two serious flows in the way of accepting it.

---

* History of Brajabuli Literature. Chap.XXI, page—463.

*Ibid···Page—464

Yavana Salabega of Gaudiya texts lived in 17th century and his spiritual mentor was Shyamananda."*

ଯବନ କବି ସାଲବେଗଙ୍କୁ ଗୌଡ଼ୀୟ ପରମ୍ପରାର କବି ବୋଲି କହିବାର କୌଣସି ଯାଥାର୍ଥ୍ୟ ଥିବାପରି ମନେହୁଏ ନାହିଁ କିମ୍ବା ଓଡ଼ିଶା ବ୍ୟତୀତ ସେ ଅନ୍ୟ କୌଣସି ଅଞ୍ଚଳର କବି ବୋଲି ପରୋକ୍ଷରେ ସନ୍ଦେହ କରିବାର ଆଦୌ ଅବସର ନାହିଁ ।

ପୂର୍ବରୁ ଆଲୋଚିତ ତାଙ୍କର ଜୀବନୀ, ଭକ୍ତିଭାବ ପ୍ରଭୃତି ପ୍ରାମାଣିକ ତଥ୍ୟ ପ୍ରତି ଦୃଷ୍ଟି ଦେଲେ ଆଲୋଚକ ମୁଖାର୍ଜୀଙ୍କର ମତ ଆଦୌ ନିରପେକ୍ଷ ବା ତଥ୍ୟମୂଳକ ବୋଲି ମନେହୁଏ ନାହିଁ ।

'Medieval Mysticism of India' ଶୀର୍ଷକ ପୁସ୍ତକରୁ ଉଦ୍ଧାରକରି ଡକ୍ଟର ବଂଶୀଧର ମହାନ୍ତି ତାଙ୍କ ରଚିତ 'ଭକ୍ତକବି ସାଲବେଗ' ଉତ୍ତର ପ୍ରଦେଶର ଚମାର ଜାତୀୟ ଲାଲବେଗ ବା ଲାଲଗିରଙ୍କ ଶିଷ୍ୟ ପରମ୍ପରାର ହୋଇପାରନ୍ତି ବୋଲି ସନ୍ଦେହ ପ୍ରକାଶ କରିଛନ୍ତି । ଡକ୍ଟର ମହାନ୍ତି ଏହି ପ୍ରସଙ୍ଗରେ ସାଲବେଗଙ୍କ ରଚିତ ପଦ୍ୟ 'ସାତଶ ପଞ୍ଚାଶକୋଶ ଚଳି ନ ପାରଇ, ମୋହ ଦିବାଯାଏ ନନ୍ଦଘୋଷେ ଥିବ ରହି'ର ଉଲ୍ଲେଖ କରି କହିଛନ୍ତି ଯେ—

ସାତଶ ପଞ୍ଚାଶ କୋଶ ଦୂରରୁ ସାଲବେଗ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ଦେଖିବାପାଇଁ ଆସୁଛନ୍ତି । ଏ ବହୁ ଦୂରର ପ୍ରଦେଶ କେଉଁଠି ? ଉତ୍ତର ପ୍ରଦେଶର ଚମାର ଜାତିର ଭକ୍ତ ଲାଲବେଗ ଓ ଦାର୍ଢ୍ୟତାଭକ୍ତି ବର୍ଣ୍ଣିତ ଲାଲବେଗ ଓ ସାଲବେଗ ଉପାଖ୍ୟାନ ମଧ୍ୟରେ କୌଣସି ସମ୍ବନ୍ଧ ବା ସମ୍ପର୍କ ଅଛି କି ? ଏ ସବୁ ଗୋଟିଏ ଗୋଟିଏ ପ୍ରଶ୍ନ । ଯଥାର୍ଥ ତଥ୍ୟ ବ୍ୟତୀତ ଏ ସବୁର ସମାଧାନ ସମ୍ଭବ ନୁହେଁ ।†

ଡକ୍ଟର ମହାନ୍ତିଙ୍କ ସନ୍ଦେହର, ପୂର୍ବୋକ୍ତ ଆଲୋଚନାବଳରେ ସମାଧାନ ହୋଇପାରୁଛି । ସାଲବେଗ ଓ ତାଙ୍କ ପିତା ଲାଲବେଗଙ୍କ ସମ୍ବନ୍ଧରେ ପରବର୍ତ୍ତୀ ଭକ୍ତକବି ରାମଦାସ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ଯେଉଁ ତଥ୍ୟ ପରିବେଷଣ କରିଛନ୍ତି ଏବଂ ସାଲବେଗଙ୍କ ସମସାମୟିକ ଐତିହାସିକ ଉପାଦାନରୁ ଯାହା ସବୁ ପ୍ରମାଣ ମିଳୁଛି, ସେଥିରୁ ତାଙ୍କ ସମ୍ବନ୍ଧରେ ଆଉ କୌଣସି ପ୍ରକାର ସନ୍ଦେହ ମନରେ ଜାତ ହୁଏ ନାହିଁ ।

ଅବଶ୍ୟ ଡକ୍ଟର ମହାନ୍ତି ସାଲବେଗଙ୍କ ରଚିତ ହିନ୍ଦୀ ଓ ବଙ୍ଗଳା କବିତାର ଯେଉଁ ଦୁଇଟି ପଦ୍ୟାଂଶ ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି, ସେଥିଲାଗି ସେ ଅଶେଷ ଧନ୍ୟବାଦାର୍ହ—

---

* The History of Medieval Vaishnavism in Orissa, page—86

† ଭକ୍ତକବି ସାଲବେଗ—ଝଙ୍କାର, ୯ମ ବର୍ଷ, ୧୨ଶ ସଂଖ୍ୟା, ପୃ. ୧୦୯୪ ।

"କହେ ସାଲବେଗ ହୀନ ଓ ରଙ୍ଗାଚରନେ ।
ଓଇ ଶ୍ୟାମ ଅଲି ହସ୍ତୁଁ ଥାକବି ମଧୁପାନେ ॥
ଦିବସ ରଜନୀ କାଲ୍‌ବନ୍ତୁ ନାହିଁ ଜାନ ହେ ॥"

× × ×

"କୈଁୟା ନ ଭଜୋ କୈଁୟା ନ ଭଜୋ
ସାଲବେଗ ପିଆକେ ବଲେ ସଜନା ।
ଝୁଠ୍ ଦୁନ୍‌ସୁଁ ବାଗେ କୈଁୟାରେ ମଜୋ ॥"

ଭକ୍ତକବି ସାଲବେଗଙ୍କ ଗୁରୁପରମ୍ପରା ସମ୍ବନ୍ଧରେ ଆଲୋଚନା ହେବା ଏକାନ୍ତ ଆବଶ୍ୟକ । ଆଲୋଚକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ସ୍ୱରଚିତ 'ଖୁରୁଧା ଇତିହାସ'ରେ ସାଲବେଗଙ୍କୁ ସୁଦର୍ଶନ ଦାସଙ୍କ 'ଯଶୋବନ୍ତ ଦାସଙ୍କ ଚଉତିଶୀ ଆଙ୍କ' ମତେ ଯଶୋବନ୍ତ ଦାସଙ୍କ ଶିଷ୍ୟ ଓ ଗୌଡ଼ୀୟ ପରମ୍ପରାମତେ ଶ୍ୟାମାନନ୍ଦ ଗୋସ୍ୱାମୀଙ୍କ ଶିଷ୍ୟ ବୋଲି ମତ ଦେଇଛନ୍ତି । ଭକ୍ତକବି ସାଲବେଗ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ଯଶୋବନ୍ତଙ୍କ ଶିଷ୍ୟ ହେବା ଇତିହାସ ଦୃଷ୍ଟିରୁ ଅସମୀଚୀନ ବୋଲି ମନେହୁଏ । ଅବଶ୍ୟ ଯଶୋବନ୍ତ ଦାସଙ୍କ ଶିଷ୍ୟ ପରମ୍ପରାରୁ ସାଲବେଗ ଦୀକ୍ଷା ଗ୍ରହଣ କରିଥିବା ଅସମ୍ଭବ ନୁହେଁ କିମ୍ବା ଯଶୋବନ୍ତ ନାମଧାରୀ ଅନ୍ୟ କୌଣସି ସାଧକଙ୍କର ସେ ଶିଷ୍ୟ ହୋଇପାରନ୍ତି ।

ବୈଷ୍ଣବ ଶ୍ୟାମାନନ୍ଦ ଦାସ ୧୫୫୨ ଶକାବ୍ଦ ବା ଖ୍ରୀ: ଅ: ୧୬୩୦ରେ ପ୍ରାଣତ୍ୟାଗ କରିଥିବାର ପ୍ରମାଣ 'ରସିକ ମଙ୍ଗଳ' ଗ୍ରନ୍ଥରୁ ମିଳୁଛି । ଯବନ କବି ସାଲବେଗ ଯୁବକ ଅବସ୍ଥାରୁ ମାତାଙ୍କ ଉପଦେଶ ଅନୁଯାୟୀ ଶ୍ରୀକୃଷ୍ଣ-ଭକ୍ତିଭାବରେ ମଜ୍ଜିଥିବାରୁ, ଶ୍ୟାମାନନ୍ଦଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିବା ଅସମ୍ଭବ ନୁହେଁ । ଅବଶ୍ୟ ଆଜଯାଏ ମିଳିଥିବା ସାଲବେଗଙ୍କ ଭଜନଗୁଡ଼ିକରୁ ତାଙ୍କ ଗୁରୁଙ୍କ ନାମର କୌଣସି ସୂଚନା ମିଳେ ନାହିଁ କିମ୍ବା ଭକ୍ତକବି ରାମଦାସ ମଧ୍ୟ ସାଲବେଗଙ୍କ ଦୀକ୍ଷାଗୁରୁଙ୍କ ସମ୍ବନ୍ଧରେ କୌଣସି ଆଲୋଚନା କରିନାହାନ୍ତି । ବରଂ ତାଙ୍କର ମାତା ହିଁ ଭକ୍ତକବିଙ୍କର ପ୍ରତ୍ୟକ୍ଷ ଗୁରୁ ବୋଲି ସେ ସ୍ୱୀକାର କରିଛନ୍ତି । କାରଣ ମନ୍ତ୍ରଦୀକ୍ଷା ଦେଇଥିବା ବ୍ୟକ୍ତିଙ୍କୁ ହିଁ 'ଗୁରୁ' ଆଖ୍ୟା ଦିଆଯାଇଥାଏ । ଯୁବକ ସାଲବେଗ ମୃତ୍ୟୁମୁଖରେ ପଡ଼ି ଜୀବନ ପ୍ରତି ଆସ୍ଥା ହରାଇ ବସିଥିବା-ବେଳେ, ତାଙ୍କ ମାତା ନିଜର କୌଳିକ ଇଷ୍ଟଦେବ ଶ୍ରୀକୃଷ୍ଣଙ୍କ ଭକ୍ତିରେ ବିଭୋର ହେବା ଲାଗି ପୁତ୍ରକୁ ପ୍ରବୃତ୍ତ କରାଇ ଉପଦେଶ ଦେଇଛନ୍ତି—

ସେ ଗୋପ ବୃନ୍ଦାବନ ଭୂପ । କହିବି ଶୁଣ ତାଙ୍କ ରୂପ ॥
ନବୀନ ଘନଶ୍ୟାମ ମୂର୍ତ୍ତି । ଦଳିତାଞ୍ଜନ ଜିଣି କାନ୍ତି ॥
ସୁନ୍ଦରୁ ଇନ୍ଦ୍ରନୀଳମଣି । ତାଙ୍କ ରୂପକୁ ନୋହେ ଜିଣି ॥
ମର୍କତ କେଶ ଛବି ତାର । ନାନା କୁସୁମେ ଶୋଭାକାର ॥
ଶିରେ ଶିଖଣ୍ଡ ଚୂଳ ଶୋହେ । ଭକତ ଜନ ମନ ମୋହେ ॥

ମସ୍ତକେ ଅମୂଲ୍ୟ ମୁକୁଟ । ଅଷ୍ଟରତନେ ଝଟଝଟ ॥
ଲଲାଟେ ଗୋରଚନା ଚିତା । ଯାହା ଶ୍ରୀବତ୍ସ ଊର୍ଦ୍ଧ ରେଖା ॥
ଶ୍ରବଣେ ମକର କୁଣ୍ଡଳ । ନିନ୍ଦଇ ତପନ ମଣ୍ଡଳ ॥

× × ×

ସିଦ୍ଧ ଯୋଗୀନ୍ଦ୍ର ମୁନିଗଣେ । ନିତ୍ୟ ଚିନ୍ତନ୍ତି ଯେ ଚରଣେ ॥
ସେ ପାଦେ ଆଶ୍ରେ ଥିବ ଯାର । ସଂସାରେ ଭୟ କାହିଁ ତାର ॥
ତ୍ରିଭଙ୍ଗ ରୂପ ବଂଶୀଧର । ଭଙ୍ଗିମା ଗୃହାଣି ସୁନ୍ଦର ॥
ଏମନ୍ତ ସ୍ୱରୂପ ଅଟଇ । ଯହିଁ ଚିନ୍ତିବ ତହିଁ ଥାଇ
ତୁ ବାବୁ ଏହି ରୂପ ଚିନ୍ତ । ମନରୁ ଛାଡ଼ ଭୟ ଭ୍ରାନ୍ତ ॥

ମାତାଙ୍କଠାରୁ ଶ୍ରୀକୃଷ୍ଣଙ୍କର ରୂପଗୁଣ ସମ୍ବନ୍ଧରେ ଶୁଣିବା ପରେ ରୋଗମୁକ୍ତ ହେବା କାମନାରେ ଯୁବକ ସାଲବେଗ ମନପ୍ରାଣ ଦେଇ ଶ୍ରୀକୃଷ୍ଣଙ୍କ ଭକ୍ତିରେ ନିମଜ୍ଜିତ ହୋଇଥିଲେ । ତେଣୁ ତା'ପରେ ତାଙ୍କ ହୃଦୟରେ ଶ୍ରୀକୃଷ୍ଣଙ୍କ ପ୍ରତି ଅଚଳା ଭକ୍ତି ଜାତ ହୋଇଥିଲା । ଅବଶ୍ୟ ସାଧୁସଙ୍ଗ କାମନାରେ ସେ ତତ୍କାଳୀନ ସାଧୁ ସମାଜ ମଧ୍ୟରେ ସମ୍ମାନିତ ବ୍ୟକ୍ତିଙ୍କ ସାହଚର୍ଯ୍ୟ ଲାଭ କରିଥିବେ କିନ୍ତୁ ପ୍ରତ୍ୟକ୍ଷ ଭାବରେ କାହାରିକୁ ଗୁରୁ ପଦରେ ବରଣ କରିଥିବା ସମ୍ଭବ ନୁହେଁ । ତା' ହୋଇଥିଲେ, ସେ ନିଶ୍ଚୟ କୌଣସି ପଦ୍ୟରେ ଗୁରୁବନ୍ଦନା କରିବାରେ କୁଣ୍ଠାବୋଧ କରି ନଥାନ୍ତେ ।

ଯାହାହେଉ ତତ୍କାଳୀନ ସାଧୁସମାଜରେ ଭକ୍ତ ସାଲବେଗଙ୍କର ବେଶ୍ ସୁଖ୍ୟାତି ଥିଲା ଏବଂ ଅନ୍ୟାନ୍ୟ ସାଧୁମାନେ ତାଙ୍କ ଭକ୍ତିଭାବନାରେ ବିମୁଗ୍ଧ ହୋଇଥିଲେ । ତେଣୁ ତାଙ୍କ ମୃତ୍ୟୁ ପରେ ହିନ୍ଦୁ ଜଗତର ପବିତ୍ର ପୀଠ ବଡ଼ଦାଣ୍ଡରେ ତାଙ୍କର ସମାଧି ମଣ୍ଡପ ନିର୍ମାଣ ହୋଇପାରିଥିଲା ।

ବଡ଼ଦାଣ୍ଡରେ ଅବସ୍ଥିତ ସାଲବେଗଙ୍କ 'ସମାଧି ପୀଠ' ସମ୍ବନ୍ଧରେ କେତୋଟି କିମ୍ବଦନ୍ତୀ ଶୁଣିବାକୁ ମିଳେ । ତନ୍ମଧ୍ୟରୁ ଗୋଟିଏ କିମ୍ବଦନ୍ତୀରୁ ଜଣାଯାଏ ଯେ, ସାଲବେଗ ବୃନ୍ଦାବନ ଦର୍ଶନ ଶେଷକରି 'ଶ୍ରୀଗୁଣ୍ଡିଚା' ସମୟରେ ମହାପ୍ରଭୁଙ୍କୁ 'ନନ୍ଦିଘୋଷ'ରେ ଦର୍ଶନ କରିବାର କାମନା ପୋଷଣ କରି ବ୍ୟଗ୍ରତାର ସହିତ ଧାଇଁ ଆସୁଥିଲେ; କିନ୍ତୁ ପଥ ମଧ୍ୟରେ ସେ ଅସୁସ୍ଥ ହୋଇପଡ଼ିଥିବାରୁ; ବାହୁଡ଼ା ଯାତ୍ରା ମଧ୍ୟରେ ଶ୍ରୀକ୍ଷେତ୍ରରେ ପହଞ୍ଚିବାର କୌଣସି ଆଶା ରହିଲା ନାହିଁ । ତେଣୁ ସେ କାତର କଣ୍ଠରେ 'ଦୀନବନ୍ଧୁ ଶ୍ରୀଜଗନ୍ନାଥ'ଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ଏବଂ 'ମୋହ ମିବା ଯାଏ ନନ୍ଦିଘୋଷେ ଥିବ ରହି' ବୋଲି ନିର୍ଦ୍ଦିଷ୍ଟ କାମନା ପ୍ରକାଶ କଲେ । କଥିତ ଅଛି 'ବଡ଼ଦାଣ୍ଡ'ର ବଳଗଣ୍ଡି ନିକଟରେ ଆକସ୍ମିକ ଭାବରେ 'ନନ୍ଦିଘୋଷ' ଅନିର୍ଦ୍ଦିଷ୍ଟ କାଳ ଲାଗି ଅଟକିଗଲା ଏବଂ ଭକ୍ତ ସାଲବେଗଙ୍କୁ ସେହିଠାରେ ପ୍ରଭୁ ଦର୍ଶନ ଦେଇସାରିବା ପରେ, ରଥ ଶ୍ରୀମନ୍ଦିର ଅଭିମୁଖେ ଗଡ଼ିଥିଲା । ବର୍ତ୍ତମାନ ଯେଉଁ

ସ୍ଥାନରେ ସାଲବେଗଙ୍କ ସମାଧି ମନ୍ଦିର ବିଦ୍ୟମାନ, ତନ୍ନିକଟରେ ରଥ ଅନିର୍ଦ୍ଦିଷ୍ଟ କାଳ ଲାଗି ରହିଥିବାରୁ ସାଲବେଗ ସେହିଠାରେ ବସି ପ୍ରଭୁଙ୍କ ଭଜନ, ଜଣାଣ ଗାନକରି ଶେଷ-ଜୀବନ ବିତାଇଥିଲେ ଏବଂ ସେହିଠାରେ ହିଁ ତାଙ୍କର ଶେଷନିଃଶ୍ୱାସ ନିର୍ଗତ ହୋଇଥିଲା । ତତ୍ପରେ ତାଙ୍କର ଅନୁଗତ ଭକ୍ତମାନେ ସାଲବେଗଙ୍କୁ 'ବଡ଼ଦାଣ୍ଡ'ର ଏକ ପାର୍ଶ୍ୱରେ ସମାଧି ଦେଇଥିଲେ । ରାମାନନ୍ଦ ସମ୍ପ୍ରଦାୟର 'ବଳଗଣ୍ଡି ଛତା ମଠ' ନିକଟରେ ସାଲବେଗଙ୍କ ସମାଧି ନିର୍ମିତ ହେବା ଅତ୍ୟନ୍ତ କୌତୂହଳଜନକ ବୋଲି ମନେହୁଏ ।

ବଙ୍ଗଳା ଭାଷାରେ ମୁଦ୍ରିତ ସୁନ୍ଦରାନନ୍ଦ ବିଦ୍ୟାବିନୋଦଙ୍କ 'ଶ୍ରୀକ୍ଷେତ୍ର' ପୁସ୍ତକରୁ ଜଣାଯାଏ ଯେ, ପୂର୍ବରୁ ସାଲବେଗଙ୍କ ସମାଧିପୀଠ ଉପରେ କୌଣସି ମନ୍ଦିର ନ ଥିଲା । ବାଲେଶ୍ୱର ଜିଲ୍ଲାର ଭାସ୍କର ପାତ୍ର ନାମକ କୌଣସି ଜମିଦାର ସେହି ସମାଧି ପୀଠର ଜୀର୍ଣ୍ଣ ସଂସ୍କାର କରି ଗୋଟିଏ ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିରର ଗଠନ ପ୍ରଣାଳୀରୁ ତାହା ଆଧୁନିକ ମନ୍ଦିର ଏବଂ ଖୁବ୍ ସମ୍ଭବତଃ ସେଠାରେ ପୂର୍ବରୁ ଗୋଟିଏ ଶ୍ରେଷ୍ଠ ଧରଣର ସମାଧି ମନ୍ଦିର ନିର୍ମିତ ହୋଇଥିଲା ଏବଂ ପରେ ତାହା ଜୀର୍ଣ୍ଣ ହୋଇଯିବାରୁ ଜମିଦାର ଶ୍ରୀ ଭାସ୍କର ପାତ୍ରଙ୍କଦ୍ୱାରା ନୂତନ ମନ୍ଦିର ନିର୍ମିତ ହୋଇଛି !

"ପୁରୀର ବଡ଼ ଦାଣ୍ଡେ × × × ବଳଗଣ୍ଡୀ ସ୍ଥାନେ 'ବଳଗଣ୍ଡି ଛତା' ମଠେର ସଂଲଗ୍ନ ଏକଟି ପ୍ରାଚୀରବେଷ୍ଟିତ ଭୂଖଣ୍ଡେ ଭକ୍ତବର ସାଲବେଗେର ମନ୍ଦିର ରହିୟାଛେ । ପୂର୍ବେ ସମାଧି ପୀଠେର ଉପର କୋନଓ ମନ୍ଦିର ଛିଲନା । ବାଲେଶ୍ୱରେର ଜମିଦାର ଭାସ୍କର ପାତ୍ର ଜୀର୍ଣ୍ଣୋଦ୍ଧାର ଓ ସମାଧି ମନ୍ଦିରାଦି ନିର୍ମାଣ କରାଇୟାଛେନ୍ ।"*

ଅଦ୍ୟାପି ରଥଯାତ୍ରାରେ ଯାଉଥିବା ସମୟରେ ଶ୍ରୀଜଗନ୍ନାଥଙ୍କ ରଥ ସାଲବେଗଙ୍କ ସମାଧି ପୀଠ ନିକଟରେ ରହୁଛି । ଭକ୍ତପ୍ରବର ସାଲବେଗଙ୍କୁ ଦର୍ଶନ ଦେବାଲାଗି ଆଜକୁ ପ୍ରାୟ ଅଢ଼େଇଶହ ବର୍ଷ ତଳେ 'ନନ୍ଦିଘୋଷ' ରହିଥିବାରୁ, ଅଦ୍ୟାପି ଶ୍ରୀଜଗନ୍ନାଥଙ୍କ ରଥ ସେହିଠାରେ ଅଟକି, ସାଲବେଗଙ୍କ ସ୍ମୃତିକୁ ଜାଗ୍ରତ କରାଉଛି । □□□

---

* ଶ୍ରୀକ୍ଷେତ୍ର ( ତୃତୀୟ ସଂସ୍କରଣ) ପୃ—୩୩ ।

# ସାଲବେଗଙ୍କ ଭକ୍ତିଭାବନା

ଭକ୍ତକବି ସାଲବେଗଙ୍କର ଯେଉଁ ପଦ୍ୟାବଳୀ ଅଦ୍ୟାବଧି ହସ୍ତଗତ ହୋଇ ପାରିଛି, ତଦ୍‌ବ୍ୟତୀତ ତାଙ୍କର ଆଉ ଯେ ପଦ୍ୟ ନାହିଁ, ତା' ନୁହେଁ । ସେ ନିଶ୍ଚିତ ଭାବରେ ଶତ ଶତ ପଦ୍ୟ ରଚନା କରିଥିଲେ; କିନ୍ତୁ କାଳର କରାଳ ସ୍ମୃତିପଟଳରେ ବୋଧହୁଏ ସେଗୁଡ଼ିକ ବିଲୁପ୍ତ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପ୍ରାୟ କୋଡ଼ିଏ ହଜାର ପୋଥି, ବନ୍ଧୁ ଶ୍ରୀନିବାସ ରଥ, ଡକ୍ଟର ବଂଶୀଧର ମହାନ୍ତିଙ୍କ ଆଲୋଚନା, 'ପଦ କଳ୍ପତରୁ' (ବଙ୍ଗଳା) ପୁସ୍ତକ ତଥା କେତେକ ପ୍ରକାଶିତ ପୁସ୍ତକରୁ ପଦ୍ୟାବଳୀ ସଂଗୃହୀତ ହୋଇଛି । ସେହି ପଦ୍ୟାବଳୀକୁ ସାଧାରଣତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ :

୧ମ—ଶ୍ରୀକୃଷ୍ଣ ଲୀଳା ପଦ୍ୟାବଳୀ, ୨ୟ—ଶ୍ରୀଜଗନ୍ନାଥ ପଦ୍ୟାବଳୀ, ୩ୟ—ଶିବ ପଦ୍ୟାବଳୀ, ୪ର୍ଥ—ବ୍ରହ୍ମଜ୍ଞାନ ଓ ଆଗତଭବିଷ୍ୟ ପଦ୍ୟାବଳୀ, ୫ମ—ଦେବୀ ପଦ୍ୟାବଳୀ ଓ ଅନ୍ୟାନ୍ୟ ଭାଷାରେ ରଚିତ ପଦ୍ୟାବଳୀ ।

ତାଙ୍କ ପଦ୍ୟାବଳୀକୁ ଯଥାକ୍ରମରେ ଆଲୋଚନା କରିବାର ପ୍ରଧାନ କାରଣ ହେଉଛି— ଯୁବକ ସାଲବେଗ ଜୀବନର ପ୍ରଥମାବସ୍ଥାରେ ଇସ୍‌ଲାମ ସଂସ୍କୃତିରେ ଲାଳିତପାଳିତ ହୋଇଥିଲେ ଏବଂ ମରଣାସନ୍ନ ଅବସ୍ଥାରେ ମାତାଙ୍କଦ୍ୱାରା ଉଦ୍‌ବୁଦ୍ଧ ହୋଇ ଶ୍ରୀକୃଷ୍ଣ ଭକ୍ତିଭାବନାରେ ନିମଜ୍ଜି, ରୋଗଶଯ୍ୟାରେ ପଡ଼ି ସେ 'ବାଳ ମୁକୁନ୍ଦ'ଙ୍କ ରୂପ ଦର୍ଶନ କରିଥିଲେ ।

ବାଳମୁକୁନ୍ଦ ରୂପ ହୋଇ । ବିଜୟ କଲେ ଭାବଗ୍ରାହୀ ।।

ତେଣୁ ତାଙ୍କର ଗୁଣଗାନପୂର୍ବକ ଭଜନ ରଚନା କରିବାରେ ସେ ପ୍ରଥମେ ଲେଖନୀ ଚାଳନା କରିଥିବେ । ତତ୍ପରେ ସାଲବେଗ 'ବୃନ୍ଦାବନ'ରୁ ଫେରି ଶ୍ରୀକୃଷ୍ଣଙ୍କ ବାଲଲୀଳା ଓ ରାହାସଲୀଳା ସମ୍ବନ୍ଧରେ ଆଉ କେତୋଟି ଭଜନ ଓ ଚଉପଦୀ ରଚନା କରିଥିବେ । ତେଣୁ ଶ୍ରୀକୃଷ୍ଣଙ୍କ ଲୀଳାମୂଳକ ଭଜନଗୁଡ଼ିକ ଭକ୍ତକବିଙ୍କର ପ୍ରାରମ୍ଭିକ ରଚନା ହେବା ସମ୍ଭବପର ।

ଶ୍ରୀକ୍ଷେତ୍ରରେ ଦୀର୍ଘଦିନ ରହିବା ପରେ ସେ ରଥଯାତ୍ରା ତଥା ଅନ୍ୟାନ୍ୟ ଉତ୍ସବ-ଯାତ୍ରାରେ ମହାପ୍ରଭୁଙ୍କୁ ଦେଖି ତଥା ଅନ୍ୟାନ୍ୟ ଭକ୍ତମାନଙ୍କଠାରୁ ଶ୍ରୀଜଗନ୍ନାଥଙ୍କର ମହିମା ଶ୍ରବଣ କରି, ଭକ୍ତଜୀବନର ଦ୍ୱିତୀୟ ପର୍ଯ୍ୟାୟରେ ଶ୍ରୀଜଗନ୍ନାଥଙ୍କ ଜଣାଣ ରଚନା କରିଥିବା ସମୀଚୀନ ବୋଲି ମନେହୁଏ ।

ଜୀବନର ଶେଷ ପର୍ଯ୍ୟାୟରେ କବିମାନେ ସାଧାରଣତଃ ନିର୍ଗୁଣ ବ୍ରହ୍ମ ତଥା ଶରୀର-ଭେଦ ସମ୍ବନ୍ଧୀୟ ଗହନ ତତ୍ତ୍ୱ ଆଲୋଚନାରେ ପ୍ରବୃତ୍ତ ହୋଇଥାନ୍ତି । ସେହି ଦୃଷ୍ଟିରୁ ଭକ୍ତକବି ସାଲବେଗ ଶେଷଜୀବନରେ ବ୍ରହ୍ମଜ୍ଞାନଗୁଡ଼ିକ ରଚନା କରିଥିବେ ।

ଏହି ପାଞ୍ଚ ପ୍ରକାରର ରଚନାକାଳକୁ ମଧ୍ୟ ନିମ୍ନଲିଖିତ ମତେ ବିଭାଗ କରାଯାଇପାରେ :

| | | |
|---|---|---|
| ଶ୍ରୀକୃଷ୍ଣ ଲୀଳାତ୍ମକ ପଦ୍ୟ | —ଆନୁମାନିକ— | ଖ୍ରୀ: ଅ: ୧୬୨୨-୩୦ |
| ଶ୍ରୀଜଗନ୍ନାଥ ଭଜନାତ୍ମକ ପଦ୍ୟ | ,, | ଖ୍ରୀ: ଅ: ୧୬୨୩-୩୫ |
| ଶିବ ଭଜନାତ୍ମକ ପଦ୍ୟ | ,, | ଖ୍ରୀ: ଅ: ୧୬୩୦-୩୫ |
| ବ୍ରହ୍ମଜ୍ଞାନ ଓ ଆଗତ ଭବିଷ୍ୟତ | ,, | ଖ୍ରୀ: ଅ: ୧୬୩୬-୫୫ |
| ଦେଶୀ ଓ ବଙ୍ଗଳା, ହିନ୍ଦୀ ପଦ୍ୟ | ,, | ଖ୍ରୀ: ଅ: ୧୬୩୫-୪୦ |

ଭକ୍ତ ସାଲବେଗଙ୍କ ପଦ୍ୟାବଳୀ ରଚନାକାଳ ବିଭାଗ ପୂର୍ବୋକ୍ତମତେ କରାଯିବା ପରେ, ବିଭିନ୍ନ ପଦ୍ୟାବଳୀରୁ ଭକ୍ତକବିଙ୍କ ଭକ୍ତିଧାରା ସମ୍ପର୍କୀୟ ଆଲୋଚନା ହେବା ଆବଶ୍ୟକ । କାରଣ ତା'ଫଳରେ ପଦ୍ୟାବଳୀର ବାସ୍ତବିକ ମୂଲ୍ୟାୟନ ହୋଇପାରିବ ।

## ସାଲବେଗଙ୍କ ରଚିତ ଶ୍ରୀକୃଷ୍ଣଲୀଳାତ୍ମକ ପଦ୍ୟାବଳୀ

ଶ୍ରୀକୃଷ୍ଣ ଭକ୍ତିଭାବରେ ବିଭୋର ହେବା ପରେ ଭକ୍ତକବି ସାଲବେଗ ବୃନ୍ଦାବନ-ବିହାରୀଙ୍କ ଲୀଳାସ୍ଥଳୀ ବୃନ୍ଦାବନକୁ ଯାଇ ଆରାଧ୍ୟ ଦେବଙ୍କ ଲୀଳା-ଚରିତମାନ ସାଧୁ-ସନ୍ଥମାନଙ୍କଠାରୁ ଶ୍ରବଣକରିବା ସଙ୍ଗେ ସଙ୍ଗେ ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡରେ ସ୍ନାନ କରିବା, ଯମୁନାର ଜଳ ପାନକରିବା, ରାସସ୍ଥଳୀର ଧୂଳିରେ ଗଡ଼ିବା, କୁଞ୍ଜବନରେ ଶୟନ କରି ଜୀବନକୁ ଚରିତାର୍ଥ କରିବା ଲାଗି ଇଚ୍ଛାକରିବା ସ୍ୱାଭାବିକ । ବିଶେଷତଃ ଶ୍ରୀକୃଷ୍ଣଙ୍କ ନାମ ସ୍ମରଣରେ ମୃତ୍ୟୁମୁଖରୁ ଉଦ୍ଧାର ପାଇଥିବା ଜଣେ ବ୍ୟକ୍ତିର ହୃଦୟରେ ଏ ପ୍ରକାର କାମନା ହେବା ଆଦୌ ଅସମୀଚୀନ ବୋଲି ମନେହୁଏ ନାହିଁ । ଶ୍ରୀବୃନ୍ଦାବନ ଦର୍ଶନ କରିନଥିଲେ ହେଁ, ମାତାଙ୍କଠାରୁ ଶୁଣିଥିବା ପୌରାଣିକ ଆଖ୍ୟାନ ଅନୁସାରେ ଭକ୍ତକବିଙ୍କ ହୃଦୟରେ ବଦ୍ଧମୂଳ ଧାରଣା ହୋଇଥିଲା ଯେ, ଅଦ୍ୟାପି କୁଞ୍ଜବନରେ ରାଧାକୃଷ୍ଣଙ୍କର ସତ୍ତା ବିଦ୍ୟମାନ ରହିଛି । ଅନ୍ୟଥା ତାଙ୍କପରି ଜଣେ ବିଜାତୀୟ ବ୍ୟକ୍ତି ଏକାଗ୍ରତାର ସହିତ ଭଜନ କରିବା ପରେ, ସେ କିପରି ନିଶ୍ଚିତ ମୃତ୍ୟୁମୁଖରୁ ଉଦ୍ଧାର ପାଇଲେ ! ସେହି ଚିନ୍ତାରେ ଭକ୍ତକବି ସାଲବେଗଙ୍କ ମନ ବ୍ୟାକୁଳ ହୋଇଉଠିଛି । ସେ ଭକ୍ତିଭାବରେ ବିଭୋର ହୋଇ ଗାଇଉଠିଛନ୍ତି—

"ଜୀବନରେ ଥିବ ଯେବେ ଯିବି ବୃନ୍ଦାବନ
ଦର୍ଶନ କରିବି ଯାଇ ଶ୍ରୀମଧୁସୂଦନ ॥
× × ×
ରାଧାକୃଷ୍ଣ ବେନି ଭିନ୍ନ ନୋହେ କୁଞ୍ଜବନ
କହେ ସାଲବେଗ ହୀନ ଜାତିରେ ଯବନ ॥

କବିଙ୍କର ବୃନ୍ଦାବନ ଭ୍ରମଣ କାମନା ପୂର୍ଣ୍ଣ ହେଲାମାତ୍ରେ ସେ ଶ୍ରୀକୃଷ୍ଣଙ୍କର 'ବାଲ-ମୁକୁନ୍ଦ' ରୂପରେ ମୁଗ୍ଧ ହୋଇଛନ୍ତି । ସେ ବୃନ୍ଦାବନର ଭକ୍ତମଣ୍ଡଳୀଠାରୁ ଶ୍ରୀକୃଷ୍ଣଙ୍କ ବାଲଲୀଳା ସମ୍ବନ୍ଧରେ ଅନେକ ଆଖ୍ୟାୟିକା ଶୁଣିଥିବେ । ବାଲକାଳରେ ମାଆଙ୍କ ନିକଟରେ ଶ୍ରୀକୃଷ୍ଣଙ୍କ ଜଞ୍ଜାଳଆପଣ ଭକ୍ତକବିଙ୍କୁ ବିମୁଗ୍ଧ କରିଥିବ । ତେଣୁ ସେ ଶ୍ରୀକୃଷ୍ଣଙ୍କ ବାଲ-ରୂପର ବର୍ଣ୍ଣନାକରି କେତୋଟି ଚୌପଦୀ ରଚନା କରିଥିବେ । ତନ୍ମଧ୍ୟରେ ଅଦ୍ୟାପି ମିଳିଥିବା ବାଲଲୀଳା ବର୍ଣ୍ଣନା ସମ୍ବନ୍ଧୀୟ କବିତା ମଧ୍ୟରେ 'ସୁନାପୁଅ ନାଚଇରେ' ଗୀତଟି ଅତ୍ୟନ୍ତ ମନୋମୁଗ୍ଧକର । ସାଧାରଣତଃ ଖାଇବାବେଳେ ପିଲାମାନେ ଅଝଟିଆ ହୋଇ ମାତାଙ୍କୁ ବ୍ୟସ୍ତ କରିପକାନ୍ତି । ସ୍ନେହମୟୀ ଜନନୀ ନାନାପ୍ରକାର ଭୋଜ୍ୟପଦାର୍ଥ ଧରି 'ନାନାବାୟା' ଗୀତ ଗାଇ, ଅନେକ ପ୍ରକାର ପ୍ରବୋଧନା ଦେଇ ପୁଅକୁ ଖାଇବାକୁ ଦିଅନ୍ତି ।

ପ୍ରସ୍ତୁତ ପଦ୍ୟରେ ଯଶୋଦା ଶ୍ରୀନନ୍ଦନର କୃଷ୍ଣଙ୍କୁ ସର, ଲବଣୀ, ଗୋଟିକା, ଅଧାମ, ସରପୁଲି ଆଦି ସୁମିଷ୍ଟ ଭୋଜ୍ୟ ପଦାର୍ଥ ଖୋଇବା ସମୟରେ ନାନାପ୍ରକାର ମନଭୁଲାଣିଆ କଥା କହିବା ସଙ୍ଗେ ସଙ୍ଗେ ଗୋପୀମାନଙ୍କ ଘରେ ବୁଲାଇ ଆଣିବାର ପ୍ରଲୋଭନ ଦେଖାଇଛନ୍ତି । ମାତା ଯଶୋଦାଙ୍କ ସମସ୍ତ ପ୍ରକାର ଚେଷ୍ଟା ସତ୍ତ୍ୱେ 'ନାଟୁଆ କାହ୍ନୁ' ନାହିଁ ନାହିଁ କରି ଖେଳରେ ମଜ୍ଜି ଯାଇଛନ୍ତି । ଭକ୍ତକବିଙ୍କ ମାନସପଟଳରେ ଏହି ଅଲୌକିକ ଦୃଶ୍ୟ ନାଚଉଠିଛି । ସ୍ୱତେ ଯେପରି ସେ ନିଜେ ଏହି ଦୃଶ୍ୟ ଅବଲୋକନକରି ଭାବବିହ୍ୱଳତାର ସହିତ ଗାଇଉଠିଛନ୍ତି—

"ସୁନାପୁଅ ନାଚଇରେ, ଖାଇବ ଲବଣୀ ସର
ନାହିଁ ନାହିଁ ବୋଲି ଶ୍ରୀମୁଖ ହଲାଇ କହନ୍ତି କରୁଣାକର ॥
ସୁନା ଡାଟିଆରେ ଗୋଟିକା ଅଧାମ ସାଚନ୍ତି ନବାତ କ୍ଷୀର
ଖାଅ ବୋଲି ମାଏ ସରପୁଲି ନେଇ ଦିଅନ୍ତି ରଙ୍ଗା ଅଧର ॥
× × ×
କହେ ସାଲବେଗ କୃଷ୍ଣରେ ଶରଣ ପାଦକୁ ପାଦ ଅନ୍ତର ॥

ଏହା ପରେ ଶ୍ରୀକୃଷ୍ଣଙ୍କ କିଶୋର ରୂପ ତଥା କୈଶୋର ଲୀଳା ସମ୍ବନ୍ଧରେ ଭକ୍ତକବି କେତୋଟି ଭଜନ ରଚନା କରିଥିବେ । ଶ୍ରୀକୃଷ୍ଣଙ୍କ ଆପାଦମସ୍ତକ ଭୂଷଣ ତଥା ନବଘନ ସୁନ୍ଦର ମନୋହର କାନ୍ତି ତାଙ୍କ ଭକ୍ତ-ହୃଦୟକୁ ଆକୃଷ୍ଟ କରିଥିବ । ସେ କୈଶୋର ରୂପରେ ବିମୁଗ୍ଧ ହୋଇ ଭାବୋଚ୍ଛ୍ୱାସରେ ଗାଇଉଠିଥିଲେ—

"ମୁକୁଟ ମନୋହର ଉର୍ ମାଳ ମନୋହର
ଅଙ୍ଗ ପୀତାମ୍ବର ରାଜତେ ।
କର୍ଣ୍ଣ କୁଣ୍ଡଳ ଅଧିକ ଝଳମଳ
କେଶରୀ ତିଳକ ବିରାଜତେ ॥"

କେବଳ ସେତିକରେ କବିଙ୍କର ଭାବପ୍ରବଣ ହୃଦୟର କୌତୂହଳ ମେଣ୍ଟି ନାହିଁ; ସେ ନଟବର ମୂର୍ତ୍ତିର ମନୋରମ ଅଙ୍ଗଶୋଭାରେ ମୋହିତ ହୋଇ ଗାଇଛନ୍ତି—

"ନବୀନ ନଟବର ମୂରତି, କୃଷ୍ଣଙ୍କୁ ଦେଖି ମୋ ବଳିଲା ମତି ॥
× × ×
କାଳିଆ ଅଙ୍ଗରେ ଝୋଟି ଚନ୍ଦନ, କଳାମେଘେ ଯେହ୍ନେ ପୂର୍ଣ୍ଣିମୀ ଜହ୍ନ
ଶ୍ରୀକୃଷ୍ଣ ପଦ୍ମରେ ରହି କଠାଉ, ତାଙ୍କ ଗୁଳିକ ଦିଶେ ଦାଉ ଦାଉ ॥"

ଭକ୍ତକବି ସାଲବେଗଙ୍କ ହୃଦୟ ହେଉି ଗୋପୀମୋହନ ରୂପରେ ମଜ୍ଜି ଯାଇଛି । ସେ ନିଜର ଅସ୍ତିତ୍ୱ ଭୁଲିଯାଇ ମନମୋହନ କୃଷ୍ଣଙ୍କ ବଂଶୀଧ୍ୱନିରେ ନିଜକୁ ତାଙ୍କର ପାଦତଳେ ସଁପି ଦେଇ ଗୋପୀମାନଙ୍କ ସହିତ ମିଶି ଗାଇଛନ୍ତି—

"ମୋ ଚିତ୍ତ ହରିନେଲା କହ୍ନାଇ ବଂଶୀ ବଜାଇ ।
ଅଙ୍ଗେ ଚନ୍ଦନ ଶୋଭା ଶିରେ ମାଳତୀ ଗଭା,
ଭଲ ସେ ଛଳଛଳ ନାଚଇ ॥"

କେବଳ ସେତିକି ନୁହେଁ, ସାଲବେଗ ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନିର ବର୍ଣ୍ଣନାରେ ଶତମୁଖ ହୋଇଉଠିଛନ୍ତି । ତାଙ୍କ ରଚନାଗୁଡ଼ିକ ମଧ୍ୟରେ ବଂଶୀ ସମ୍ପର୍କୀୟ ଲେଖାର ସଂଖ୍ୟା ସର୍ବାଧିକ । କବି ସାଲବେଗ ଗୋପିକାମାନଙ୍କ ପରି ବଂଶୀସ୍ୱନର ମାଧୁରୀ ହୃଦୟରେ ଅନୁଭବ କରି ଗୋପିକାଭାବରେ ବଂଶୀର ଶରଣ ପଶିଛନ୍ତି—

"ବଂଶୀସ୍ୱନ ! ଆଉ ନ ବଜା ନ ବଜା ଶ୍ୟାମଘନ ହେ !
× × ×
ଭଣେ ସାଲବେଗ ବଂଶୀରେ ଶରଣ,
ରାଧାକୃଷ୍ଣ ବିନୁ ଅନ୍ୟ ନାହିଁ ହେ ॥"

"କାଇଁଚମାଳିଆ, କଦମ୍ବମୂଳିଆ, ଚକ୍‌କଣକାଳିଆ ଶ୍ରୀକୃଷ୍ଣ ବାଙ୍କଚାହାଣିରେ ଗୁହିଁବାମାନେ ଚନ୍ଦ୍ରାବଳୀ ଅଜଣା ଯୁବକର ମନୋହର ରୂପରେ ମୁଗ୍ଧ ହୋଇ କାମବାଣରେ ଜର୍ଜରିତା ହୋଇଛି । ସେ ଦୂତୀ ଆଗରେ ନିଜର ମନୋବିକାର ପ୍ରକାଶ କରି ଶ୍ରୀକୃଷ୍ଣଙ୍କ ପରିଚୟ ଜାଣିଥିଲେହେଁ, ଆଉ ଥରେ ଜାଣିବାର ଛଳନା କରି ପଚାରିଛି । କବି ସାଲବେଗ ଚନ୍ଦ୍ରାବଳୀଙ୍କ ସହିତ ସମସ୍ୱରରେ ଗାଇଛନ୍ତି—

"ସେ ତ ଚକ୍‌କଣ କାଳିଆ କାହା ପୁଅ ଗୋ କହ କହ ॥
ସେ ତ କଦମ୍ବମୂଳିଆ କାହା ପୁଅ ଗୋ କହ କହ ॥

ସେ ତ କାଇଁଚମାଳିଆ କାହା ପୁଅ ଗୋ କହ କହ ।।
କଦମ୍ବ ମୂଳରେ କି ରୂପ ଦେଖିଲି ଗୃହେଁ ଚମକ ପଡ଼ିଲି ମୁହିଁ ।।
ଗୋ କହ କହ !

× × ×

ଚନ୍ଦ୍ରାବଳୀ ଆଗେ ଦୂତୀ କହି,
ନନ୍ଦନନ୍ଦନ ଗୋ ସେହି ସେହି ।
କହେ ସାଲବେଗ ଜାତିରେ ଯବନ ଶ୍ରୀରଙ୍ଗାଚରଣ ନିତ୍ୟେ ଧ୍ୟାୟି
ଗୋ କହ କହ ।।"

ଭକ୍ତକବି ସାଲବେଗଙ୍କ ଭାବଜଗତ ଧୀରେ ଧୀରେ ବିସ୍ତୃତ ହୋଇଯାଇଛି । ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନିରେ ଗୋପିକାମାନେ ଉଚ୍ଛନ୍ନ ହୋଇଉଠିଥିବାର ଦୃଶ୍ୟ ତାଙ୍କ ଆଖିରେ ଲାଗିରହିଛି । ସେ ତାହା କବିତାରେ ପ୍ରକାଶିତ କରି ଭକ୍ତ ପାଠକମାନଙ୍କର ମନକୁ ଆକୃଷ୍ଟ କରିବା ସଙ୍ଗେ ସଙ୍ଗେ ନିଜ ଭକ୍ତିଭାବନାର ସମ୍ୟକ୍ ପରିଚୟ ଦେଇଛନ୍ତି ।

ବଂଶୀବାଦନ ଫଳରେ ଗୋପପୁରର ଯୁବତୀକୁଳ ଉଚ୍ଛନ୍ନ ହୋଇଉଠିଛି । ସେମାନେ ଗୁରୁଗଉରବ ନ ମାନି, ନିନ୍ଦା ଅପବାଦକୁ ଖାତିର ନ କରି, ବଂଶୀସ୍ୱନର ଅନୁସରଣରେ ଧାଇଁଯାଇଛନ୍ତି । କଦମ୍ବମୂଳରେ ବଂଶୀଧାରୀ ଶ୍ରୀକୃଷ୍ଣଙ୍କ ଆଗରେ ନିଜକୁ ସମର୍ପଣ କରି-ଦେଇଛନ୍ତି । କବି ସେହି ଅପରୂପ ଦୃଶ୍ୟର କଳ୍ପନା କରି ଗାଇଛନ୍ତି—

"ବୃନ୍ଦାବନେ ବଂଶୀ କେ ବଜାଇଲା, ଗୋ ମିତ !
ଛୁଟିଗଲା କ୍ଷୁଦ୍ର ଘଣ୍ଟି ନୀବିବନ୍ଧ ଗଲା ଫିଟି
ବସନ ପିନ୍ଧିବାକୁ ଡରି, ନୋହିଲା ଗୋ ମିତ ।।

× × ×

କହେ ସାଲବେଗ ହୀନ, ଏହି ମୋର ନିବେଦନ ।
ରାଧାକୃଷ୍ଣ ପାଦେ ଚିତ୍ତ ରହିଲା, ଗୋ ମିତ ।।"

ବଂଶୀସ୍ୱନ ପ୍ରତିଧ୍ୱନି ଶୁଣି ଗୋପୀମାନେ ଉନକୁଦନ ଅଧୀର ହୋଇଉଠିଲେ । ସେମାନଙ୍କ ମନର ସମସ୍ତ ପ୍ରକାର ଦୃଢ଼ତା ଲୋପ ପାଇଗଲା । ବଂଶୀର ତ୍ରିଲୋକମୋହନ ସ୍ୱର ଆଗରେ ସେମାନଙ୍କ ହୃଦୟ ବିଚଳିତ ହୋଇଉଠିଲା । ସେମାନେ ବେଳେ ବେଳେ ସଚେତ ହୋଇ ବଂଶୀର ଅପ୍ରସ୍ତୁତ ନିନ୍ଦା କରିବାରେ ଲାଗିଲେ; ବେଳେବେଳେ ନିଜ ନିଜ ନାମରେ ବଂଶୀବାଦନ ଶୁଣି ଗୋପଦାଣ୍ଡରେ ଲଜ୍ଜିତା ହେଉଥିଲେ ହେଁ, ବଂଶୀସ୍ୱନରୁ ରକ୍ଷାପାଇବା ଲାଗି କୌଣସି ଉପାୟ ଖୋଜି ପାଇଲେ ନାହିଁ । ଶେଷକୁ ମୋହନବଂଶୀ-ପ୍ରଦାନକାରୀ ବ୍ରହ୍ମାଙ୍କ ଆଗରେ ଅଭିଯୋଗ କରିବାଲାଗି ଦୂତୀକୁ ପଠାଇଲେ । ଶେଷରେ ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଯାଆନ୍ତେ, ଗୋପୀକୁଳ ବିଶେଷତଃ ଶ୍ରୀରାଧା ବଂଶୀଧାରୀଙ୍କ ପାଦ-ପଦ୍ମରେ ନିଜକୁ ସମର୍ପଣ କରିଦେଇ ଶରଣ ପଶିଲେ । ଭକ୍ତକବି ସାଲବେଗଙ୍କ କଳ୍ପନା-

ପଟରେ ଏହି ଦୃଶ୍ୟ ଭାସିଉଠିବା ମାତ୍ରେ ସେ ପ୍ରେମାନୁରାଗରେ ଜର୍ଜରିତ ହୋଇ ଗାଇ-ଉଠିଲେ—

"ମୁରଲୀ, ତୋର ଶରଣ ଗଲିରେ ମୁରଲୀ !
ଆଉ ନ ଡାକିବୁ ରାଧିକା ବୋଲିରେ, ମୁରଲୀ ॥"

ପ୍ରେମୋନ୍ମାଦିନୀ ରାଧିକା ଆତ୍ମହରା ହୋଇ ମନମୋହନ ଶ୍ରୀକୃଷ୍ଣଙ୍କ ଆଗରେ ବେଳେ-ବେଳେ ଅଭିଯୋଗ କରିଛନ୍ତି । କାରଣ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦିଷ୍ଟ ବେଶ ପୋଷାକ ଶ୍ରୀରାଧାଙ୍କ ପ୍ରାଣରେ ବିଶେଷ ଚମକ ସୃଷ୍ଟି କରିଥିବାରୁ ସେ ଅଭିମାନିନୀ ହୋଇ ଛଳକୋପ ସ୍ୱରରେ ସେହି ସେହି ନିର୍ଦ୍ଦିଷ୍ଟ ବେଶ ପରିହାର କରିବା ଲାଗି ଶ୍ରୀକୃଷ୍ଣଙ୍କ ଆଗରେ ଜଣାଇଛନ୍ତି । ଭକ୍ତ ସାଲବେଗ ମାନମୟୀ ରାଧିକାଙ୍କ ସ୍ୱରରେ ସ୍ୱର ମିଶାଇ ସେଥିକିବେଳେ ଗାଇଛନ୍ତି—

"ଯାଅ ତୁମ୍ଭେ ନନ୍ଦ କହ୍ନାଇ,
ମୋ ନାମେ ମୁରଲୀ ବାଇବ ନାହିଁ ।
ଶିରରେ ତୁମର ମୟୂରପୁଚ୍ଛ
ବାମେ ଆଉଜାଇ ବାନ୍ଧିବ ନାହିଁ ।
ବାମେ ଆଉଜାଇ ବାନ୍ଧିବ ଯେମନ୍ତ
ପୁଞ୍ଜାପୁଞ୍ଜା ମଲ୍ଲୀ ଝଟିବ ନାହିଁ ॥

× × ×

କହେ ସାଲବେଗ ଜାତିରେ ଯବନ
ରାଧାକୃଷ୍ଣ ପାଦ ହୃଦରେ ଧ୍ୟାଇ ॥"

କେବଳ ସେତିକି ନୁହେଁ, ଶ୍ରୀରାଧାକୃଷ୍ଣଙ୍କ ମାନ-ଅଭିମାନ ଲୀଳାରହସ୍ୟ, କେଳି କଉତୁକ ଆଦି ଶ୍ରୀକୃଷ୍ଣଲୀଳା ବିଷୟକ ବହୁବିଧ ଚିନ୍ତାରେ ଉଦ୍‌ବୁଦ୍ଧ ହୋଇ ଭକ୍ତକବି ସାଲବେଗ କବିତାମାନ ରଚନା କରିଛନ୍ତି ।

କବି ସାଲବେଗଙ୍କ ରଚନା ଖ୍ରୀ: ଅ: ୧୭ଶ ଶତାବ୍ଦୀର ହୋଇଥିବାରୁ, ତା'ର ପ୍ରଭାବ ପରବର୍ତ୍ତୀ କବିମାନଙ୍କ ଉପରେ ବିଶେଷ ପଡ଼ିଥିବାର ଦେଖାଯାଏ । ବିଶେଷତଃ ଶ୍ରୀକୃଷ୍ଣ-ଭକ୍ତିଧାରାର ପ୍ରବୀଣ ଲୋକପ୍ରିୟ କବି ବନମାଳୀ ଓ ଗୋପାଳକୃଷ୍ଣଙ୍କ ରଚନାରେ ସାଲବେଗଙ୍କ ରଚନାର ପ୍ରଭାବ ବିଶେଷ ପରିଲକ୍ଷିତ ହୁଏ । ଏ ସମ୍ବନ୍ଧରେ ବନମାଳୀଙ୍କ—

"ଶ୍ୟାମ ନାଗର ହେ ଏ ବେଶ ହୋଇବ ନାହିଁ ।
ଏ ବେଶ ହୋଇଲେ ପାଷାଣ ତରଳେ
ଯୁବତୀ ବଞ୍ଚିବେ କାହିଁ ॥
ଊଭାହୋଇଥିବ କଦମ୍ବର ମୂଳେ ନଟବର ବେଶ ହୋଇ,
ଧେନଥିବ ଯେବେ ମୋହନ ମୁରଲୀ ଅଧରେ ଚୁମ୍ବିବ ନାହିଁ ।
ପିନ୍ଧିଥିବ ଯେବେ ପୀତାମ୍ବର ତୁମ୍ଭେ ଭୂଇଁରେ ଲୋଟିବ ନାହିଁ,

ହସୁଥିବ ଯେବେ ମୃଦୁ ମୃଦୁ ହୋଇ ତେରଛେ ଗ୍ରହିବ ନାହିଁ ।
ଯେନଥିବ ଯେବେ ଚନ୍ଦନର ବିନ୍ଦୁ ଗୋରୋଚନା ଥିବ ନାହିଁ,
ବାନ୍ଧିଥିବ ଯେବେ ତ୍ରିଭଙ୍ଗିମା ଚୂଳ ଚନ୍ଦ୍ରିକା ଖୋସିବ ନାହିଁ ।

ସହିତ ସାଲବେଗଙ୍କ—

"ଯାଅ ତୁମ୍ଭେ ନନ୍ଦ କହ୍ନାଇ,
ମୋ ନାମେ ମୁରଲୀ ବାଇବ ନାହିଁ ॥
ଶିରରେ ତୁମ୍ଭର ମୟୂରପୁଚ୍ଛ
ବାମେ ଆଉଜାଇ ବାନ୍ଧିବ ନାହିଁ
ବାମେ ଆଉଜାଇ ବାନ୍ଧିବ ଯେମନ୍ତେ
ପୁଞ୍ଜାପୁଞ୍ଜା ମଲ୍ଲୀ ଖଂଜିବ ନାହିଁ ।"

କବିତାର ତୁଳନା କଲେ ଜଣାଯାଏ ଯେ ପୂର୍ବବର୍ତ୍ତୀ କବି ସାଲବେଗଙ୍କ ରଚନାରେ ଯେଉଁ ହୃଦ୍ୟ ତଥା ମନୋହର କଳ୍ପନା ସ୍ଥାନ ପାଇଛି, ତାହା ଜଣେ ଅନନ୍ୟ ଭକ୍ତଙ୍କର ନିଷ୍ଠଳ ଚିନ୍ତାଧାରାର ପରିପ୍ରକାଶ । ସତେ ଯେପରି ସାଲବେଗ ଶ୍ରୀରାଧାଙ୍କ ମନଲାଖି ବେଶ ପିନ୍ଧିଥିବା ମୋହନସୁନ୍ଦର ଶ୍ରୀକୃଷ୍ଣଙ୍କୁ ପରୋକ୍ଷଭାବରେ ତାଙ୍କର ଦେହ ବେଶ ହେବା ଲାଗି ନିବେଦନ କରୁଛନ୍ତି ।

କିନ୍ତୁ ବନମାଳୀଙ୍କ 'ଶ୍ୟାମନାଗର ହେ' ଗୀତରେ ସାଲବେଗଙ୍କ ହୃଦୟର ଆତୁରତା ପରିଦୃଷ୍ଟ ହୁଏନାହିଁ । କବି ବନମାଳୀ ଅବଶ୍ୟ ପୂର୍ବବର୍ତ୍ତୀ କବି ସାଲବେଗଙ୍କୁ ଅନୁକରଣ କରି ନିଜ ଗୀତଟିର ମାଧୁର୍ଯ୍ୟ ବଢ଼ାଇବାକୁ ଚେଷ୍ଟା କରିଛନ୍ତି; ମାତ୍ର ସାଲବେଗଙ୍କ କବିତାରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଯେଉଁ ଏକାତ୍ମତାର ପରିପ୍ରକାଶ ହୋଇଛି, ତାହା 'ଶ୍ୟାମ-ନାଗର ହେ' ଗୀତରେ ଫୁଟିଉଠିନାହିଁ ।

ଆହୁରି ମଧ୍ୟ ଜଣାଯାଏ ଯେ, 'ବନମାଳୀ ପଦ୍ୟାବଳୀ'ରେ ସଂଗୃହୀତ 'ବାଟ ଛାଡ଼ ସୁହାଟ ନାଗର' ଗୀତଟି ସାଲବେଗଙ୍କ ନାମରେ ଭଣିତା ହୋଇଥିବାର ଦେଖାଯାଏ । ଉଭୟ ଗୀତର ଏକ ତୁଳନାତ୍ମକ ଅଧ୍ୟୟନ ଲାଗି ଏଠାରେ ଆଲୋଚନା କରାଯାଇପାରେ ।

ବନମାଳୀଙ୍କ ରଚନା—

"ବାଟ ଛାଡ଼ ସୁହାଟ ନାଗର ! ଯମୁନା ଯିବି ନୀର ଆଣିକି,
ଘାଟ ପାଇଁ ଯେବେ ଲାଟ ଲଗାଇବ
ପ୍ରତିବନ୍ଧ ଦେବି ମଥାମଣିକି ॥ ଘୋଷା ॥
ଘରେ ମୋ ନଣନ୍ଦ ଅଟେ ବଡ଼ ମନ୍ଦ
ଶାଶୁ ମୋ ଅଟଇ ସପତ୍ନୀ କି !
ଆହେ ଗିରିଟେକା ନ କର ତୁ ଡକା
ତୁମ୍ଭ ଲାଗି ନ ଆସିବି ଏଣିକି !

ମୁହିଁ ବୃଷଭାନୁ ନୃପତିଙ୍କ ଜେମା
ଆନ ପ୍ରାୟେ ମୋତେ ଅଛ ମଣି କି !
ଧରି ମୋ ଅଞ୍ଚଳ କରୁଛ ଜଞ୍ଜାଳ
ଡର ନାହିଁ ପର ଭୃଆସୁଣୀ କି !
ନନ୍ଦ ମହାଖଣ୍ଡ ପୁଅ ଏଡ଼େ ବଡ଼
ଦେଖିଥାଅ ଗୋପ ଗଉଡ଼ୁଣୀ କି !
କ୍ଷୀର ଦେଲାବେଳେ ପୂତନା ମାରିଲ
ସ୍ତ୍ରୀହତ୍ୟା ଦୋଷ ନ ବହିଲ କି ॥
ମୁଁ ଯେବେ ଏଥର ଆସିବି ପାଣିକି
ସଙ୍ଗେ ଆଣିଥିବି ସଖୀଶ୍ରେଣୀକି ।
ବୋଲେ ବନମାଳୀ ଶୁଣ ଠାକୁରାଣୀ
ନିରାଶ ନ କର ବେନୁପାଣିକି ॥”

କବି ସାଲବେଗଙ୍କ ରଚନା—

“ବାଟ ଛାଡ଼ ସୁଧଟ ନାଗର
ଯମୁନାକୁ ମୁହିଁ ଯିବି ପାଣିକି,
ବାଟ ପାଇଁ ଯେବେ ଲଟ ଲଗାଇଛ,
ପ୍ରତିବନ୍ଧା ଦେବ ମଥାମଣିକି ॥
ମଥାରେ ମଟୁକ ପଥରେ ଗମନ
ବାଟ ଓଗାଳୁଛ କାହିଁ ପାଇଁ କି ?
ଶାଶୁ ଗାଳିଦେବ ନଣନ୍ଦ ଚଳିବ
ବୋଲିବେ ମୋ ବନ୍ଧୁ ଦୋଷକାରୁଣୀ କି !
ମୁହିଁ ବୃଷଭାନୁ ନୃପତିର ସୁତା
ତୋହପରି ମୋତେ ମଣିଅଛୁ କି !
ଧରୁଛୁ ଅଞ୍ଚଳ କରୁଛୁ ଜଞ୍ଜାଳ
ଡରନାହିଁ ପର ଭୃଆସୁଣୀ କି !
ଏହି ଗୋପପୁରେ କଂସ ରାଜା ଡରେ
ସେ କଥା ତୋହର ମନେ ନାହିଁକି ?
ଆରେ ଗିରିଟେକା ନ କର ତୁ ଡକା
ତୋର ଯୋଗୁ ନାଶ ଯିବି ମୁହିଁ କି !
ରାଧାବାଣୀ ଶୁଣି ବୋଲେ ବେଣୁପାଣି
ନିଷ୍ଠୁର ବଚନ କାହୁଁ ଏଡ଼ିକି ।

କହେ ସାଲବେଗ ଶୁଣ ଠାକୁରାଣୀ
ନରାଣ ନ କର କମ୍ଭୁପାଣିକ ।"

ଉଭୟ ରଚନା ପାଠକଲେ ଜଣାଯାଏ ଯେ, ସାଲବେଗଙ୍କ କବିତାଟିକୁ ସାମାନ୍ୟ ପରିବର୍ତ୍ତନ କରି 'ବନମାଳୀ ପଦ୍ୟାବଳୀ'ରେ ପ୍ରକାଶ କରାଯାଇଛି; କିନ୍ତୁ ବନମାଳୀଙ୍କ ନାମରେ ଭଣିତ କବିତାଟିର ଅନେକ ଅସାମଞ୍ଜସ୍ୟ ରହିଛି, ଯାହା ସାଲବେଗଙ୍କ କବିତାରେ ଆଦୌ ଦେଖାଯାଏ ନାହିଁ । ଉଦାହରଣ ସ୍ୱରୂପ କେତୋଟି ପଦର ଆଲୋଚନା ଏଠାରେ ପ୍ରଦତ୍ତ ହେଲା—

ପ୍ରଥମ ପଦରେ ବନମାଳୀଙ୍କ କବିତାରେ ଅଛି 'ଦୁହେଁଟ ନାଗର'; କିନ୍ତୁ ସାଲବେଗଙ୍କ ଭଣିତାରେ ଅଛି—'ସୁଘଟ ନାଗର' । 'ଦୁହଟ' ଶବ୍ଦଟି ସାଧାରଣତଃ ଖଳ ଅର୍ଥରେ ବ୍ୟବହାର କରାଯାଏ ଏବଂ ତାହା ଏକ ସୁଗୁଣ ନୁହେଁ । ତେଣୁ 'ଦୁହଟ' ଶବ୍ଦ ବ୍ୟବହାର ଅତ୍ୟନ୍ତ ଅମୂଳକ; ବରଂ 'ସୁଘଟ' ଅର୍ଥାତ୍ ସୁନ୍ଦର, ମନମୋହନ ଅର୍ଥ ସେଠାରେ କରାଗଲେ ଶ୍ରୀମତୀଙ୍କ ମନକୁ ଆକର୍ଷଣ କରିପାରିଥିବା ରସିକ ନାଗରଙ୍କ ପ୍ରତି ଠାକୁରାଣୀଙ୍କର ଛଳକୋପ ଉକ୍ତି ଏଠାରେ ପ୍ରାସଙ୍ଗିକ ବୋଲି ମନେହୁଏ ।

ବନମାଳୀଙ୍କ ଗୀତର ତୃତୀୟ ପାଦରେ ରହିଛି —

"ଘରେ ମୋ ନଣନ୍ଦ ଅଟେ ବଡ଼ ମନ୍ଦ
ଶାଶୁ ମୋ ଅଟଇ ସପତ୍ନୀ କି" !

ଶ୍ରୀରାଧା ନିଜ ଶାଶୁଙ୍କ ପ୍ରତି ବିରକ୍ତ ଥିଲେହେଁ ତାଙ୍କୁ 'ସପତ୍ନୀ' ସହିତ ତୁଳନା କରିବା ସାମାଜିକତା ଦୃଷ୍ଟିରୁ ଆଦୌ ସ୍ପୃହଣୀୟ ନୁହେଁ । ବିଶେଷତଃ ଅଷ୍ଟାଦଶ ଶତାବ୍ଦୀର ସାମାଜିକ ବନ୍ଧନ ମଧ୍ୟରେ କବି ବନମାଳୀ ଶାଶୁକୁ 'ସପତ୍ନୀ' ବୋଲି ଲେଖିବା ମଧ୍ୟ ତାଙ୍କ ପକ୍ଷରେ ଏହା ରୁଚିଗର୍ହିତ କାର୍ଯ୍ୟ ବୋଲି ଗ୍ରହଣ କରାଯାଇପାରେ । ସେହି ଭାବ-ଗର୍ଭିକ ପଦ ରଚନାରେ ଯବନ ସଂସ୍କୃତିରେ ପ୍ରତିପାଳିତ କବି ସାଲବେଗ ନିଜ କବିତାରେ ଶାଳୀନତା ରକ୍ଷା କରି ଲେଖିଛନ୍ତି—

"ଶାଶୁ ଗାଳିଦେବ ନଣନ୍ଦ ଚଳିବ
ବୋଲିବେ ମୋ ବନ୍ଧୁ ଦୋଷରୁଣୀ କି !"

'ଗାଳିଦେବ, ଚଳିବ' (ବିରକ୍ତ ହେବ) ଆଦି ଅସମ୍ମାନସୂଚକ ଶବ୍ଦ କବି ଶ୍ରୀରାଧାଙ୍କ ମୁଖରେ ପ୍ରକାଶ କରିଛନ୍ତି । କାରଣ ଶ୍ରୀରାଧା ସେ ଦୁହିଁଙ୍କ ପ୍ରତି ମନେ ମନେ ବିରକ୍ତ ଥିବାରୁ ତାଙ୍କର ଅନୁପସ୍ଥିତିରେ 'ଗାଳିଦେବ, ଚଳିବ' ପ୍ରଭୃତି ଅସମ୍ମାନସୂଚକ ପଦ ବ୍ୟବହାର କରିଛନ୍ତି ଏବଂ 'ସୁଘଟ ନାଗର' ଆଗରେ ଛଳନାମୟୀ ଶ୍ରୀରାଧା ଛଳକୋପ ପ୍ରକାଶ କରି ନିଜ ଚରିତ୍ରରେ କଳଙ୍କ ଲାଗିବାର ଆଶଙ୍କା ପ୍ରକାଶ କରିବା ଅତ୍ୟନ୍ତ ସ୍ୱାଭାବିକ ବୋଲି ମନେହୁଏ ।

'ଆହେ ଗିରିଟେକା' ପଦର ଶେଷରେ କବି ବନମାଳୀ 'ତୁମ୍ଭଲାଗି ନ ଆସିବ ଏଣିକ' କହିବା ପରିବର୍ତ୍ତେ ସାଲବେଗଙ୍କ ରଚନାରେ 'ତୋର ଯୋଗୁଁ ନାଶ ମୁହିଁ ଯିବି କି' ପଦ ଅଧିକ ସମୀଚୀନ । କାରଣ 'ଗିରିଗୋବର୍ଦ୍ଧନଧାରକୋଷ୍ଟି' ରୂପେ ଶ୍ରୀକୃଷ୍ଣଙ୍କ ଚରିତ୍ରର ଯେଉଁ ମହନୀୟତା ଗୋକୁଳଧାମରେ ପ୍ରସ୍ତୁତ ହୋଇଛି, ଶ୍ରୀରାଧାଙ୍କ ସହିତ କଞ୍ଜାଳକାରି ରୂପେ ତାଙ୍କ ନାମରେ ଯେଉଁ ଦୁର୍ନାମ ରଟିବ, ତାହା ହେତେ ଗୁରୁତର ଆକାର ଧାରଣ କରିବ ନାହିଁ; ବରଂ ସେହି ଅପରାଧରେ 'ଶ୍ରୀରାଧା କୁଳଭ୍ରଷ୍ଟାଣୀ' ରୂପେ ମୃତ୍ୟୁତୁଲ୍ୟ ଯନ୍ତ୍ରଣା ଭୋଗ କରିବେ । ତେଣୁ ସେ ନିଜର କାକୁତିମିନତି ପ୍ରକାଶ କରିବା ସ୍ୱାଭାବିକ ।

ବନମାଳୀଙ୍କ ରଚନାରେ 'ନନ୍ଦ ମହାଙ୍କ ପୁଅ ଏଡ଼େ ବଡ଼ ଦେଖିଥାଅ ଗୋପ ଗଉଡ଼ୁଣୀକି' ଉକ୍ତି ରହିଛି । ଏ ପ୍ରକାର 'ଡରାଣ' ଅପେକ୍ଷା ସାଲବେଗଙ୍କ ରଚନାରେ ଥିବା—

"ଏହି ଗୋପପୁରେ କଂସ ରାଜା ଡରେ
ସେ କଥା ତୋହର ମନେନାହିଁ କି !"

ପ୍ରଭୃତି ଧମକ ବରଂ ଯୁକ୍ତିଯୁକ୍ତ ବୋଲି ମନେହୁଏ । ଏହା ବଦଳରେ 'ପୂତନାବଧ' ଓ 'ସଙ୍ଗେ ଆଣିଥିବ ସଖୀଶ୍ରେଣୀକି' ପ୍ରଭୃତି ବନମାଳୀଙ୍କ ରଚନାରେ ଥିବା 'ଧମକ' ଆଦୌ ପ୍ରାସଙ୍ଗିକ ବୋଲି ମନେହୁଏ ନାହିଁ ।

ଶେଷ ପଦରେ —'ବୋଲେ ବନମାଳୀ ଶୁଣ ଠାକୁରାଣୀ ନିରାଶ ନକର ବେନୁ-ପାଣିକି' ବନମାଳୀଙ୍କ ଉକ୍ତି ଭକ୍ତକବିଙ୍କର ଭକ୍ତିଭାବର ପରିଚାୟକ ନୁହେଁ । ବରଂ ଏହା ପରିବର୍ତ୍ତେ ସାଲବେଗ ଜଣେ ଅଦର୍ଶ କୃଷ୍ଣଭକ୍ତରୂପେ ପ୍ରଭୁଙ୍କଠାରେ ଗୁରୁତ୍ୱ ଆରୋପ କରି ଶ୍ରୀରାଧାଙ୍କୁ କହିଛନ୍ତି--'ନିରାଶ ନ କର କମ୍ବୁପାଣିକି' ।

ଶ୍ରୀରାଧାଙ୍କ ଦୃଷ୍ଟିରେ 'ସୁଘଟ ନାଗର' ଶ୍ରୀକୃଷ୍ଣ ଜଣେ ପ୍ରେମିକ ହୋଇଥିଲେ ହେଁ ଭକ୍ତକବିଙ୍କ ପକ୍ଷରେ ସେ ହେଉଛନ୍ତି 'କମ୍ବୁପାଣି'; ଅର୍ଥାତ୍ 'ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ' ସ୍ୱୟଂ ବିଷ୍ଣୁ । ତେଣୁ ତାଙ୍କୁ ନିରାଶ ନ କରିବା ଲାଗି ଭକ୍ତକବି ଶ୍ରୀରାଧା ଠାକୁରାଣୀଙ୍କ ଆଗରେ ନିବେଦନ ଜଣାଇଛନ୍ତି । ଏପରି ନିବେଦନ ମଧ୍ୟ ଦୃଢ଼ ଭକ୍ତିଭାବର ପରିଚାୟକ । ଏହି ପରିପ୍ରେକ୍ଷୀରେ କବି ବନମାଳୀଙ୍କ 'ମୁରଲୀ ତୋରେ ଶରଣ ଗଲି' ଆଦି କେତୋଟି କବିତା ସାଲବେଗଙ୍କ 'ବଂଶୀଗୀତ'ର ଅବଲମ୍ବନରେ ରଚିତ ବୋଲି ସହଜରେ ଧାରଣା କରିହୁଏ ।

ଏହି ପ୍ରସଙ୍ଗରେ ଏଠାରେ 'ବନମାଳୀ ପଦ୍ୟାବଳୀ'ରେ ପ୍ରଦତ୍ତ "ଜଗନ୍ନାଥ ହୋ କିଛି ମାଗୁନାହିଁ ମୁଁ ତୋତେ" ସମ୍ବନ୍ଧରେ ଆଲୋଚନା କରାଯାଇପାରେ । ଭକ୍ତକବିଙ୍କ ରଚିତ 'ପଦ୍ୟ'ଗୁଡ଼ିକୁ ବାବାଜି ବୈଷ୍ଣବଚରଣ ଦାସ ଏକାଠି କରି ପଦ୍ୟାବଳୀ ଆକାରରେ ପ୍ରକାଶ କରିଥିବାରୁ, ସେ ପ୍ରସ୍ତୁତ ପଦ୍ୟଟିକୁ ମଧ୍ୟ ବନମାଳୀଙ୍କ ନାମରେ ଭଣିତା ହୋଇଥିବାର କୌଣସି ସୂତ୍ରରୁ ଜାଣି ତାହାକୁ ପଦ୍ୟାବଳୀରେ ଉଲ୍ଲେଖ କରିଛନ୍ତି ; କିନ୍ତୁ ପ୍ରୋକ୍ତ ଗୀତଟି

ସାଲବେଗଙ୍କ ନାମରେ ଭଣିତା ଥିବାର ମଧ୍ୟ ଜଣାଯାଏ । ନୟାଗଡ଼ର ଓଡ଼ଗାଁ ଅଞ୍ଚଳରେ ଜଣେ ଗାୟକଙ୍କଠାରୁ ଗୀତଟିକୁ ନିମ୍ନଲିଖିତ ମତେ ଭଣିତ ଥିବାର ଶୁଣିବାକୁ ମିଳେ ।

ଶେଷ ପଦ—

"ମୋ ହସ୍ତ ଅଙ୍ଗୁଳି ରାମ-ବନମାଳୀ ଜପୁଥାଉ ହରେକୃଷ୍ଣ ।
କହେ ସାଲବେଗ ଜାତିରେ ଯବନ ତୋ ଅର୍ଥେ ଯାଉ ଏ ପ୍ରାଣ ॥"

'ସୁଚିତ୍ର ରାମାୟଣ' ଶୀର୍ଷକ କାବ୍ୟରୁ ଜଣାଯାଏ ଯେ, ବନମାଳୀ ପୁରୀ ଦୋଳମଣ୍ଡପ ସାହିର ଅଧିବାସୀ ଥିଲେ; ତାଙ୍କ ପିତାଙ୍କର ନାମ ହରି ଏବଂ ସେ ବୀରକେଶରୀ ଦେବଙ୍କ ରାଜତ୍ୱରେ ଅର୍ଥାତ୍ ଖ୍ରୀ: ଅ: ୧୭୫୪ରେ ପୁସ୍ତକଟି ରଚନା କରି, ନିଜ ପିତାଙ୍କ ନାମରେ ଅର୍ପଣ କରିଥିଲେ ।

"ଘର କ୍ଷେତ୍ରବର ଦୋଳମଣ୍ଡପ ସାହିରେ,

ଜନମ କରଣକୁଳେ ଅଟଇ ମହୀରେ ।" "ନାମ ମୋର ବନମାଳୀ ପିତା ନାମ ହରି ।" ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, କବି ବନମାଳୀଙ୍କ ଜନ୍ମ ପୁରୀ ଦୋଳମଣ୍ଡପ ସାହିର ଏକ କରଣକୁଳରେ ହୋଇଥିଲା । ଯାହାଙ୍କର ବାସସ୍ଥାନ 'ପଞ୍ଚକୋଶୀ' ମଧ୍ୟରେ ସେ ଆଉ କାହିଁକି 'ବଡ଼ଦାଣ୍ଡ'ର 'ଶରଧାବାଲି'ରୁ ହାତେ ନିଜ ପାଇଁ ବାଞ୍ଛା କରନ୍ତେ !

କିନ୍ତୁ ଯବନ ପିତା ଓ ବ୍ରାହ୍ମଣୀ ମାତାର ସନ୍ତାନ ସାଲବେଗଙ୍କ ପକ୍ଷରେ ପୁରୀରେ ବସବାସ କରି ରହିବା ଆଦୌ ସମ୍ଭବ ନ ଥିଲା । ବିଶେଷତଃ ସେ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ବିଶ୍ୱାସ ପାତ୍ର ନଥିବାରୁ, ସେ ଯୁଗରେ କେହି ତାଙ୍କ ପ୍ରତି ଆସ୍ଥା ସ୍ଥାପନ କରି ସାହାଯ୍ୟ କରିନଥିବେ । ତେଣୁ ତାଙ୍କର ପକ୍ଷରେ ଶ୍ରୀଜଗନ୍ନାଥଙ୍କୁ 'ଶରଧା ବାଲିରୁ ହାତେ' ମାଗିବା ଅତ୍ୟନ୍ତ ସମୀଚୀନ । ବିଶେଷତଃ 'ମୋହି ଯିବା ଯାଏଁ ନନ୍ଦ-ଘୋଷେ ଥିବି ରହି' ରୂପକ କିମ୍ବଦନ୍ତୀ ତଥା 'ଶରଧାବାଲି'ରେ ସାଲବେଗଙ୍କ ସମାଧି ଦେଖିଲେ, କାତର ନିବେଦନ ('କିଛୁ ମାଗୁନାହିଁ ମୁଁ ତୋତେ' ଏବଂ 'ମାଗୁ ନାହିଁ ଧନ ମାଗୁନାହିଁ ଜନ ମାଗୁଛି ଶରଧାବାଲିରୁ ହାତେ') ଯୁକ୍ତ ପଦ୍ୟ ତାଙ୍କର ତୁଣ୍ଡରୁ ବାହାରିଥିବାର ଅନୁମାନ ଅସ୍ୱାଭାବିକ ନୁହେଁ ।

ସେହିପରି ଭାବରେ ଆଲୋଚନା କରିବାକୁ ଗଲେ ଜଣାଯାଏ ଯେ, କବି ଗୋପାଳକୃଷ୍ଣଙ୍କର 'ଜଳ ଆଣି ଯାଉଥିଲି' ପ୍ରଭୃତି କେତୋଟି ଗୀତ ସାଲବେଗଙ୍କ ଭଜନର ଭାବଧାରାରେ ରଚିତ ବୋଲି ମନେ ହୁଏ ।

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ସାଲବେଗ ଜନ୍ମଗ୍ରହଣ କରି ଜଣେ ଭକ୍ତକବି ଭାବରେ ଶ୍ରୀଜଗନ୍ନାଥ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଥିଲେ । ସେ ଯେତେବଡ଼ ଭକ୍ତ ହୁଅନ୍ତୁ ପଛକେ, ସମାଜର କୁଟିଳ କଟାକ୍ଷ ତାଙ୍କର ପ୍ରଗତିପଥରେ ନିଶ୍ଚିତ ଭାବରେ ବାଧକ ହୋଇଥିବ ! ତେଣୁ ସେ ଯେଉଁ ପଦ୍ୟାବଳୀ ବା ଭଜନଗୁଡ଼ିକ ରଚନା କରୁଥିଲେ, ସେ ଗୁଡ଼ିକ ଯେତେ ଭାବଗର୍ଭକ ହେଉ ପଛକେ, ରକ୍ଷଣଶୀଳ ଲୋକମାନେ ତାହା ଆଗ୍ରହର ସହିତ

ଗାନ କରୁ ନ ଥିବେ ! ସାଧାରଣ ଲୋକମାନେ ମଧ୍ୟ ସମାଜପତିଙ୍କ ଭୟରେ ଭରସି କରି ଗାନ କରିବାକୁ ସାହସ କରୁନଥିବେ । କେଉଁ ଅବା ସେହି ପଦ୍ୟଗୁଡ଼ିକୁ ଅନ୍ୟ କବିଙ୍କ ନାମରେ ଭଣିତା କରି ଗାନ କରୁଥିବା ଅସମ୍ଭବ ନୁହେଁ । ଅନ୍ୟ କେତେକଙ୍କ କ୍ଷେତ୍ରରେ ଭକ୍ତମାନେ ସାଲବେଗଙ୍କ ରଚନାରେ ପଦେ ଦୁଇପଦ ମିଶାଇ ଦେଇ କିମ୍ବା ଛାଡ଼ିଦେଇ ଗାନକରି ଆନନ୍ଦ ଅନୁଭବ କରୁଥିବେ । କାରଣ ତା' ହୋଇ ନଥିଲେ, ସାଲବେଗଙ୍କ ଗୋଟିଏ ଗୋଟିଏ ରଚନା ବିଭିନ୍ନ ରୂପରେ ମିଳନ୍ତା କିପରି ?

ସାଲବେଗ ସପ୍ତଦଶ ଶତାବ୍ଦୀର କବି ହୋଇଥିଲେ ମଧ୍ୟ ତାଙ୍କ ରଚନାଗୁଡ଼ିକୁ ସାଇତିରଖି ଗୁରୁପରମ୍ପରା କ୍ରମେ ଗାନ କରିବାର ସୁବିଧା ତାଙ୍କର ନ ଥିଲା । କାରଣ ସେ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟ ବା ମଠର ଅଧିକାରୀ ନଥିଲେ କିମ୍ବା ହିନ୍ଦୁ ସନ୍ଥମାନଙ୍କ ପରି ସମାଜରେ ତାଙ୍କର ଆଦର ନଥିଲା । ତେଣୁ ତାଙ୍କ ରଚନାଗୁଡ଼ିକ ଅନ୍ୟ କବିମାନଙ୍କ ରଚନାରେ ମିଶିଯିବାରେ ଅସ୍ୱାଭାବିକତା ନଥିଲା । ଅନ୍ୟପକ୍ଷରେ ସେ ପୂର୍ବବର୍ତ୍ତୀ କବି ହୋଇଥିବାରୁ ପରବର୍ତ୍ତୀ କବିମାନେ ସାଲବେଗଙ୍କ କବିତାର ଅବଲମ୍ବନରେ ସ୍ୱ ସ୍ୱ ରଚନା କରିଥିବା ଆଦୌ ଅସମ୍ଭବ ନୁହେଁ କିମ୍ବା ତାଙ୍କ ରଚନାଟିକୁ ସାମାନ୍ୟ ପରିବର୍ତ୍ତନ କରି ନିଜ ନାମରେ ଭଣିତା କରିଦେବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । କାଳିଦାସ, ଭବଭୂତି, ଶ୍ରୀହର୍ଷଙ୍କ ରଚନାର ଅନୁକରଣରେ ପରବର୍ତ୍ତୀ କବିମାନେ କବିତା ଲେଖିଥିବାର ପ୍ରମାଣ ରହିଛି । କେବଳ ଆମ ଦେଶରେ ଏପରି ଘଟୁଥିଲା ତାହାନୁହେଁ, ସମଗ୍ର ବିଶ୍ୱରେ ଏହି ନୀତି ଅନୁସୃତ ହୋଇଛି ।

ଭକ୍ତକବି ବନମାଳୀ ସାଲବେଗଙ୍କ ସମୟର ପ୍ରାୟ ଶହେବର୍ଷ ପରେ ଭକ୍ତକବି ରୂପେ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେ ମଧ୍ୟ ସାଲବେଗଙ୍କ ପରି ପୁରୀରେ ରହୁଥିଲେ ଏବଂ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ଲୀଳାମୂଳକ କବିତା ରଚନାରେ ପ୍ରବୃତ୍ତ ହୋଇଥିଲେ । ସେ ଶହେ ବର୍ଷ ତଳର କବି ହୋଇଥିବାରୁ ତାଙ୍କ ରଚନାରେ ସାଲବେଗଙ୍କ ରଚନାର ପ୍ରଭାବ ପଡ଼ିବା ଆଦୌ ଅସ୍ୱାଭାବିକ ନୁହେଁ ।

ଉଭୟ ସାଲବେଗ ଓ ବନମାଳୀଙ୍କ ରଚନାକାଳର ଶହ ଶହ ବର୍ଷ ପରେ ଆମକୁ ବିଭିନ୍ନ ତାଳପତ୍ର ପୋଥିରୁ ସେ ଦୁହିଁଙ୍କ ରଚନାର ଯେଉଁ ପ୍ରମାଣ ମିଳୁଛି, ଆମେ ତାହାରି ଉପରେ ଆଲୋଚନା କରୁଥାଉଁ । ଉଭୟ ଭକ୍ତକବି ଏବଂ ଉଭୟଙ୍କ ରଚନା ଓଡ଼ିଶାର ଭକ୍ତ ଜନତାର ହୃଦୟକୁ ସ୍ପର୍ଶ କରୁଛି । ତେଣୁ କାହାରି ସମ୍ବନ୍ଧରେ ସତ୍ୟକୁ ଗୋପନ କରି ଅସତ୍ୟର ପ୍ରଚାର କରିବା ବଙ୍କତାର ପରିଚାୟକ ନୁହେଁ । ଉପଲବ୍ଧ ତଥ୍ୟକୁ ପାଠକ ପାଠିକାଙ୍କ ଆଗରେ ପରିବେଷଣ କରିବା ଆଲୋଚକର ଧର୍ମ । ତାହାହିଁ ସାଲବେଗଙ୍କ ସମ୍ବନ୍ଧରେ ଋପାୟିତ ହୋଇଛି ।

ସାଲବେଗ ଶ୍ରୀକୃଷ୍ଣଲୀଳାର ବର୍ଣ୍ଣନା କରି ଯେଉଁ କେତୋଟି ପଦ୍ୟ ରଚନା କରିଛନ୍ତି, ସେଗୁଡ଼ିକ ଭାବ, ଭାଷା ଓ ସଙ୍ଗୀତର ଶୈଳୀ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟ ଜଗତରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ । ଆଜକୁ ପ୍ରାୟ ତିନିଶତ ବର୍ଷ ପୂର୍ବେ ଯବନ ସଂସ୍କୃତିରେ ଲାଳିତ ପାଳିତ

ଜଣେ କବିଙ୍କ ଲେଖନୀରୁ ଏତେ ମନୋରମ ତଥା ଲୋକପ୍ରିୟ ପଦ୍ୟାବଳୀ ନିଃସୃତ ହେବା, ବାସ୍ତବିକ ଓଡ଼ିଆ ସାହିତ୍ୟ ପକ୍ଷରେ କମ୍ ଗୌରବର ବିଷୟ ନୁହେ । ତେଣୁ ତାଙ୍କ ସମ୍ବନ୍ଧରେ ଆକ୍ଷେପମୂଳକ ଆଲୋଚନା ହେବା ଆଦୌ ସ୍ପୃହଣୀୟ ନୁହେ ।

## ସାଲବେଗଙ୍କ ଶ୍ରୀଜଗନ୍ନାଥ ଭଜନ

କିମ୍ବଦନ୍ତୀରୁ ଜଣାଯାଏ ଯେ, ଭକ୍ତ ସାଲବେଗ ରୋଗମୁକ୍ତ ହେବା ପରେ ସନ୍ନ୍ୟାସ ଜୀବନ ଯାପନ କରିଥିଲେ ଏବଂ ପବିତ୍ର ସାଧୁମାନଙ୍କ ସଙ୍ଗରେ ଜୀବନକୁ ସରସ କରିବା କାମନାରେ ପ୍ରଥମେ ପୁରୁଷୋତ୍ତମ କ୍ଷେତ୍ରକୁ ଚାଲିଯାଇଥିଲେ । ଏହି କିମ୍ବଦନ୍ତୀର ସତ୍ୟତା ସମ୍ବନ୍ଧରେ ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତିରସାମୃତ'ରେ ଅଛି—

"ପୁତ୍ର ବୋଇଲା ସତ୍ୟ ଏହି । ପବିତ୍ର କଲୁ ମୋର ଦେହି ॥
ମୁହିଁ ସନ୍ନ୍ୟାସୀ ହୋଇବଇଁ । ସଂସାର ସୁଖ ତେଜିଲଇଁ ॥
ଏମନ୍ତ କହି ବସ୍ତ୍ର ଚିରି । ଡୋର କୌପୀନ ଆଶ୍ରେ କରି ॥
ମାତାଙ୍କୁ ଦଣ୍ଡବତ କଲା । ଶୁଣ ଗୋ ଜନନୀ ବୋଇଲା ॥
ଏମନ୍ତ ପ୍ରଭୁ ଥାଉଁ ଥାଉଁ । ଯେ ଆନେ ଅଶ୍ରେ କରେ ଆଉ ॥
ଧିକ ବୋଲିବା ତା ଜୀବନ । ଏ ଦେହେ କିସ ପ୍ରୟୋଜନ ॥
କେବଳ ଭଜୁଥାଅ ହରି । ତୋ ମନେ ସନ୍ଦେହ ନ କରି ॥
ଏମନ୍ତ କହି ଅନୁକୂଳ । କରି ଚଳିଲା ନୀଳାଚଳ ॥"*

ଭକ୍ତ ସାଲବେଗ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ଲୟ କରି ତାଙ୍କରି ଶ୍ରୀଚରଣତଳେ ନିଜକୁ ଅର୍ପଣ କରିଦେଇଥିବାରୁ, ତାଙ୍କୁ ଜଗତ୍ କୃଷ୍ଣମୟ ଦେଖାଗଲା । ସେ ଶ୍ରୀଜଗନ୍ନାଥ-ଧାମରେ ରହି ସାରା ଜୀବନ ଭଜନ କୀର୍ତ୍ତନ କରିଥିଲେ ହେଁ, ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣରୂପେ ଆରାଧନା କରି ପ୍ରଥମାବସ୍ଥାରେ ପଦ୍ୟମାନ ରଚନା କଲେ । ଅବଶ୍ୟ ଜଣେ ମୋଗଲର ପୁତ୍ର ହୋଇଥିବାରୁ ଯେତେ ଭକ୍ତିଭାବାପନ୍ନ ହୋଇଥିଲେ ହେଁ, ତତ୍କାଳୀନ ହିନ୍ଦୁମାନେ ସାଲବେଗଙ୍କୁ ଶ୍ରୀମନ୍ଦିର ଭିତରକୁ ଛାଡ଼ୁନଥିଲେ । ସେହି କାରଣରୁ ତାଙ୍କ ମନରେ ଗଭୀର ଦୁଃଖ ଜାତ ହୋଇଥିଲା । ତେଣୁ ସେ ଗଭୀର ଦୁଃଖରେ ସହିତ ଲେଖିଛନ୍ତି—

"କାଳିଆ ଧନ, ତୋ ଲାଗି ଯାଉ ଏ ଜୀବନ,
ବାରେ ନ ଦେଲୁ ଦରଶନ ।"

× × ×

ଭକ୍ତକବିଙ୍କର ମନସ୍କାମନା ପୂରଣ ହୋଇଛି ରଥଯାତ୍ରାରେ । ସେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ରଥରେ ଦର୍ଶନ କରି ତାଙ୍କ ଶୋଭା ବର୍ଣ୍ଣନା କରି ଭଜନ ରଚନା କରିଛନ୍ତି—

---

* ଦାର୍ଢ୍ୟତା ଭକ୍ତିରସାମୃତ, ସପ୍ତବିଂଶ ଅଧ୍ୟାୟ

"ଅଣସର ଘରେ ଥିଲ ଆଜ ବାହାର ହେଲ
ଟି ଭଙ୍ଗୀ ଭଙ୍ଗୀ କରି ଗୁହୁଁଛ ।
ଶ୍ରୀଭୁଜେ ଭୁଜ ପେଲି ମତ୍ତ ଗଜ ପ୍ରାୟେ ଟୁଲି,
ମହାପାତକ-ମାନ ଦହୁଛ ।।
× × ×
କହେ ସାଲବେଗ ହୀନ ଏ ତ ଜଗମୋହନ,
ଜଗମୋହନ ରୂପ ଧରିଛ ।।"

ରଥରେ ଶ୍ରୀଜଗମୋହନଙ୍କ ଅପୂର୍ବ ବେଶଛଟା ଅବଲୋକନ କରି ଭକ୍ତକବିଙ୍କର କବିତାର ଧାର ଶତମୁଖରେ ଝରିପଡ଼ିଛି । ହେ ଚିରଈପ୍‌ସିତ ପ୍ରଭୁଙ୍କ ଶ୍ରୀମୁଖ ଦର୍ଶନ କରି ଭାବରେ ବିହ୍ୱଳ ହୋଇ ଲେଖିଛନ୍ତି—

"ଏ ନବଘନ କଳା ବଦନ ଲୁଚିଯାଇଛୁ ।
ପିନ୍ଧିଛୁ ପାଟପତନୀ ଜଡ଼ିଛୁ ରତନ,
କଳାମେଘେ ବିଜୁ ଯେହ୍ନେ ମାରେ ଘନ ଘନ ।।
× × ×
କହେ ସାଲବେଗ ହୀନ ମୁଁ ପତିତ ହୀନ,
କଲେଟି କଲେଟି ସେବିଅଛୁ ଶ୍ରୀରଙ୍ଗାଚରଣ ।।"
× × ×
"ଗୁଲ ସଖି ଆମ୍ଭେ ଦର୍ଶନ କରିବା ନୀଳଗିରି କାଳିଆକୁ,
କେଉଁ ସୁରପତି ବେଶ କରିଅଛି ଗିରିବର-ଢୋଳିଆକୁ ।
ସେ ଯେ ଶ୍ରୀମୁଖ ତୋରା,
ଶିରେ ସୁନା ସୂତା କେରା କେରା ।।
ଶ୍ୱେତପଦ୍ମ ଆଖି ଦେଖିଲେ ଗୋ ସଖି ଚନ୍ଦ୍ର କି ବାହୁଡ଼େ ଆଉ,
କର୍ଣ୍ଣରେ କୁଣ୍ଡଳ ଦିଶେ ଝଲମଲ କଉସ୍ତୁଭ ଦାଉ ଦାଉ ।
ସେ ଯେ ହୃଆ ତୃପାଳ,
ମିଶାମିଶି ବାଘନଖି ଫଳ ।।"

ରଥରେ ଜଗମୋହନଙ୍କ ଦର୍ଶନ କରିବା ପରେ ଭକ୍ତ ସାଲବେଗଙ୍କ ମନୋକାମନା ପୂର୍ଣ୍ଣ ହୋଇଯାଇଛି । କାରଣ ବାହାରଯୋଗେ ସେ ଶ୍ରୀମନ୍ଦିରକୁ ଯାଇନପାରି ତାଙ୍କ ମନରେ ଯେଉଁ ଗଭୀର ଦୁଃଖ ଥିଲା, ତାହା ଦୂର ହୋଇଯାଇଛି । ମହାପାତକ-ନାଶନକାରୀ ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ସାଲବେଗଙ୍କ ମନରେ ଅପୂର୍ବ ଦମ୍ଭ ଆସି ପ୍ରବେଶ ହୋଇଛି ଏବଂ ସେ ଅଶେଷ ଜନ୍ମର ପାପତାପରୁ ମୁକ୍ତ ହୋଇଯିବେ ବୋଲି ତାଙ୍କ ମନରେ ଧାରଣା ଜନ୍ମିଛି । ତେଣୁ ସେ ଲେଖିଛନ୍ତି—

"ଆହେ ରାମଚନ୍ଦ୍ର !
ପ୍ରଭୁ ବିଜେ କରିଅଛ ନୀଳଗିରି,
ପ୍ରଭୁ ଦର୍ଶନ ମାତ୍ରକେ ଯିବି ତରି ॥"

ତାପରେ ଶ୍ରୀକ୍ଷେତ୍ରର ମହିମା, ସେଠାକାର ଅଧିବାସୀଙ୍କ ସୌଭାଗ୍ୟ, ସାଧୁସନ୍ଥଙ୍କ ସଙ୍ଗତି, ବିଶେଷତଃ ଶ୍ରୀମନ୍ଦିରର ମହାପ୍ରସାଦ ପ୍ରତି ତାଙ୍କ ମନରେ ଗଭୀର ଶ୍ରଦ୍ଧା ଜାତ ହୋଇଛି । ତେଣୁ ସେ ଶ୍ରୀମନ୍ଦିରକୁ ଯାଇପାରିନଥିଲେ ହେଁ, କଳ୍ପନା-ଚକ୍ଷୁରେ ମନ୍ଦିର ଭିତରର ଦୃଶ୍ୟ ଅବଲୋକନ କରିପାରିଛନ୍ତି । ଶ୍ରୀମନ୍ଦିର ସମ୍ବନ୍ଧରେ ନାନାପ୍ରକାର ପୌରାଣିକ ଆଖ୍ୟାନ ଶ୍ରବଣ କରି ତାଙ୍କ ହୃଦୟ ଭକ୍ତିରେ ଗଦ୍‌ଗଦ ହୋଇଉଠିଛି ଏବଂ ସେ ନିଜର ପାପପୂର୍ଣ୍ଣ ଜୀବନକୁ ଲକ୍ଷ୍ମୀପତିଙ୍କ ଚରଣରେ ଅର୍ପଣ କରି ଆଶ୍ୱସ୍ତ ହୋଇ ଲେଖିଛନ୍ତି—

"ଧନ୍ୟ ପୁରୁଷୋତ୍ତମକ୍ଷେତ୍ରବାସୀ
ଭାଗ୍ୟ ଥିଲେ ସାଧୁ ସଙ୍ଗେ ମିଶି ।
ଗ୍ରାସ ପୂରାଇଣ କୈବଲ୍ୟ ପାଆନ୍ତି ମିଛେ ବୋଲୁଛନ୍ତି ଏକାଦଶୀ ॥

× × ×

ରୋହିଣୀ କୁଣ୍ଡର ପାଦରଜ,
ସିଂହ ମାଡ଼ିବସିଅଛି ଗଜ ।
ସତେକି ଜୀବନ ସାଫଲ୍ୟ ଲଭିବି କାକ ପଡ଼ି ହେଲା ଚତୁର୍ଭୁଜ ।

× × ×

କହେ ସାଲବେଗ ମୂଢ଼ମତି,
ତ୍ରାହି କରିବେ ଶ୍ରୀଲକ୍ଷ୍ମୀପତି ।
ଶ୍ରୀରଙ୍ଗାଚରଣେ ପଶୁଛି ଶରଣ ତ୍ରାହି କର ଶାଳଗ୍ରାମ ମୂର୍ତ୍ତି ।"

ଭକ୍ତ ସାଲବେଗ ଉଭୟ ବାଳମୁକୁନ୍ଦ ଓ ଶ୍ରୀଜଗନ୍ନାଥଙ୍କର ଅନନ୍ୟଭକ୍ତ ହୋଇଥିବାରୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କୁ ଏକ ରୂପେ ଆରାଧନା କରିଛନ୍ତି । ଶ୍ରୀଜଗନ୍ନାଥଙ୍କୁ ଗୋପପୁରର ଗୋବତ୍ସ-ରକ୍ଷଣକାରୀ, ଗୋବର୍ଦ୍ଧନଧାରୀ ତଥା ଅଷ୍ଟମଲ୍ଲ-ନିଧନକାରୀରୂପେ ବର୍ଣ୍ଣନା କରି ନିଜ ନିଷ୍ଠଳ ଭକ୍ତିଧାରାର ପରିଚୟ ଦେଇଛନ୍ତି ।

"ଏହି ଜଗନ୍ନାଥ ଗୋପପୁରେ,
ବଛା ରଖିଥିଲେ ନନ୍ଦଘରେ ।
ଇନ୍ଦ୍ର ବିବାଦରୁ ଅଷ୍ଟମଲ୍ଲ ମାରି ଗିରି ଟେକିଥିଲେ ବାମ କରେ,
ଆହେ ଗୋପପୁରେ !"

କେବଳ ସେତିକି ନୁହେଁ, ଭକ୍ତକବି ସାଲବେଗ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନୀଳାଚଳ ତ୍ୟାଗ ପ୍ରସଙ୍ଗରେ ମଧ୍ୟ ଦୁଃଖରେ ମୂହ୍ୟମାନ ହୋଇପଡ଼ିଛନ୍ତି । ମୋଗଲ

ଶାସକଙ୍କ ଅତ୍ୟାଚାର ଫଳରେ ତତ୍କାଳୀନ ଗଜପତି ରାଜା ଶ୍ରୀମନ୍ଦିରକୁ ଯବନ ଅତ୍ୟାଚାରରୁ ରକ୍ଷା କରିବାରେ ସମର୍ଥ ନହୋଇ, ଚତୁର୍ଦ୍ଧାମୂର୍ତ୍ତିଙ୍କୁ କୌଣସି ଏକ ଗୋପନୀୟ ସ୍ଥାନରେ ଲୁଚାଇ ରଖିବାକୁ ସେବକମାନଙ୍କୁ ପରାମର୍ଶ ଦେଇଛନ୍ତି; କିନ୍ତୁ ସେବକମାନେ ଯେତେବେଳେ ଶ୍ରୀଜଗନ୍ନାଥ ଆଦି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଶଗଡ଼ରେ ବିଜେ କରାଇ ଅନ୍ୟତ୍ର ନେଇଯିବା ଲାଗି ସଜ କରିଛନ୍ତି, ତାହା ଭକ୍ତ ସାଲବେଗଙ୍କ ପକ୍ଷରେ ଅସହ୍ୟ ହୋଇଉଠିଛି । ସେ ଅସହାୟ ହୋଇ ଗାଇଉଠିଛନ୍ତି—

"କେଣେ ଘେନିଯାଉଛ ଶ୍ରୀ ଜଗନ୍ନାଥଙ୍କୁ,
ଆମ୍ଭେ ଦର୍ଶନ କରିବୁ କାହାକୁ ?

× × ×

ବଡ଼ଦେଉଳୁ ବାହାରି, ଶଗଡ଼ରେ ବିଜେ କରି
ରେଣୁ ଯେ ପଡ଼ୁଥିବ ଶ୍ରୀମୁଖକୁ ।
କହଇ ସାଲବେଗ ନିର୍ମାଲ୍ୟ କାହୁଁ ହେବ,
ଧିକ ଧିକ ଆମ୍ଭ ଜୀବନକୁ ।"

ପରିଶେଷରେ ଭକ୍ତ ସାଲବେଗ ଶ୍ରୀକ୍ଷେତ୍ରରେ ବାସକରି ପ୍ରଭୁଙ୍କ 'ଛଡ଼ା ତୁଳସୀ' ପ୍ରସାଦ ପାନ କରିବା ସଙ୍ଗେ ସଙ୍ଗେ ଶ୍ରୀକ୍ଷେତ୍ରବାସୀ ରୂପେ ଜନ-ସମାଜରେ ପରିଚିତ ହୋଇ ଜୀବନକୁ ସାର୍ଥକ କରିବାର କାମନା କରିଛନ୍ତି । କାରଣ ତାଙ୍କ ମନରେ ଦୃଢ଼ ଧାରଣା ହୋଇଛି ଯେ, 'କାଳଗଜକୁ ସିଂହ' ସଦୃଶ ଶ୍ରୀଜଗନ୍ନାଥ ମହାପ୍ରଭୁ ଆର୍ତ୍ତ ଜନର ଦୁଃଖ ନିଶ୍ଚୟ ଦୂର କରି ପାଦପଦ୍ମରେ ଶରଣଦାନ କରିବେ ।

"ଶ୍ରୀପୁରୁଷୋତ୍ତମ ରହଣି କରିବା, ଖାଇବା ଛଡ଼ା ତୁଳସୀ
କହେ ସାଲବେଗ ସିଂହଦ୍ୱାରଠାରେ ହୋଇଥିବା କ୍ଷେତ୍ରବାସୀ ॥
ସେ ଯେ ଆର୍ତ୍ତତ୍ରାଣ,
କାଳଗଜକୁ ସିଂହ ପ୍ରମାଣ
ଗୁଳି ଗୁଳି ପଶିବା ଶରଣ ।"

ଶ୍ରୀକ୍ଷେତ୍ରରେ ଦୀର୍ଘକାଳ ବାସ କରିବା ମଧ୍ୟରେ ଭକ୍ତ ସାଲବେଗ ମହାପ୍ରଭୁଙ୍କ ବିଭିନ୍ନ ଅବତାରର ଲୀଳାମାନଙ୍କ ସମ୍ବନ୍ଧରେ ଅବଗତ ହୋଇଛନ୍ତି । କେଉଁ ଅବତାରରେ ପ୍ରଭୁ କେଉଁ ଆର୍ତ୍ତ ଭକ୍ତର ଗୁହାରି ଶୁଣିଛନ୍ତି, ତାହାର ସମ୍ୟକ୍ ଆଲୋଚନା କରି ସେ ବିଭିନ୍ନ ପଦ୍ୟ ମାଧ୍ୟମରେ ତାହା ପ୍ରକାଶ କରିଛନ୍ତି ।

"ଗଜରାଜ ପାଣି ଖାଉଁ ଧଇଲା କୁମ୍ଭୀର,
ଆତଙ୍କେ ଡାକିଲା ଗଜ ରଖ ଚକ୍ରଧର ॥
କୁରୁସଭା ତଳେ ଯନେ ଡାକିଲା ଦ୍ରୌପଦୀ,
ମାନ ଉଦ୍ଧାରଣ ପ୍ରଭୁ ଅଟ ଦାଶରଥି ॥

ମୃଗୁଣୀ ଯେ ସ୍ତୁତି କଲା ଆତଙ୍କ କାଳରେ,
ଆତଙ୍କନାଶନ ପ୍ରଭୁ ରଖିଲ ସେଠାରେ ।।
ହିରଣ୍ୟ ଯେ ଗର୍ବ କଲା ନଖେ ବିଦାରିଲ,
ପ୍ରହ୍ଲାଦ ଭକ୍ତି ଯେଣୁ ସ୍ୱର୍ଗେ ଇନ୍ଦ୍ର କଲ ।।"

× × ×

ମୋତେ ସେହି ରୂପ ଦେଖାଅ ହରି ।

× × ×

ଯେଉଁ ରୂପେ ବଳିଦ୍ୱାରେ ହେଲ ଭିକାରି ।
ତି ପାଦରେ ଦାନ ନେଇ
ବଳିକି ପାତାଳେ ଥୋଇ,
ଡେଣ୍ଟିକରି ଶୁକ୍ର ମନ୍ତ୍ରୀ ନୟନରେ କୁଶ ଭରି ।।"

ସାଲବେଗଙ୍କ ଶ୍ରୀଜଗନ୍ନାଥ ପଦ୍ୟାବଳୀଗୁଡ଼ିକ ଅତ୍ୟନ୍ତ ହୃଦୟସ୍ପର୍ଶୀ ତଥା ଭକ୍ତି ଭାବରେ ଓତପ୍ରୋତ ହୋଇଥିଲେ ହେଁ "ଆହେ ନୀଳଶୈଳ ପ୍ରବଳ ମତ୍ତବାରଣ" ପଦ୍ୟଟି ଜନସାଧାରଣଙ୍କର ଆଦରଣୀୟ ଗୀତ ରୂପେ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳରେ ପ୍ରସିଦ୍ଧି ଲାଭ କରିଛି । ବାସ୍ତବିକ ଦେଖିବାକୁ ଗଲେ କବି ସାଲବେଗ ଯେପରି ଆନ୍ତରିକତାର ସହିତ ଏହି ପଦ୍ୟରେ ଭାବୋଚ୍ଛ୍ୱାସର ଅପୂର୍ବ ହିଲ୍ଲୋଳ ଖେଳାଇଛନ୍ତି ତା'ର ପଟାନ୍ତର ନାହିଁ । ଏଥିରେ କବିଙ୍କ ମନର ଅଭିମାନ ଅଜାଡ଼ି ହୋଇ ପଡ଼ିଛି ପ୍ରଭୁଙ୍କ 'ଶ୍ରୀରଙ୍ଗାଚରଣ' ତଳେ । କବି ବହୁ ପୌରାଣିକ ଆଖ୍ୟାୟିକାର ଦୃଷ୍ଟାନ୍ତ ଦେଇ, ପ୍ରଭୁଙ୍କ କରୁଣା ରୂପକ ମତ୍ତବାରଣ ଦ୍ୱାରା ନିଜ ଜୀବନର 'ଆର୍ତ୍ତି ରୂପକ ନଳିନୀବନ'କୁ ଦଳନ କରିବାର ପ୍ରୟାସ କରିଛନ୍ତି । ପ୍ରଭୁଙ୍କଠାରେ ଭକ୍ତର କରୁଣ ନିବେଦନ ସମନ୍ୱୟରେ ରସାନୁକୂଳ ଭାଷା ଏହି ପଦ୍ୟରେ ସଂଯୋଜିତ ହୋଇ 'ମଣିକାଞ୍ଚନ' ସଂଯୋଗ କରାଇପାରିଛି । ବାସ୍ତବିକ ଭକ୍ତ କବିଙ୍କର ଏହା ଏକ ଅନବଦ୍ୟ ରଚନା ।

ଭକ୍ତ ସାଲବେଗ ଜଣେ ପ୍ରସିଦ୍ଧ କୃଷ୍ଣଭକ୍ତ ଭାବରେ ଶ୍ରୀକୃଷ୍ଣଙ୍କ ବିଭିନ୍ନ ଲୀଳାର ବର୍ଣ୍ଣନା କରି ଅନେକ ପଦ୍ୟ ରଚନା କରିଛନ୍ତି ଏବଂ ଶ୍ରୀପୁରୁଷୋତ୍ତମକ୍ଷେତ୍ରରେ ଦୀର୍ଘଦିନ ଅବସ୍ଥାନ କରିବା ଫଳରେ ସେ ଶ୍ରୀଜଗନ୍ନାଥଙ୍କ ଲୀଳା, ବିଶେଷତଃ ରଥଯାତ୍ରାରେ 'ଚକାଡ଼ୋଳା'ଙ୍କ ଶୋଭା ବର୍ଣ୍ଣନା କରି କେତୋଟି ଉପାଦେୟ ପଦ୍ୟ ଲେଖିଛନ୍ତି; କିନ୍ତୁ ମହାପ୍ରଭୁଙ୍କ ଅବତାର ମଧ୍ୟରେ, ଶ୍ରୀରାମ ଅବତାରର ବିଶେଷତ୍ୱ ଥିଲେ ହେଁ, ସାଲବେଗଙ୍କ ରଚନାରେ ଦୁଇ ତିନିଟି ଶ୍ରୀରାମ ପଦ୍ୟାବଳୀ ବ୍ୟତୀତ ଅଧିକ ଦେଖାଯାଏ ନାହିଁ । ଭକ୍ତକବି ବୀର ହନୁମାନଙ୍କର ଶ୍ରୀରାମଭକ୍ତିରେ ଆକୃଷ୍ଟ ହୋଇଉଠିଛନ୍ତି ଏବଂ ନିଜକୁ ହନୁମାନଙ୍କ ପରି

ଶ୍ରୀରାମଙ୍କ ପଦାବ୍ଜରେ ଦାସରୂପେ କଳ୍ପନା କରି ରାବଣକୁ ଭକ୍ତ ହନୁମାନଙ୍କର ଉପଦେଶ ଛଳରେ ଗୋଟିଏ ଭଜନ ଗାନ କରିଛନ୍ତି—

"ସେ ଯେଉଁ ରାମ, ପରଂବ୍ରହ୍ମ ନାରାୟଣ ।
କହେ ହନୁମାନ ଶୁଣରେ ରାବଣ,
ଯେହୁ ଦେଲା ତୋତେ ବର
ତୁ ଯାଇ ପଚାର ସେ ବିଶ୍ୱନାଥଙ୍କୁ
ସେ ନାମେ ଜପେ ଶଙ୍କର ॥

× × ×

ଶରଣ ପଶିଲେ ତୋତେ ନ ମାରିବ
ଦୟାଳୁ ସେ ନାରାୟଣ ॥
ସୀତା ସତୀ ନେଇ ରାମ ପାଶେ ଦେଇ
ମୋଡ଼ନ୍ତି ତୋ ଦଶଶିର ॥
ଲଙ୍କା ଉପାଡ଼ିଣ ସମୁଦ୍ରେ ପକାନ୍ତି,
ଆଜ୍ଞା ନାହିଁ ରଘୁବୀର ॥
ଅବତାରିଛନ୍ତି ଦଶରଥସୁତ
ଜନମିଲେ ସୂର୍ଯ୍ୟବଂଶେ ।
କହେ ସାଲବେଗ ଜାତିରେ ଯବନ
ଶ୍ରୀରାମଚରଣ ଦାସେ ॥"

ଏହିପରି ଭାବରେ ଆଲୋଚନା କଲେ ଜଣାଯାଏ ଯେ ଭକ୍ତ ସାଲବେଗ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବିଭିନ୍ନ ଲୀଳା ଓ ବିଭିନ୍ନ ଅବତାରର ବୈଶିଷ୍ଟ୍ୟ ପ୍ରତି ଭକ୍ତିଭାବରେ ଆକୃଷ୍ଟ ହୋଇ, ଭକ୍ତିଭାବରେ ବିହ୍ୱଳ ହେବା ସଙ୍ଗେ ସଙ୍ଗେ ସରଳ ସୁନ୍ଦର ତଥା ଭାବଗର୍ଭକ ପଦାବଳୀର ସଂଯୋଗରେ ଅନେକଗୁଡ଼ିଏ ଭଜନ ରଚନା କରିଛନ୍ତି । ଏହି ଭଜନଗୁଡ଼ିକ ଭକ୍ତିଭାବରେ ରସାଣିତ ହୋଇଥିବାରୁ ସହୃଦୟ ପାଠକ ତଥା ଭକ୍ତ ହୃଦୟରେ ଅପୂର୍ବ ପୁଲକ ଜାତ କରାଏ ।

## ଶିବଭଜନ

ଭକ୍ତକବି ସାଲବେଗ କେବଳ ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ଓ ଶ୍ରୀରାମଙ୍କ ଭକ୍ତ ନଥିଲେ; ତାଙ୍କ ରଚନାରୁ ଜଣାଯାଏ ଯେ, ସେ ମଧ୍ୟ ଦେବାଧିଦେବ ଶିବଙ୍କର ଭକ୍ତ ଥିଲେ ।

ପ୍ରସ୍ତୁତ ପଦ୍ୟାବଳୀରେ ଶିବଙ୍କ ନାମରେ ଭଣିତା ଥିବା ପଦ୍ୟରୁ ଜଣାଯାଏ ଯେ କବି ସାଲବେଗ ଶ୍ରୀକୃଷ୍ଣ, ଶ୍ରୀରାମ, ଶ୍ରୀଜଗନ୍ନାଥଙ୍କ ସହିତ ଶିବଙ୍କୁ ମଧ୍ୟ ଅନୁରୂପ ଭକ୍ତି କରୁଥିଲେ ।

କାରଣ ସାଲବେଗଙ୍କ ନିବାସ ସ୍ଥାନ ଶ୍ରୀକ୍ଷେତ୍ର ହୋଇଥିବାରୁ ସେଠାରେ ଶ୍ରୀ ଲୋକନାଥ, ଶ୍ରୀ ମାର୍କଣ୍ଡେୟେଶ୍ୱର, ଶ୍ରୀ ଯମେଶ୍ୱର ପ୍ରଭୃତି ଶିବବିଗ୍ରହଙ୍କ ପ୍ରସିଦ୍ଧି ଶୁଣି, ସେମାନଙ୍କ ପ୍ରତି ଭକ୍ତିନିବେଦନ କରିବା ଅସମ୍ଭବ ନୁହେଁ । ବିଶେଷତଃ ତାଙ୍କ 'ଶିବଭଜନ'ର ଭାଷା, ପଦଯୋଜନା ପ୍ରତି ଦୃଷ୍ଟି ଦେଲେ, କବିଙ୍କ ହୃଦୟର ଆକୁଳତା ସମ୍ବନ୍ଧରେ ବେଶ୍ ଧାରଣା କରିହୁଏ ।

"ଶିବ ହେ, ବାରେ ଜଣାଣ ଘେନ ।
ଶିବ ଶିବ ବୋଲି ଯାଉ ଜୀବନ ।।"

×     ×     ×

କହେ ସାଲବେଗ କାତରେ ହୀନ ।
ଶିବ ଶିବ ବୋଲି ଯାଉ ଜୀବନ ।।"

ପ୍ରସ୍ତୁତ ପଦ୍ୟଟି ସାମାନ୍ୟ ପରିବର୍ତ୍ତିତ ହୋଇ ଭିନ୍ନ ଭିନ୍ନ ଭକ୍ତଙ୍କ ମୁଖରେ ପ୍ରଚ୍ଛରିତ ହୋଇଛି । ସେଥିରୁ ଜଣାଯାଏ ଯେ ସାଲବେଗଙ୍କ ପଦ୍ୟଗୁଡ଼ିକ ଲୋକମୁଖରେ ପ୍ରଚ୍ଛରିତ ହେବା ସଙ୍ଗେ ସଙ୍ଗେ ସୁଦୂରପ୍ରସାରୀ ହୋଇପାରିଥିଲା; କିମ୍ବା ଆହୁରି ମଧ୍ୟ ଅନୁମାନ କରାଯାଇପାରେ ଯେ ସାଲବେଗ ଗୋଟିଏ ଶିବଭଜନ ପ୍ରଥମେ ରଚନା କରିଥିଲେ ହେଁ, ଅନ୍ୟ ସମୟରେ ତାକୁ ଭିନ୍ନ ଭାବରେ ଶୁଣାଇ ଭକ୍ତମାନଙ୍କୁ ଆପ୍ୟାୟିତ କରିଥିବେ; ତେଣୁ ଅଞ୍ଚଳଭେଦରେ ତାଙ୍କ ଶିବଭଜନଟି ଭିନ୍ନ ରୂପରେ ରୂପାୟିତ ହୋଇଛି । ସେ ଶିବଙ୍କର ବିଭିନ୍ନ ରୂପର କଳ୍ପନା ନିଜର ମାନସଚକ୍ଷୁରେ କରିବା ସଙ୍ଗେ ସଙ୍ଗେ ନିଜେ ଭାବବିହ୍ୱଳ ହୋଇ ଗାଇଉଠିଛନ୍ତି—

"ବିଭୂତିଭୂଷଣ ତ୍ରିଶୂଳଧାରୀ ।
ମଧ୍ୟେ ସଦାଶିବ ନାଚନ୍ତି ଭଲ ।।
କହେ ସାଲବେଗ କାତରେ ହୀନ,
ମୋ' ମନ ରହିବ ଶିବଚରଣ ।।"

## ସାଲବେଗଙ୍କ ବ୍ରହ୍ମଜ୍ଞାନ ଓ ଅଗତ-ଭବିଷ୍ୟ ପଦ୍ୟାବଳୀ

ଭକ୍ତକବି ସାଲବେଗ ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ଓ ଶ୍ରୀରାମଲୀଳାତ୍ମକ ପଦ୍ୟାବଳୀ ରଚନାକରି ଭକ୍ତମଣ୍ଡଳୀରେ ଗାନ କରିବାପରେ ଯେତେବେଳେ ପରିଣତ ବୟସରେ ଉପନୀତ ହେଲେ, ସେତେବେଳେ ତାଙ୍କ ହୃଦୟରେ ବ୍ରହ୍ମଜ୍ଞାନ ଉଦୟ ହୋଇଥିବା ଅସମ୍ଭବ ନୁହେଁ । ଅବଶ୍ୟ ସାଲବେଗଙ୍କ ପୂର୍ବରୁ ଗୋରେଖନାଥ ଓ ପଞ୍ଚସଖାଙ୍କ 'ଅଣାକାର ଭଜନ' ଓଡ଼ିଶାର ଭକ୍ତ-ମଣ୍ଡଳୀରେ ପ୍ରଚ୍ଛରିତ ହୋଇଥିଲା । ପଞ୍ଚସଖା ମଧ୍ୟରେ ଅଚ୍ୟୁତାନନ୍ଦ ଅଣାକାର ଭଜନ ରଚନାରେ ତତ୍କାଳୀନ ଜନସମାଜ ତଥା ଭକ୍ତମଣ୍ଡଳୀରେ ପ୍ରସିଦ୍ଧି ଲାଭ କରିଥିଲେ ।

ଆଲୋଚନାରୁ ଜଣାଯାଏ ଯେ, ସବଂଭାରତୀୟ ସ୍ତରରେ ଜ୍ଞାନଦେବ, ତୁକାରାମ, ନାନକ ପ୍ରଭୃତି ସନ୍ଥମାନେ ଜୀବ ଓ ପରମର ଐକ୍ୟ ତଥା ସଂସାରର ଅସାରତା ସମ୍ବନ୍ଧରେ ଅନେକ କବିତା ରଚନା କରିଥିଲେ ।

ସନ୍ଥ କବୀର ଦାସ ଗୁରୁସେବା, ରାମ ରହିମ୍ ମଧ୍ୟରେ ଅଭିନ୍ନତା, ରୂଢ଼ୀବାଦର ବିରୋଧ ତଥା ଧାର୍ମିକ କଳହର ନିନ୍ଦା କରି ଅନେକ 'ସାଖୀ' ରଚନା କରିଥିଲେ । ତେଣୁ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷରେ 'ଜ୍ଞାନମିଶ୍ରା ଭକ୍ତିବାଦ'ର ପ୍ରଚାର ହୋଇଥିଲା ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପଞ୍ଚସଖା (ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ)ଙ୍କ ନିର୍ଗୁଣ ଭକ୍ତିଧାରାର ଭଜନଗୁଡ଼ିକରେ ଶରୀରର ନଶ୍ବରତା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ସେହି ପ୍ରସଙ୍ଗରେ ସେମାନେ ଶରୀରକୁ 'ଭଙ୍ଗାନାବ, ଦୁହାଁଳଗାଈ, କଞ୍ଚାହାଣ୍ଡି ଓ ଶାରୀ ଶୁଆ' ସହିତ ତୁଳନା କରିବା ସଙ୍ଗେ ସଙ୍ଗେ ମନର ଅସ୍ଥିରତା ସମ୍ବନ୍ଧରେ ବହୁ ଉଦାହରଣ ଉପସ୍ଥାପିତ କରିଛନ୍ତି । ଏହି ଭାବଧାରା ପରବର୍ତ୍ତିକାଳୀନ ଭକ୍ତମଣ୍ଡଳୀରେ ପ୍ରାଧାନ୍ୟ ବିସ୍ତାର କରିଥିବା ଆଦୌ ଅସମ୍ଭବ ନୁହେଁ ।

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭକ୍ତକବି ସାଲବେଗ ବହୁଦିନ ଧରି ଭକ୍ତମଣ୍ଡଳୀର ସଂସର୍ଗରେ ରହିବାପରେ, ଶୂନ୍ୟବ୍ରହ୍ମଙ୍କ ଉପାସନା ପ୍ରତି ଆକୃଷ୍ଟ ହୋଇଥିବେ । ତେଣୁ ରଚନାକାଳର ଉତ୍ତରାର୍ଦ୍ଧରେ ସେ ବ୍ରହ୍ମଜ୍ଞାନମୂଳକ ରଚନା କରିଥିବା ଏକାନ୍ତ ସ୍ୱାଭାବିକ ।

ସାଲବେଗଙ୍କ 'ଅଣାକାର ଭଜନ' ମଧ୍ୟରେ 'କାହିଁକି ଆସିଛୁ ମନ କିସ ନେବା ପାଇଁରେ' ଅତ୍ୟନ୍ତ ଲୋକପ୍ରିୟ ଭଜନ । ଏହି ଭଜନରେ କବି ମନୁଷ୍ୟଜୀବନର ପ୍ରକୃତ ରହସ୍ୟ ଉଦ୍‌ଘାଟନ କରିଛନ୍ତି । ମଣିଷ ଏ ସଂସାରରେ ପଦାର୍ପଣ କରିବାବେଳେ ସଙ୍ଗରେ କିଛି ଆଣିନଥାଏ, କିମ୍ବା ଇହଧାମ ଛାଡ଼ି ଯିବାବେଳେ ମଧ୍ୟ କିଛି ହେଲେ ପାଥେୟ ନେଇଯାଏ ନାହିଁ । କେବଳ ଜୀବନକାଳ ମଧ୍ୟରେ ସେ ନାନା ପ୍ରକାର ଲୋଭ, ମୋହ ମାର୍ଗରେ ଅନ୍ଧ ହୋଇ ଭ୍ରମରେ ପଡ଼ିଯାଏ ଏବଂ ସାଂସାରିକ ସୁଖଗୁଡ଼ିକୁ ଜୀବନର ପ୍ରକୃତ ଧ୍ୟେୟ ବୋଲି ମନେକରି ସେଥିରେ ମଜ୍ଜିଯାଏ । କିନ୍ତୁ 'ଶ୍ରୀରଙ୍ଗାଚରଣ ବିନୁ' ମଣିଷର ଗତିମୁକ୍ତିଦାତା ଆଉ କେହି ନାହାନ୍ତି; ତେଣୁ ଭକ୍ତ ସାଲବେଗ ସେହି ପାଦପଦ୍ମରେ ଆଶ୍ରୟ-ଗ୍ରହଣ କରି ଇହଧାମରୁ ମୁକ୍ତ ହେବାର କାମନା କରିଛନ୍ତି ।

ତାଙ୍କର ଏହି ପଦ୍ୟଟି ଓଡ଼ିଶାର ଭକ୍ତମଣ୍ଡଳୀରେ ଭିନ୍ନ ଭାବରେ ଆବୃତ୍ତି କରାଯାଉଥିବାର ଦେଖାଯାଏ । ଅବଶ୍ୟ ପଦ୍ୟ ଶେଷରେ କୌଣସି କବିଙ୍କର ନାମ ଭଣିତା ହୋଇନାହିଁ । ଭକ୍ତକବି ସାଲବେଗଙ୍କ ନାମ ଭଣିତା ଥିବା ପଦ୍ୟ ଓ ନାମ ଭଣିତା ନ ଥିବା ଭଜନର ଏକ ତୁଳନାତ୍ମକ ଅଧ୍ୟୟନ ଉଦ୍ଦେଶ୍ୟରେ ଏଠାରେ ଶେଷୋକ୍ତ ଭଜନଟି ଉଲ୍ଲେଖ କରାଗଲା—

"କାହିଁକି ଆସିଛୁ ମନ, କିସ ନେବା ପାଇଁ ତ !
ଆସିଛୁ ଲଙ୍ଗଳା ହୋଇ ଯିବୁ ଶୂନ୍ୟ ହୋଇ ତ !
ମାଟିଘଟ ପିଞ୍ଜରାରେ ସୁବର୍ଣ୍ଣର ଶୁଆ ତ ।
ଅଠାକାଠି ଲଗାଇଛୁ ଭବବନୋଦ୍ଧିଆ ତ ।।
ପଞ୍ଜରା ବୋଇଲା ମୋତେ ଶୁକ ସଙ୍ଗେ ନିଅ ତ ।
ପାପିଷ୍ଠୀ ହେଲୁ ପଞ୍ଜରା ନ ଛୁଇଁବେ କେହି ତ ।।
ମାତା କାନ୍ଦେ ପୁତ୍ର ପୁତ୍ର ଭଗ୍ନୀ କାନ୍ଦେ ଭାଇ ତ ।
ଘରର ଘରଣୀ କାନ୍ଦେ ପରପୁତ୍ର ପାଇଁ ତ ।।
ଯାହାକୁ ତୁ ବଶହେଲୁ ଶାଢ଼ି ଶଙ୍ଖା ଦେଇ ତ ।
ସେହି ତୋତେ ଖାଉଥିବ ଦେବୀରୂପ ହୋଇ ତ ।।
ଭାଇ ବୋଲ ବନ୍ଧୁ ବୋଲ ସମ୍ପତ୍ତିର ସାଥୀ ତ ।
ଜୀବ ଗଲାବେଳେ ଏକା ଗୋବିନ୍ଦର ସାଥୀ ତ ।।
ମିଳିଣ ଭାଇ-ବାନ୍ଧବେ ନେବେଟି ଶ୍ମଶାନେ ତ
ବନସ୍ତରୁ କାଠ ଆଣି ଲଗାଇବେ ଜୁଇ ତ ।।
ଫିଙ୍ଗିବେ ହାଣ୍ଡି-କୁଣ୍ଡେଇ ସିଞ୍ଚିବେ ଗୋମୟ ତ ।
ପବିତ୍ର ଅଙ୍ଗ ହୋଇବେ ଦଣ୍ଡିନେ ଯାଇ ତ ।।
ବନ୍ଧୁ ବାନ୍ଧବେ ଚଳିବେ ଯେ ଯାହା ଭୁବନ ତ ।
ଏ ଜୀବନେ ନାହିଁ ଆଶା ହରି ହରି ବୋଲ ତ ।।"

ଅନ୍ୟ ଗୋଟିଏ ବ୍ରହ୍ମଜ୍ଞାନମୂଳକ ପଦ୍ୟରେ ଭକ୍ତ ସାଲବେଗ ମନୁଷ୍ୟ କେବଳ ବ୍ୟର୍ଥରେ ସମସ୍ତ କଟାଇ 'କୃଷ୍ଣନାମ' ଭଜନ କରୁନଥିବାରୁ ଦୁଃଖ ପ୍ରକାଶ କରିଛନ୍ତି । ତାହା ଫଳରେ ଶେଷ ଜୀବନରେ ମଣିଷ 'ହାହୁତୋଷ୍ମି' ହୋଇ ମରୁଛି ।

"ଦିନ ଗଲା ଦୁଃଖ ସୁଖେ ରାତ୍ରି ଗଲା ନିଦରେ ।
ଭଜି ତ ନପାରେ କୃଷ୍ଣ ଚରଣାରବିନ୍ଦରେ ।।
କହେ ସାଲବେଗ ହୀନ ମେଘ ଘଡ଼ଘଡ଼ିରେ ।
ଜୀବ ଯିବାବେଳେ ପିଣ୍ଡ ଦେଉଥାଏ ରଢ଼ିରେ ।।"

ଅନ୍ୟ ଗୋଟିଏ ପଦ୍ୟରେ ଭକ୍ତ ବ୍ରହ୍ମଜ୍ଞାନୀ କବି ସାଲବେଗ ଜୀବ ଓ ପରମଙ୍କୁ ଶୁଆ ଶାରୀ ରୂପେ କଳ୍ପନା କରି, ଜୀବନରେ ରାମକୃଷ୍ଣଙ୍କ ନାମ ଭଜନର ମହତ୍ତ୍ୱ ପ୍ରତିପାଦନ କରିଅଛନ୍ତି । ଅନ୍ୟଥା ହଠାତ୍ ଦିନେ ଜୀବରୂପକ ଶାରୀଟିକୁ କାଳରୂପକ ମାର୍ଜାର ବଧ କରିଦେଇ ସଂସାରର ଲୀଳାଖେଳା ଶେଷ କରିଦେବ । ମନୁଷ୍ୟମାନେ ଜୀବନର ଏହି ସୂକ୍ଷ୍ମ ରହସ୍ୟକୁ କେବେହେଲେ ଅବଗତ ହୁଅନ୍ତି ନାହିଁ । ତେଣୁ ସେମାନେ ନରଜନ୍ମରୁ ମୁକ୍ତ ପାଇ ଦିବ୍ୟଧାମର ଯାତ୍ରୀ ହୋଇପାରନ୍ତି ନାହିଁ ।

"ପର୍ବତ ଶିଖରେ ଘର ବାନ୍ଧିଥିଲି ତଳକୁ ଲମ୍ବିଛି ଡାଳ ।
ସଂସାର ମଧ୍ୟରେ ଭ୍ରମିଯାଉଥିଲି ନରଜନ୍ମ ନାରଖୀର
ଲୋ ଶାରି ! ଭଜ ରାମକୃଷ୍ଣ ହରି ।
ମାରନେବଟି, ପୋଡ଼ିଯିବଟି,
ଧରିନେବଟି ଦୁଷ୍ଟମଞ୍ଜାରି ଲୋ ଶାରି ।

× × ×

କହେ ସାଲବେଗ ଏ ଗୀତେ ଭଣିଲେ
ସୁନାକୁ କେ କଲା ବନ୍ଦୀ, ଲୋ ଶାରି ।"

ଭକ୍ତକବି ଅନ୍ୟ ଗୋଟିଏ ପଦ୍ୟରେ ନିଜର ଦୁର୍ବୃତ୍ତ ମନକୁ ଧିକ୍କାର କରୁଛନ୍ତି; କାରଣ ମନ ଆୟତ୍ତରେ ନ ରହି ଅନେକ ପ୍ରକାର ବିଷୟବାସନାରେ ମଜ୍ଜି ଯିବାକୁ ଇଚ୍ଛା କରୁଛି ଏବଂ ନାନାପ୍ରକାର ପ୍ରଲୋଭନୀୟ ପଦାର୍ଥ ଆଡ଼କୁ ଆକୃଷ୍ଟ ହେଉଥିବାରୁ 'ନନ୍ଦବାଳ'ଙ୍କ ପଦାବ୍ଜରେ ଏକାଗ୍ରତାର ସହିତ ଲକ୍ଷ୍ୟ ଲଗାଇବାକୁ ଇଚ୍ଛା କରୁନାହିଁ । ତେଣୁ କବି ଅନୁଶୋଚନା କରି କହୁଛନ୍ତି—

"ମୋହି ମନ ମୋହିଣ ସେ ନୋହିଲା ରେ ।
ମୋ ମନ ମୋତେ ଭଗାରି ନ ଭଜିଲି ରାମହରି ।
ଯମ ନେବ ଧରିକରି ବୋଇଲା ରେ ॥

× × ×

ମୋ ମନ ମୋତେ ରସାଇ ନାନା ଅମୃତେ ଭସାଇ
ବିଷୟାରେ ବିଷ ଦେଇ ମାରିଲା ରେ ॥"

ଆଉ ଗୋଟିଏ ପଦ୍ୟରେ ମଧ୍ୟ କବି ସାଲବେଗ ଘରସଂସାର ଓ ସକଳ କୁଟୁମ୍ବ ତ୍ୟାଗ କରି 'ଗୋବିନ୍ଦ' ପଦାରବିନ୍ଦରେ ଧ୍ୟାନ କରୁଥିବାର ଉଲ୍ଲେଖ କରିଛନ୍ତି ।

"ମାତା ତେଜ୍ୟା ପିତା ତେଜ୍ୟା ଆବର ତେଜ୍ୟା ଭାଇ ।
ସକଳ କୁଟୁମ୍ବ ତେଜ୍ୟା କରି ଗୋବିନ୍ଦରେ ଧ୍ୟାୟି ॥"

ଅନ୍ୟ ଏକ ପଦ୍ୟରେ ଭକ୍ତକବି ସାଲବେଗ ଏ ଜୀବନର ଅନିତ୍ୟତା ତଥା ସାଧୁସଙ୍ଗ ଉପରେ ବିଶେଷ ଜୋର୍ ଦେଇ ଶ୍ରୀରାମକୃଷ୍ଣଙ୍କ ଭଜନରେ ମନୋନିବେଶ କରିବାକୁ ମନକୁ ପ୍ରବୋଧନା ଦେଇଛନ୍ତି ।

"ସୁମନରେ, ନଷ୍ଟ୍ୟ ଏ ଜୀବ ଯିବ ।
ସାଧୁସଙ୍ଗ ପ୍ରୀତି ଦାନଧର୍ମ କୀର୍ତ୍ତି
ଏହି ମାତ୍ର ରହିଥିବ ॥

× × ×

ମୋହର ମୋହର ବୋଲୁଅଛୁ ତୁହି
ମୋହମାୟା ସଂସାରକୁ ।
ମଲେ ତୁ ଆଉ କି ଲେଉଟି ଦେଖିବୁ
ପୀରତି ବନ୍ଧୁ ଜନଙ୍କୁ ॥
ଭଜ ରାମକୃଷ୍ଣ ଗୋବିନ୍ଦ ଗୋପାଳ
ଚନ୍ଦ୍ରାକର ମନ ନିତି ।
କହେ ସାଲବେଗ ଜାତିରେ ଯବନ
ମନରେ ନ କର ଖ୍ୟାତି ॥"

ଅନ୍ୟ ଗୋଟିଏ ପଦ୍ୟରେ ଭକ୍ତକବି ଶରୀରର ସୂକ୍ଷ୍ମ ତଥା ଦାର୍ଶନିକ ଚିନ୍ତାଧାରା ଉପରେ ଗୁରୁତ୍ୱ ଆରୋପକରି ଶରୀର ମଧ୍ୟରେ 'ପରମ'ର ନିବାସସ୍ଥଳକୁ ସହଜ ଉପାୟରେ ବୁଝାଇବାକୁ ଯାଇ ଲେଖିଛନ୍ତି—

"ହେ ଚକାଡ଼ୋଳା ! ସ୍ୱହୁଁ ସ୍ୱହୁଁ ବୁଡ଼ିଲି ମୋ ଭେଳା ।
ଏକ ଚକେ ରଥ ଚଳୁଥିଲି
ବେନି ଚକ ହେଲୁ ନ ଚଳିଲି,
ଡାଲଗ୍ରୋପା ପ୍ରାପ୍ତେ କବାଟ ଲାଗିଛି ତହିଁ ମଉଗଜ ଖେଳୁଥିଲି ॥

× × ×

କହେ ସାଲବେଗ ରହଲୀଳା
କେ କହିପାରିବ କୃଷ୍ଣଲୀଳା,
ସହସ୍ରା ଦୀପରେ ଅନଳ ଜଳୁଛି ତଇଲ ପକାନ୍ତେ ଲିଭିଗଲି ॥"

ଭକ୍ତକବି ସାଲବେଗ ଏହିପରି ଭାବରେ ବ୍ରହ୍ମଜ୍ଞାନତତ୍ତ୍ୱଗୁଡ଼ିକ ସହଜ ଓ ସରଳ ଉପାୟରେ ବୁଝାଇ ଭକ୍ତମଣ୍ଡଳୀରେ ଜଣେ ଆଦର୍ଶ ବ୍ରହ୍ମଜ୍ଞାନୀରୂପେ ସୁପରିଚିତ ହୋଇଥିଲେ । ବିଶେଷତଃ ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ 'ଫୁଲ୍ ତୋଳ ହୋ ନାଗର' ଶୀର୍ଷକ ବ୍ରହ୍ମଜ୍ଞାନ ଭଜନରେ କବି ସାଲବେଗ ମାନବ ଶରୀରକୁ ଗୋଟିଏ 'ଫୁଲ୍' ସହିତ ତୁଳନା କରି, ଏ ଫୁଲ୍‌ର ସାର୍ଥକତା ପ୍ରଭୁଙ୍କ ପାଦପଦ୍ମରେ ବୋଲି ବର୍ଣ୍ଣନାକରି ନିଜର ଭକ୍ତିଭାବର ସାର୍ଥକତା ପ୍ରତିପାଦନ କରାଇଛନ୍ତି । ସବୁ ଦୃଷ୍ଟିକୋଣରୁ ବିଚାରକଲେ, ଅନ୍ୟାନ୍ୟ ଭଜନ ଓ ଗୀତ ରଚନାପରି କବି ସାଲବେଗ 'ଅଣାକାର ଭଜନ' କ୍ଷେତ୍ରରେ ମଧ୍ୟ ନିଜର ଅସାମାନ୍ୟ ପାରଦର୍ଶିତା ଦେଖାଇଛନ୍ତି ।

ସାଲବେଗଙ୍କ ରଚନା ମଧ୍ୟରେ ଦୁଇଟି 'ଆଗତଭବିଷ୍ୟ' ଗୀତ ଦେଖାଯାଏ । ପଦ୍ୟ ଦୁଇଟି 'କଳିଚରିତ' ଶୀର୍ଷକ ଖଣ୍ଡିଏ ଅପ୍ରକାଶିତ ପୋଥିର ଦୁଇଟି ଅଧ୍ୟାୟ ରୂପେ ସନ୍ନିବେଶିତ ହୋଇଛି । ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ସଂରକ୍ଷିତ 'କଳିଚରିତ'

ପୁସ୍ତକଟି ସାତୋଟି ଅଧ୍ୟାୟରେ ସମାପ୍ତ ହୋଇଛି । ଏଥିରେ ପ୍ରଥମ ଓ ଷଷ୍ଠ ଅଧ୍ୟାୟ ଦୁଇଟି ସାଲବେଗଙ୍କ ନାମରେ ଭଣିତା ହୋଇଛି । ପ୍ରଥମ ଅଧ୍ୟାୟର ପ୍ରଥମ ପଦରେ ବର୍ଣ୍ଣିତ ହୋଇଛି—

"କହୁ ଅଛନ୍ତି ସାଲବେଗ । କଳି ପୁରାଣର ଚରିତ ॥"

ଓ ଶେଷ ପାଦରେ ବର୍ଣ୍ଣିତ ହୋଇଛି—

"କହେ ସାଲଆ ଦାସ ହୀନ । ଶ୍ରୀକୃଷ୍ଣ ଚରଣେ ମୋ ମନ ॥"

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ସାଲବେଗ ନିଜକୁ 'ସାଲଆ ଦାସ' ରୂପେ ଚିହ୍ନିତ କରିଛନ୍ତି । ସେହି ଅଧ୍ୟାୟରେ କବି ରାମଚନ୍ଦ୍ର ଦେବ (ଦ୍ୱିତୀୟ) ଙ୍କ ସମୟର ଘଟଣା ବର୍ଣ୍ଣନା କରିଛନ୍ତି । ଘଟଣାକ୍ରମେ କବି ସାଲବେଗ ରାମଚନ୍ଦ୍ର ଦେବଙ୍କ ବଡ଼ୋହୀ ପୁତ୍ର ଭାଗୀରଥି କୁମାରଙ୍କ କାର୍ଯ୍ୟ-କଳାପ ସମ୍ବନ୍ଧରେ ସୂଚନା ଦେଇଛନ୍ତି । ସେହି ସମୟ ମଧ୍ୟରେ ଓଡ଼ିଶାରେ ଯେଉଁ ଘଟଣାମାନ ଘଟିଥିଲା, ତା'ର ସୂଚନା ଦେଇ ଘଟଣାଗୁଡ଼ିକୁ ଲେଖିବା ପାଇଁ ଶ୍ରୀଜଗନ୍ନାଥ ଆଜ୍ଞା ଦେଇଥିବାର ସୂଚନା ଦେଇଛନ୍ତି । ସେତିକବେଳେ ପ୍ରଭୁ କଳ୍କି ରୂପରେ ଜନ୍ମଗ୍ରହଣ କରି ଓଡ଼ିଶାର ଶାସନଭାର ନିଜେ ଗ୍ରହଣ କରିଥିବାର ବର୍ଣ୍ଣନା ସାଲବେଗଙ୍କ ବର୍ଣ୍ଣନାରୁ ମିଳିଥାଏ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ରାମଚନ୍ଦ୍ର ଦେବଙ୍କ ଆଠ ଅଙ୍କଠାରୁ ଦେଶରେ ଯେଉଁ "ମୋଗଲଗୋଳ" ହୋଇଥିଲା, ସେଥିରେ ଅତିଷ୍ଠ ହୋଇ ପ୍ରଭୁ ନୀଳାଚଳରୁ ଅନ୍ତର୍ଦ୍ଧାନ ହୋଇଯାଇ ଯାଜପୁରର 'ବିରଜା ଶାସନ'ର ବିପ୍ର ମିଶ୍ରଙ୍କ ଗୃହରେ ଜନ୍ମ ଗ୍ରହଣ କରିଥିଲେ । 'ମାଦଳାପାଞ୍ଜି' ଓ ସମସାମୟିକ ଇତିହାସରୁ ମଧ୍ୟ ସୂଚନା ମିଳେ ଯେ, ରାମଚନ୍ଦ୍ର ଦେବ ଯବନ ଆକ୍ରମଣରୁ ଶ୍ରୀମନ୍ଦିର ଓ ମହାପ୍ରଭୁଙ୍କୁ ରକ୍ଷା କରିବାକୁ ଜୀବନର ଶେଷ ଉଦ୍ୟମ କରିଥିଲେ ଏବଂ ପରିଶେଷରେ ଇସ୍‌ଲାମ୍ ଧର୍ମରେ ଦୀକ୍ଷିତ ହୋଇଥିଲେ । କବି ସାଲବେଗ ରାମଚନ୍ଦ୍ର ଦେବଙ୍କ ଇସ୍‌ଲାମ୍ ଧର୍ମରେ ଦୀକ୍ଷିତ ହେବା ଘଟଣା ଲେଖିନଥିଲେ ମଧ୍ୟ 'ଚଉଦ ଅଙ୍କ ଠାରେ ଜାଣ । ସେଠାରେ ନୃପତି ମରଣ' ହୋଇଥିବାର ବର୍ଣ୍ଣନା କରିଛନ୍ତି । ଅର୍ଥାତ୍ ସାଲବେଗ ଖ୍ରୀ: ଅ: ୧୭୩୬ ସାଲ ପର୍ଯ୍ୟନ୍ତ ଘଟଣା ଉଲ୍ଲେଖ କରିଛନ୍ତି । ସେଥିରୁ ଏତିକି ଅନୁମାନ କରି ହୁଏ ଯେ, କବି ସାଲବେଗ ସେହି ପର୍ଯ୍ୟନ୍ତ ଜୀବିତ ଥିଲେ । ତା'ପରେ ଭାଗୀରଥି କୁମାର ବୀରକେଶରୀ ଦେବ ନାମରେ ରାଜା ହେବା ପରେ ଦେଶରେ ସୁଶାସନ ପ୍ରତିଷ୍ଠିତ ହୋଇଥିଲା । ଏହି ଘଟଣାକୁ କବି ସାଲବେଗ ଜଣେକ ଅନନ୍ୟ ଭକ୍ତଭାବରେ ପ୍ରଭୁଙ୍କ କରୁଣା ଅର୍ଥାତ୍ ପ୍ରଭୁ ନିଜେ ଦେଶର ଶାସନଭାର ଗ୍ରହଣ କରିଥିବାର ବର୍ଣ୍ଣନା କରିଛନ୍ତି । କବି ସାଲବେଗ ନିଜେ ଜଣେ ଭକ୍ତ ହୋଇଥିବାରୁ ଭକ୍ତିକ କଳ୍ପନା ବ୍ୟତୀତ ତାଙ୍କର ଭକ୍ତିଭାବନାପୂର୍ଣ୍ଣ ମନକୁ ଅନ୍ୟ କୌଣସି ଘଟଣା ସ୍ପର୍ଶ କରି ନଥିବା ସ୍ୱାଭାବିକ ! ତେଣୁ ବୀରକେଶରୀ ଦେବଙ୍କ ସୁଶାସନକୁ ସେ ଶ୍ରୀଜଗନ୍ନାଥଙ୍କ ଶାସନ ବୋଲି ବର୍ଣ୍ଣନା କରିଥିବାର ମନେହୁଏ । ଯଦି ଏହି ମତ ଗ୍ରହଣ କରାଯାଏ, ତେବେ ସେ ବୀରକେଶରୀ ଦେବଙ୍କ ରାଜତ୍ୱର ପ୍ରଥମ ଦଶକ ଅର୍ଥାତ୍ ଖ୍ରୀ: ଅ:

୧୭୪୦–୪୫ ପର୍ଯ୍ୟନ୍ତ ଜୀବିତ ଥିବାର ଅନୁମାନ କରାଯାଇପାରେ । ଜଣେ ସାଧକ ଭକ୍ତ ପକ୍ଷରେ ଏକଶହ ଦଶଶ, ପଞ୍ଚଦଶଶ ବର୍ଷ ବଞ୍ଚିରହିବା ଆଦୌ ଅସମ୍ଭବ ବୋଲି ମନେହୁଏ ନାହିଁ ।

'କଳିଭାରତ'ର ଷଷ୍ଠ. ଅଧ୍ୟାୟ ପାଠରୁ ଜଣାଯାଏ ଯେ, ପ୍ରଭୁ ନୀଳଗିରି ଗୁଡ଼ି 'ଦରିଆ'ରେ ରହିଥିଲେ । ଇତିହାସରୁ ଜଣାଯାଏ, ଯବନମାନଙ୍କ କବଳରୁ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ରକ୍ଷା କରିବାପାଇଁ ସେବକମାନେ ରାମଚନ୍ଦ୍ର ଦେବଙ୍କ ସହାୟତାରେ ମଙ୍ଗଳା ନଈ ବାଟେ ଚିଲିକା ଭିତରକୁ ନେଇ କୌଣସି ଏକ ଅଗମ୍ୟ ସ୍ଥାନରେ ଲୁଚାଇ ରଖିଥିଲେ । ଦେଶରୁ 'ମୋଗଲଗୋଳ' ସମ୍ପୂର୍ଣ୍ଣଭାବରେ ପ୍ରଶମିତ ହେବାପରେ ଠାକୁରେ ବଡ଼ଦେଉଳକୁ ଫେରି–ଆସିଥିଲେ ଏବଂ ତାଙ୍କର ଗୁଣ୍ଡିଚାଯାତ୍ରା ସୁରୁଖୁରୁରେ ହୋଇପାରିଥିଲା । କବି ସାଲବେଗ 'କଳିଭାରତ'ର ଷଷ୍ଠ ଅଧ୍ୟାୟରେ ତାହାର ସୂଚନା ଦେଇ ଲେଖିଛନ୍ତି—

"ସତ୍ୟରେ ପୃଥିବୀ ହେବ,
ଶ୍ରୀନୀଳଗିରିକି ପ୍ରଭୁ ଆସିବ ଯେ,
କୈବଲ୍ୟ କୂର ହୋଇବ, ମୋ ରାମ ଯେ ।।
ପନ୍ଦର ଅଙ୍କ ଭିତରେ,
ନନ୍ଦିଘୋଷ ରଥ ହେବ ସେଠାରେ ଯେ ।
ପ୍ରଭୁ ଯିବେ ଗୁଣ୍ଡିଚା ନବରେ, ମୋ ରାମ ଯେ ।।"

'ମାଦଳା ପାଞ୍ଜି' ଓ ଅନ୍ୟାନ୍ୟ ଐତିହାସିକ ଘଟଣାବଳୀ ସହିତ ସାଲବେଗଙ୍କ ପ୍ରଦତ୍ତ ସୂଚନା ମିଶିଯାଉଥିବାରୁ କବି ସେହି ଘଟଣାକୁ ନିଜେ ପ୍ରତ୍ୟକ୍ଷ କରିଥିବାର ଧାରଣା ହୁଏ । ତେଣୁ ସାଲବେଗ ଖ୍ରୀ: ଅ: ୧୭୪୦–୪୫ ପର୍ଯ୍ୟନ୍ତ ଜୀବିତ ଥିବାର ଅନୁମାନ କରାଯାଇ ପାରେ ।

'କଳିଭାରତ'ର ପ୍ରଥମ ଅଧ୍ୟାୟ ଶେଷରେ ଭଣିତ 'ଶାଳଆ ଦାସ' ନାମରୁ ଆଉର ଗୋଟିଏ ପ୍ରକାର ଅନୁମାନ କରାଯାଇପାରେ ।

ଓଡ଼ିଆ ଭଜନ–ସାହିତ୍ୟରେ 'ଶାରଆଭକ' ନାମରେ ଭଣିତ ଗୋଟିଏ ଶ୍ରୀଜଗନ୍ନାଥଙ୍କ ଭଜନ ଥିବାର ଦେଖାଯାଏ । ଭଜନଟିର ଭାଷା, ଭାବ, ପଦରଚନା ଶୈଳୀ ସାଲବେଗଙ୍କ ରଚନା ସହିତ ଅବିକଳ ସାମଞ୍ଜସ୍ୟ ରହିଛି । ସେହି ଦୃଷ୍ଟିରୁ 'ଶାଳଆ ଦାସ' ଓ 'ଶାରଆଭକ' ଏକ ବ୍ୟକ୍ତି ବୋଲି ମନରେ ପ୍ରଶ୍ନ ଉଙ୍କିମାରେ । ଆଉରି ମଧ୍ୟ 'ଶାରଆଭକ' ନାମରେ କୌଣସି କବି ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଥିବାର ଦୃଷ୍ଟାନ୍ତ ଅଦ୍ୟାପି ମୋ ଦୃଷ୍ଟିଗୋଚର ହୋଇନାହିଁ । 'ଶାଳଆ' ଓ 'ଶାରଆ' ଭାଷାତତ୍ତ୍ୱଦୃଷ୍ଟିରୁ ଗୋଟିଏ ନାମ ବୋଲି କୁହାଯାଇ ପାରିବ । ତେଣୁ 'ଶାରଆଭକ' ନାମରେ ପ୍ରଚଳିତ ଭଜନଟି ସାଲବେଗଙ୍କ ରଚନା ହୋଇପାରେ ! ଆଲୋଚକମାନଙ୍କ ଅବଗତି ନିମିତ୍ତ 'ଶାରଆଭକ' ନାମରେ ଭଣିତ ପଦ୍ୟଟି ଏଠାରେ ଉଦ୍ଧୃତ ହେଲା—

"ଅକାମନ ଗୁଲ ଯିବା, ଚକାନୟନ ଦେଖିବା,
ଶଙ୍ଖନାଭି ମଣ୍ଡଳରେ ବେହନନେତ୍ର ପଖାଳିବା ॥
ବାଟରେ ବାଟମଙ୍ଗଳା,
ଦେଖିବା ଅଠରନଳା,
ପାଞ୍ଚମନ ଏକ ମେଳା ନରେନ୍ଦ୍ରେ ସ୍ନାନ ସାରିବା ॥
ପହଞ୍ଚିବା ବଡ଼ଦାଣ୍ଡେ,
ସେ ରେଣୁ ପାଇବା ତୁଣ୍ଡେ,
ଛତାତଳେ ରହି ଦଣ୍ଡେ ସାଧୁଙ୍କ ସେବା କରିବା ॥
ସିଂହଦ୍ୱାରେ ଭଡ଼ାଭଡ଼ି,
ବାଜୁଅଛି ବେତବାଡ଼ି,
ଠେଲିଦେଇ ଯିବା ମାଡ଼ି ଧକ୍କା ବାଜିଲେ ସହିବା ॥
ବାଇଶି ପାବଚ୍ଛେ ବିକା,
ହେଉଛି କୈବଲ୍ୟ ଶିଖା,
ହାଣ୍ଡିକ ପଡ଼େ ସିଝିକା ମନରଙ୍କା ଛଡ଼ାଇବା ॥
ଗରୁଡ଼ ପଛରେ ଦେଖ
ଦିଶୁଛି କଳାଶ୍ରୀମୁଖ,
କହଇ **ଶାରଆଭିକ** ବଳିରାମଙ୍କୁ କହିବା ॥" *

'ଆଗତଭବିଷ୍ୟ' ଲେଖିବା ପ୍ରଥା ପଞ୍ଚସଖାଙ୍କ ଯୁଗରୁ ଆରମ୍ଭ ହୋଇଥିଲା । କବି ବାଲିଗାଁ ଦାସ ମଧ୍ୟ ଦୁଇଖଣ୍ଡି 'ଆଗତଭବିଷ୍ୟ' ପୁସ୍ତକ ଲେଖିଛନ୍ତି । ତଦ୍‌ବ୍ୟତୀତ ଓଡ଼ିଶାର ବହୁ କବି 'ଆଗତଭବିଷ୍ୟ ମାଳିକା' ଲେଖି ଜନସମାଜକୁ ଶୃଙ୍ଖଳିତ କରିବାର ପ୍ରୟାସ କରିଛନ୍ତି । ସାଲବେଗ ମଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମ୍ବନ୍ଧରେ ଦୁଇଟି ଅଧ୍ୟାୟ ଲେଖି 'ଆଗତଭବିଷ୍ୟ' ବର୍ଣ୍ଣନା କରିଥିବା ଅସମ୍ଭବ ନୁହେଁ ! ଆହୁରି ମଧ୍ୟ କୁହାଯାଇପାରେ ଯେ, ଅନ୍ୟ କେହି କବି 'କଳିଭାରତ' ପୁସ୍ତକରେ ଅଧ୍ୟାୟ ଦୁଇଟି ଲେଖି ଲୋକପ୍ରିୟ ଭକ୍ତକବି ସାଲବେଗଙ୍କ ନାମରେ ଭଣିତା କରିପାରିଥାନ୍ତି । ଯା'ହେଉ, ଅନ୍ୟ କୌଣସି ପ୍ରମାଣ ମିଳିବା ପର୍ଯ୍ୟନ୍ତ 'କଳିଭାରତ' ପୁସ୍ତକରେ ସନ୍ନିବେଶିତ ଅଧ୍ୟାୟ ଦୁଇଟି ସାଲବେଗଙ୍କ ରଚନା ରୂପେ ଗ୍ରହଣ କରାଯାଇ-ପାରେ ।

---

* ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ 'ଓଡ଼ିଆ ଭଜନ' **ପ୍ରଥମ** ଭାଗ, ପୃଷ୍ଠା-୧୬୩ରୁ ସଙ୍ଗୃହୀତ ।

## ସାଲବେଗଙ୍କ ଦେବୀଭଜନ

ଭକ୍ତକବି ସାଲବେଗ ମାତାଙ୍କ ଉପଦେଶ ଅନୁସାରେ 'ବାଳମୁକୁନ୍ଦ'ଙ୍କୁ ନିଜର ଇଷ୍ଟଦେବରୂପେ ଗ୍ରହଣ କରିଥିଲେ । ତତ୍ପରେ ସେ ଶ୍ରୀକ୍ଷେତ୍ରରେ ବାଦକଣ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ଆକୃଷ୍ଟ ହୋଇଉଠିଲେ । ମନ୍ଦିର ଭିତରକୁ ଯାଇ ଦର୍ଶନ କରିବାର ସୁଯୋଗ ତାଙ୍କର ନ ଥିବାରୁ, ସେ ରଥଯାତ୍ରାରେ ପ୍ରଭୁଙ୍କୁ ଦର୍ଶନକରି ତାଙ୍କ ଲୀଳା-ବର୍ଣ୍ଣନାରେ ବିଭୋର ହୋଇଉଠିଥିଲେ ଏବଂ ପୁରୀରେ ଥିବା ସମୟରେ ମଧ୍ୟ ସେ ଶିବଭଜନ ରଚନା କରିଥିଲେ ।

ଏହା ପରେ ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ନିର୍ଗୁଣ ଭକ୍ତିଧାରା ପ୍ରତି ତାଙ୍କର ମନ ଆକୃଷ୍ଟ ହୋଇଥିବ, ତେଣୁ ସେ କେତୋଟି ବ୍ରହ୍ମଜ୍ଞାନ ଭଜନ ରଚନାରେ ମନ ବଳାଇଥିଲେ ।

କିନ୍ତୁ ସାଲବେଗଙ୍କ ରଚନାରୁ ଦେବୀଙ୍କ ଭଜନ ମିଳିବା ପ୍ରକୃତରେ ଆଶ୍ଚର୍ଯ୍ୟର ବିଷୟ । ଭକ୍ତକବି ଦେବୀଭକ୍ତ ଥିବାର କୌଣସି ସୂଚନା ମିଳେନାହିଁ; କିନ୍ତୁ ପଦ୍ୟଟି ପାଠ କଲେ ଜଣାଯାଏ ଯେ, କବି 'ଶ୍ରୀ ନନ୍ଦବାଳା'ଙ୍କୁ ପାଇବା ପାଇଁ ଦେବୀ ମଙ୍ଗଳାଙ୍କୁ ସ୍ତୁତି କରିଛନ୍ତି ।

"କହେ ସାଲବେଗ ହୀନ,
ଏହି ମୋର ନିବେଦନ
ବେଗେ ଭେଟାଅ ନନ୍ଦବାଳା ।"

କୌଣସି ଦେବୀସାଧକ ଭକ୍ତକବି ସାଲବେଗଙ୍କୁ ଦେବୀ ମଙ୍ଗଳାଙ୍କୁ ଆରାଧନା କରିବା ଲାଗି ଉପଦେଶ ଦେଇଥିବା ଅସମ୍ଭବ ନୁହେଁ । କାରଣ ବ୍ରଜକାମିନୀଗଣ ଶ୍ରୀକୃଷ୍ଣଙ୍କୁ ପାଇବା ଲାଗି ଦେବୀଙ୍କ ନିକଟରେ ପ୍ରାର୍ଥନା କରିଥିଲେ ।

ଆଲୋଚନାରୁ ଜଣାଯାଏ ଯେ, ରଘୂତ୍ତମ ତୀର୍ଥ ନାମକ ଜନୈକ ଓଡ଼ିଆ କବି ତାଙ୍କ ରଚିତ ସଂସ୍କୃତ ଗୀତିକାବ୍ୟ 'ମୁକୁନ୍ଦବିଳାସ'ରେ ଗୋପିକାମାନଙ୍କଦ୍ୱାରା ଗିରିରାଜସୁତାଙ୍କ ପ୍ରାର୍ଥନା କରାଇଛନ୍ତି । ଗୋପକନ୍ୟାମାନେ ଶ୍ରୀକୃଷ୍ଣଙ୍କୁ ପ୍ରାଣପ୍ରିୟରୂପେ ପାଇବା ଲାଗି ଗିରିଜାଙ୍କୁ ସ୍ତୁତି କରିଛନ୍ତି ।

"ପ୍ରଣତ ଜନ ପ୍ରିୟକାରିଣୀ, ଭୟହାରିଣୀ,
ବିମଳକମଳମୁଖୀ ଦେବି ! ଜୟ ଗିରିରାଜସୁତେ !!
ସୁରବର କାମଦ କାମିନୀ, ଗଜଗାମିନୀ,
ସୁରୁଚିର କାଞ୍ଚନ ଗୌରୀ, ଜୟ ଗିରିରାଜସୁତେ !

× × ×

କୁରୁ ମମ ନନ୍ଦସୁତଂ ପତିଂ ମତସଙ୍ଗତିଂ ।
ଅନଘରଘୁତ୍ତମ ଗୀତେ, ଜୟ ଗିରିରାଜସୁତେ !'' *

କବି ସାଲବେଗ ଗୋପିକା ଭାବରେ ଶ୍ରୀକୃଷ୍ଣଙ୍କ ଆରାଧନା କରୁଥିବାରୁ, ଦେବୀ ମଙ୍ଗଳାଙ୍କ ଅନୁଗ୍ରହ ପ୍ରାର୍ଥନା କରି ଅରାଧ ଦେବଙ୍କୁ ପାଇବାର କାମନା କରିଛନ୍ତି । ତାଙ୍କ ପଦ୍ୟରେ ବର୍ଣ୍ଣିତ ମଙ୍ଗଳା ଚତୁର୍ଭୁଜା, ଲାବଣ୍ୟମୟୀ, ପଙ୍କଜାସନୀ, ଚନ୍ଦ୍ରକଳା, ପଦ୍ମ, ମୃଣାଳ ଓ ଜପମାଳାଧାରିଣୀ । ତାଙ୍କର ଅନୁଗ୍ରହ ପ୍ରାର୍ଥନା କରି ଭକ୍ତକବି ଲେଖିଛନ୍ତି—

ଜୟ ଜୟ ଦେବୀ ମଙ୍ଗଳା
ରୂପ ଲାବଣ୍ୟ ଅତି ଚତୁର୍ଭୁଜ ମୂରତି
ସେ ତ ଅଙ୍ଗ ବରନ କଲା ॥
ପଙ୍କଜ ଚରଣ ପଙ୍କଜ ଆସନ
ଯେଉଁକ କରେ ଚନ୍ଦ୍ର ଛଡ଼ଦଶ କଳା,
ଯେଉଁକ କରେ କମଳ ଯେଉଁକ କରେ ମୃଣାଳ
ଯେଉଁକ କରେ ଜିତ ଜପମାଳା ।

ଭକ୍ତକବିଙ୍କର ଏହି ଆରାଧ୍ୟା ମଙ୍ଗଳା ହେଉଛନ୍ତି—କାକଟପୁରର ମହାମଙ୍ଗଳା । କାକଟପୁରରେ ପୂଜିତା ଓଡ଼ିଶାର ପ୍ରଖ୍ୟାତ ମଙ୍ଗଳାଙ୍କ ମୂର୍ତ୍ତିତତ୍ତ୍ୱରୁ ଜଣାଯାଏ ଯେ, ଦେବୀଙ୍କ ମୂର୍ତ୍ତି କଳାମୁଗୁନି ପଥରରେ ନିର୍ମିତ ହୋଇଛି । ପ୍ରାୟ ଛଅଫୁଟ ଉଚ୍ଚ ଖଣ୍ଡିଏ ପ୍ରସ୍ତରରେ ପୀଠ ନିର୍ମିତ ହୋଇଛି । ପ୍ରତିଷ୍ଠିତ ପଦ୍ମାସନ ଉପରେ ଦେବୀଙ୍କର ଚତୁର୍ଭୁଜା ମୂର୍ତ୍ତି ସନ୍ନିବେଶିତ ହୋଇଛି । ମଙ୍ଗଳା ବାମଜାନୁ ମାଡ଼ିବସିଛନ୍ତି ଏବଂ ସେ ଚତୁର୍ଭୁଜା । ଦେବୀଙ୍କ ଦକ୍ଷିଣ ଭୁଜ ଦୁଇଟିରେ ପୂର୍ଣ୍ଣଚନ୍ଦ୍ର, ଜପମାଳା; ବାମଭୁଜ ଦୁଇଟିରେ କମଳ ଓ ମୃଣାଳ ଆୟୁଧରୂପେ ଶୋଭାପାଉଛି । ଆଲୋଚକ ସ୍ୱର୍ଗତ ରାଧାଚରଣ ପଣ୍ଡାଙ୍କ ଲିଖିତ 'ପ୍ରାଚୀନଦୀର ଐତିହାସିକ ବିଭବ' ପୁସ୍ତକରୁ ଜଣାଯାଏ ଯେ, କାକଟପୁର ମଙ୍ଗଳାଙ୍କ ବାମ ହସ୍ତ ଦୁଇଟିରେ କମଳ ଓ ଜପ ସଂଖ୍ୟା କରୁଥିବା ପରି ମାଳାଟିଏ ରହିଛି ।**

ଦୀର୍ଘ ଅଢ଼େଇଶହ ବର୍ଷ ତଳେ କବି ସାଲବେଗ ମଙ୍ଗଳାଙ୍କ ଚାରିହସ୍ତରେ ଥିବା ଆୟୁଧ ସମ୍ବନ୍ଧରେ ଯେଉଁ ବର୍ଣ୍ଣନା କରିଛନ୍ତି, ତାହା ନିଶ୍ଚୟ ଆଲୋଚକ ପଣ୍ଡାଙ୍କ ବିବରଣୀ ତୁଳନାରେ ପ୍ରାମାଣିକ ।

---

* ମୁକୁନ୍ଦବିଳାସ—କବି. ରଘୁତ୍ତମ ତୀର୍ଥ, ଚତୁର୍ଥ ସର୍ଗ, ରାଜ୍ୟ ସଂଗ୍ରହାଳୟ ପୋଥି ।
** ପ୍ରାଚୀ ନଦୀର ଐତିହାସିକ ବିଭବ—ପୃ-୧୧୯

ସାଲବେଗ କାକଟପୁର ମଙ୍ଗଳାଙ୍କୁ ସ୍ତୁତି କରିବାର କାରଣସ୍ୱରୂପ ଆଉ ଗୋଟିଏ ପ୍ରଶ୍ନ ମନରେ ଉଙ୍କିମାରେ । ଭକ୍ତକବି କେବଳ ରଥଯାତ୍ରାରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଭଲ ଭାବରେ ଦେଖିବାର ସୁଯୋଗ ପାଉଥିଲେ; କିନ୍ତୁ କବିଙ୍କ ଜୀବଦଶା ମଧ୍ୟରେ ଗୋଟିଏ 'ନବକଳେବର' ହୋଇଥିବାରୁ ସେବକମାନେ 'ଦାରୁ' ଅନ୍ୱେଷଣ କରୁଥିଲେ । ତା ପୂର୍ବରୁ କାକଟପୁର ମଙ୍ଗଳାଙ୍କ ନିକଟରେ ପୂଜା ଅର୍ଚ୍ଚନା କରାଯିବାର ପ୍ରଥା କେଉଁ ଅମଳରୁ ପ୍ରଚଳିତ ହୋଇଆସୁଛି । ସେହି ଅବସରରେ ସାଲବେଗ କାକଟପୁର ଯାଇଥିବା ଆଦୌ ଅସମ୍ଭବ ବୋଲି ମନେହୁଏ ନାହିଁ । କାରଣ ମଙ୍ଗଳାଙ୍କ ସୁଦୟା ହେଲେ ଶୀଘ୍ର 'ଦାରୁ' ମିଳିଯିବ ଏବଂ ଚତୁର୍ଦ୍ଧାମୂର୍ତ୍ତିଙ୍କ 'ନବକଳେବର' ଦେଖି ଭକ୍ତମଣ୍ଡଳୀ ଆନନ୍ଦରେ ବିଭୋର ହୋଇ ଉଠିବେ । ଭକ୍ତକବି ସେହି ଅବସରରେ କାକଟପୁର ମଙ୍ଗଳାଙ୍କୁ ସ୍ତୁତିକରି ଶୀଘ୍ର 'ନନ୍ଦବଳା'ଙ୍କୁ ଦେଖିବା ପାଇଁ ପଦ୍ୟଟିଏ ରଚନା କରିଥିଲେ ।

ଆହୁରି ମଧ୍ୟ ମୂର୍ତ୍ତିତତ୍ତ୍ୱ ଗବେଷଣାରୁ ଜଣାଯାଏ ଯେ, ଓଡ଼ିଶାର ଦୁର୍ଗାମୂର୍ତ୍ତି ଦ୍ୱିଭୁଜାଠାରୁ ଆରମ୍ଭ କରି ଅଷ୍ଟାଦଶଭୁଜା ପର୍ଯ୍ୟନ୍ତ ଅଛନ୍ତି । ତନ୍ମଧ୍ୟରେ ଅଧିକାଂଶ ଦୁର୍ଗାମୂର୍ତ୍ତି ମହିଷମର୍ଦ୍ଦିନୀ ଓ ଅଷ୍ଟଭୁଜା । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ମଧ୍ୟରେ ଦ୍ୱିଭୁଜା, ଚତୁର୍ଭୁଜା, ଅଷ୍ଟଭୁଜା, ଦଶଭୁଜା ଓ ଦ୍ୱାଦଶଭୁଜା ଦୁର୍ଗାମୂର୍ତ୍ତି ସଂରକ୍ଷିତ ହୋଇଛନ୍ତି । ପ୍ରସିଦ୍ଧ ଜୈନପୀଠ ଖଣ୍ଡଗିରିରେ 'ବାରଭୁଜା ଦୁର୍ଗା' ଗୋଟିଏ ଗୁମ୍ଫାରେ ଥିବାରୁ ଉକ୍ତ ଗୁମ୍ଫାଟି 'ବାରଭୁଜା ଗୁମ୍ଫା' ନାମରେ ପ୍ରସିଦ୍ଧି ଲାଭ କରିଛି । ପ୍ରାଚୀ ନଦୀର କୂଳେ କୂଳେ ବିଭିନ୍ନ ଭୁଜା ତଥା ଭିନ୍ନ ଭିନ୍ନ ଆୟୁଧଧାରିଣୀ ଦେବୀମୂର୍ତ୍ତି ପୂଜା ପାଉଛନ୍ତି । ଏତଦ୍‌ବ୍ୟତୀତ ବାଣପୁରର ଭଗବତୀ, ଝଙ୍କଡ଼ର ସାରଳା, ସମ୍ବଲପୁରର ସମଲେଇ, ବାଙ୍କୀର ଚର୍ଚ୍ଚିକା, ଭଦ୍ରକର ଭଦ୍ରକାଳୀ, ଯାଜପୁରର ବିରଜା ଓ ଶ୍ରୀକ୍ଷେତ୍ରର ବିମଳା ଓ ରାମଚଣ୍ଡୀ ପ୍ରଭୃତି ବହୁ ଦେବୀମୂର୍ତ୍ତି ପୂଜା ପାଉଛନ୍ତି । କେତେକ ସ୍ଥାନର ସେହି ଦେବୀମୂର୍ତ୍ତିଗୁଡ଼ିକ ଶାକ୍ତ ମତରେ ପୂଜା ପାଉଛନ୍ତି ଏବଂ ଅନ୍ୟ କେତେକ ସ୍ଥାନରେ ବୈଷ୍ଣବୀ ମୂର୍ତ୍ତିରୂପେ ଅଦ୍ୟାପି ପରିଚିତା । ବିଶେଷତଃ ଯାଜପୁରର 'ବିରଜା' ଓ ଶ୍ରୀକ୍ଷେତ୍ରର 'ବିମଳା' ଭୈରବୀରୂପେ ଭାରତୀୟ ତନ୍ତ୍ରଶାସ୍ତ୍ରରେ ସୁପରିଚିତା । ଭକ୍ତକବି ସାଲବେଗ ପୁରୀରେ ଦୀର୍ଘଦିନଧରି ବାସ କରିଥିବାରୁ ଶକ୍ତି ସାଧକମାନଙ୍କ ସମ୍ପର୍କରେ ଆସିଥିବା ଅସମ୍ଭବ ନୁହେଁ । ସେହିମାନଙ୍କ ପ୍ରଭାବରେ ପ୍ରଭାବିତ ହୋଇ ସେ ନିଜର ଆରାଧ୍ୟ ଦେବ ଶ୍ରୀକୃଷ୍ଣ ବା ଶ୍ରୀଜଗନ୍ନାଥଙ୍କ ଦର୍ଶନ ଲାଭକରିବା ନିମିତ୍ତ 'ଗୋପିକା ଭାବରେ' ଦେବୀ ଭଜନ, ବିଶେଷତଃ ମଙ୍ଗଳାଙ୍କ ଭଜନ ରଚନା କରି ଗାନ କରିଥିବା ଅତ୍ୟନ୍ତ ସ୍ୱାଭାବିକ ବୋଲି ମନେହୁଏ ।

ଭଜନ ରଚନାରେ ଓଡ଼ିଆ ସାହିତ୍ୟର ସ୍ଥାନ ବୋଧହୁଏ ଭାରତରେ ସର୍ବୋଚ୍ଚ ବୋଲି ମନେହୁଏ । ବ୍ୟାସକବି ସାରଳା ଦାସଙ୍କ ଯୁଗରୁ ଆରମ୍ଭକରି ଆଜି ସୁଦ୍ଧା ହଜାର ହଜାର ଭଜନ ଓଡ଼ିଆ ଭାଷାରେ ରଚିତ ହୋଇଛି । ଜଣେ ଜଣେ କବି ଶହ ଶହ ସଂଖ୍ୟକ ଭଜନ ରଚନାକରି ସାହିତ୍ୟଭଣ୍ଡାରକୁ ପରିପୁଷ୍ଟ କରିବା ସଙ୍ଗେ ସଙ୍ଗେ ଭକ୍ତ ଜନତାର

ପ୍ରାଣରେ ଅଲୌକିକ ଆନନ୍ଦ ଜାତ କରାଇଛନ୍ତି; କିନ୍ତୁ କବିଙ୍କ ପ୍ରାଣର ବ୍ୟାକୁଳତା ପ୍ରତ୍ୟେକ ଭଜନରେ ଫୁଟିଉଠିବା ସମ୍ଭବ ନୁହେଁ । କେହି କେହି ହୁଏତ ଭଜନ ମାଧ୍ୟମରେ ନିଜ ପାଣ୍ଡିତ୍ୟର ପରାକାଷ୍ଠା ଦେଖାଇବାରେ ସମର୍ଥ ହୋଇଛନ୍ତି; କିନ୍ତୁ ଭକ୍ତିପୂତ ପ୍ରାଣର ଆକୁଳତା ଯେଉଁ ଭଜନଗୁଡ଼ିକରେ ଚିତ୍ରିତ ହୋଇଛି, ସେହି ଭଜନଗୁଡ଼ିକ ଚିରକାଳ ଲୋକମୁଖରେ ଗୀତ ହୋଇଆସୁଛି । ଏହି ଧରଣର ଭଜନ ରଚନାରେ ସାଲବେଗ ଥିଲେ ଅନ୍ୟତମ ସାଧକ ।

ସାଲବେଗଙ୍କ ଜୀବନଚରିତରୁ ଜଣାଯାଏ ଯେ, ସେ ଜଣେ ସମାଜର ଉପେକ୍ଷିତ ବ୍ୟକ୍ତି ଥିଲେ । ଗୋଟିଏ ବିଧବା ବ୍ରାହ୍ମଣୀର ଗର୍ଭରୁ ତଥା ମୋଗଲ ଔରସରୁ ଜନ୍ମ ହୋଇ-ଥିବାରୁ, ପରବର୍ତ୍ତୀ ଜୀବନରେ ସେ ଅନେକ ଅନୁତାପ କରିଥିଲେ । କାରଣ କିମ୍ବଦନ୍ତୀରୁ ଜଣାଯାଏ ଯେ, ସେ ଶ୍ରୀକୃଷ୍ଣଙ୍କ କୃପାରୁ ରୋଗମୁକ୍ତ ହେବା ପରେ ଶ୍ରୀକ୍ଷେତ୍ରକୁ ଯାଇଥିଲେ ଏବଂ ବଡ଼ଦାଣ୍ଡରେ ଭଜନ କୀର୍ତ୍ତନ ଗାନକରିବା ସଙ୍ଗେ ସଙ୍ଗେ ମହାପ୍ରସାଦ ଭକ୍ଷଣକରି କାଳଯାପନ କରିବାକୁ ମନସ୍ଥ କରିଥିଲେ; କିନ୍ତୁ ସେ ଯୁଗର ରକ୍ଷଣଶୀଳ ପଣ୍ଡା, ସେବକ ଓ ଅନ୍ୟାନ୍ୟ ଲୋକମାନେ ତାଙ୍କୁ ସେତିକ ସୁଯୋଗ ଦେଇନଥିଲେ ଏବଂ ତାଙ୍କୁ ସଙ୍ଗେ-ସଙ୍ଗେ ବହୁ ପ୍ରକାର ଅସୁବିଧାରେ ପକାଇଥିଲେ । ମାତ୍ର ଅନନ୍ୟଭକ୍ତ ସାଲବେଗ ଲୋକ-ମାନଙ୍କ ଅଡ଼ୁଆ, ବିଦ୍ରୂପ ତଥା କଦର୍ଯ୍ୟ ବ୍ୟବହାର ପ୍ରତି ଭ୍ରୂକ୍ଷେପ ନକରି ବଡ଼ଦାଣ୍ଡରେ ପଡ଼ିରହିଲେ ଏବଂ ପୂର୍ବପରି ଭଜନ ଗାନ କରିବାରେ ଲାଗିଲେ । ଧୀରେ ଧୀରେ ତାଙ୍କ ପ୍ରତି ଲୋକମାନଙ୍କର ଧାରଣା ବଦଳିଗଲା ସତ; କିନ୍ତୁ ଶ୍ରୀମନ୍ଦିର ଭିତରକୁ ତାଙ୍କୁ ଛଡ଼ା-ଯାଉଥିଲା ନାହିଁ । ସେଥିଲାଗି ସାଲବେଗ ଅତ୍ୟନ୍ତ ବ୍ୟାକୁଳ ହୋଇଉଠିଥିଲେ । ବିଶେଷତଃ ତାଙ୍କ ହାତରୁ କେହି ଜଳଗ୍ରହଣ କରୁନଥିବାରୁ ସେ ମନେ ମନେ ଅତ୍ୟନ୍ତ ଉଦାସୀନ ହୋଇଉଠିଥିଲେ । ତେଣୁ ସେ ତାଙ୍କର ପ୍ରାୟ ପ୍ରତ୍ୟେକ ଭଜନ ଶେଷରେ ନିଜ ଜାତିର ନୀଚତା ତଥା ନିଜ ମନର କ୍ଷୋଭ ପ୍ରକାଶ କରି ଲେଖିଛନ୍ତି—

"ପିତା ମୋ ମୋଗଲ ବେଟା ମାତା ମୋ ବ୍ରାହ୍ମଣୀ / ହୀନକୁଲେ ଜାତ ମୁହିଁ ହିନ୍ଦୁ ନ ଛୁଅଁ ପାଣି / ନିଲମ ଘୋଡ଼ା ବାଙ୍କେ ମୁଣ୍ଡାଗିରିରେ ପାଗୁଡ଼ି / ଏହି ରୂପେ ସାଲବେଗ ଭୂମିରେ ଯା'ନ୍ତି ଗଡ଼ି / କହେ ସାଲବେଗ ହୀନ ଜାତିରେ ଯବନ / କହେ ସାଲବେଗ ଜାତିରେ ହୀନ / କହେ ସାଲବେଗ ହୀନ ମୁହିଁ ମୂଢ଼ମତି / କହେ ସାଲବେଗ ହୀନ ମୂଢ଼ ମୁଁ ଅଜାତି / କହେ ସାଲବେଗ ହୀନ କୃଷ୍ଣପାଦରେ ଧ୍ୟାନ ମୂଢ଼ ଜାତିରେ ମୁଁ ଯବନ / କହେ ସାଲବେଗ ହୀନ ମୁଁ ପତିତ ଦୀନ ।।"

ଭକ୍ତ ସାଲବେଗ ନିଜ ଜାତି ସମ୍ବନ୍ଧରେ ବାରମ୍ବାର କହି ପ୍ରାୟଶ୍ଚିତ୍ତ କରୁଥିଲେ ହେଁ, ତତ୍କାଳୀନ ସମାଜରେ ତାଙ୍କ ପ୍ରତି ଘୃଣାଭାବ ରହିଥିଲା । ପରୋକ୍ଷରେ ସେ ସମାଜର ବଡ଼ପଣ୍ଡାମାନଙ୍କୁ ନିବେଦନ କରି କହିଛନ୍ତି ଯେ ଘଟଣାଚକ୍ରରେ ମୋର ଜନ୍ମ ମୋଗଲ ଔରସରୁ ହୋଇଥିଲେ ମଧ୍ୟ, ମୋର ଗର୍ଭଧାରିଣୀ ବ୍ରାହ୍ମଣୀ ଏବଂ ମୁଁ ତାଙ୍କର ସ୍ତନ୍ୟପାନ କରି

ଜୀବନ ଯାପନ କରୁଛି; ତେଣୁ ମୋ ଧମନୀରେ ହିନ୍ଦୁ ରକ୍ତ ପ୍ରବାହିତ ହେଉଛି । ଆଜୀବନ ଶ୍ରୀରଙ୍ଗାଚରଣରେ ଆଶ୍ରୟ ନେଇଛି ଏବଂ ଲକ୍ଷ୍ମୀପତି ପତିତପାବନ ମୋର ଇଷ୍ଟ; ତେଣୁ ମୋତେ ଯେ କୌଣସି ବିଧାନରେ ଶୁଦ୍ଧ କରିଦିଅ !

ଆହୁରି ମଧ୍ୟ ସେ କୈଫିୟତ୍ ଦେଇ କହିଛନ୍ତି ଯେ, ହିନ୍ଦୁମାନେ ଇସ୍‌ଲାମ ଧର୍ମର 'ଫକୀର'ଙ୍କୁ ସତ୍ୟପୀରରୂପେ 'ଶିରଣୀ' ଦେଇ ପୂଜା କରୁଛନ୍ତି । ତେଣୁ ମୁଁ ସେହି 'ଫକୀର'ଙ୍କର ବଂଶରେ ଜାତ ହୋଇଥିଲେ ହେଁ ମୋର ଜନ୍ମଦାତ୍ରୀ ବ୍ରାହ୍ମଣୀ ।

"ପିତା ତ ମୋଗଲ ବେଟା ମାତା ଯେ ବ୍ରାହ୍ମଣୀ ।
ହୀନକୁଳେ ଜନ୍ମ ହେଲି ହିନ୍ଦୁ ନଖାଏ ପାଣି ॥
ପିତା ଦେଲେ ଜୀବଦାନ ମାତା ଦେଲେ କ୍ଷୀର ।
କହେ ସାଲବେଗ ହୀନ ଜାତିରେ ଫକୀର ॥"

ତଥାପି ଯେତେବେଳେ ତାଙ୍କର କରୁଣ ନିବେଦନ ସମାଜପତିମାନଙ୍କ କର୍ଣ୍ଣଗୋଚର ହେଲାନାହିଁ, ସେ ପତିତପାବନ ଶ୍ରୀନୀଳଗିରିନାଥଙ୍କଠାରେ ନିବେଦନ କରି ନିଜକୁ 'ଶୁଦ୍ଧି' କରିବା ଲାଗି ଶରଣ ପଶିଛନ୍ତି ।

"କହେ ସାଲବେଗ ମୂଢ଼ମତି ।
ଶୁଦ୍ଧି କରିବେ ଶ୍ରୀ ଲକ୍ଷ୍ମୀପତି ॥
ଶ୍ରୀରଙ୍ଗାଚରଣେ ଶରଣ ପଶୁଛି ଶୁଦ୍ଧି କର ଶାଳଗ୍ରାମ ମୂର୍ତ୍ତି ॥

× × ×

କହେ ସାଲବେଗ ହୀନ ଜାତି ।
ଶ୍ରୀରଙ୍ଗାଚରଣେ ରହୁ ମତି ॥
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି ଦୟାକର ବାରେ ଲକ୍ଷ୍ମୀପତି ॥

× × ×

ଧରିତ୍ରୀରେ ମେରୁ ନାମ କଳ୍ପତରୁ
ତୃଷ୍ଣା ଶୀତ ହେଲା ସିନା ।
ଅରୁଣ ଚରଣ ଆଶ୍ରେ କଲାଠାରେ
ବୁଡ଼ିଲା ମୋର ଚେତନା ॥
ମୁଁ ଅବା ଅପ୍ରାଧୀ ହେ କୃପାବାରିଧି
ଥରେ ନୋହିଲା କରୁଣା ॥
କହେ ସାଲବେଗ ପ୍ରଭୁପଣକୁ ଏ
ଦାଣିବ ବଢ଼ୁତ ଊଣା ॥

× × ×

ଆହେ ନୀଳଶଇଳ ପ୍ରବଳ ମତ୍ତ ବାରଣ ।
ମୋ ଆରତ-ନଳିନୀ-ବନକୁ କର ଦଳନ ।।" ଇତ୍ୟାଦି ।

ଏହିପରି ଭାବରେ ଦେଖିବାକୁ ଗଲେ, ଭକ୍ତକବି ତାଙ୍କର ଅଧିକାଂଶ ରଚନାରେ ନିଜ ମନର କ୍ଷୋଭ ଜଣାଇ ଭଜନ କରିଛନ୍ତି ।

## ସାଲବେଗଙ୍କ ପଦ୍ୟାବଳୀରେ ରସ ପରିବେଷଣ

ସାଲବେଗ ଆଜନ୍ମ ବ୍ରହ୍ମଚର୍ଯ୍ୟ ଥିବାର ସୂଚନା 'ଦାର୍ଢ୍ୟତାଭକ୍ତି ରସାମୃତ'ରୁ ମିଳେ । 'ବାଳମୁକୁନ୍ଦ'ଙ୍କ ଅପରୂପ ମୂର୍ତ୍ତି ସ୍ୱପ୍ନରେ ଦର୍ଶନକରି ଏବଂ ତଦ୍‌ଗତ ଭକ୍ତିରେ ଅମୋଘ ବ୍ୟାଧିରୁ ମୁକ୍ତ ହେବାପରେ, ସେ ଶ୍ରୀକୃଷ୍ଣଙ୍କ ଭକ୍ତିରେ ତଲ୍ଲୀନ ହୋଇଯାଇଥିଲେ । ତେଣୁ ତାଙ୍କ ରଚନାର ଅଧିକାଂଶ ପଦ୍ୟ ଶ୍ରୀକୃଷ୍ଣଲୀଳାମୂଳକ ହୋଇଥିବାର ପରିଲକ୍ଷିତ ହୁଏ ।

ଶ୍ରୀକୃଷ୍ଣଲୀଳା ମଧ୍ୟରେ ଗୋପଲୀଳା ପ୍ରକରଣଟି ଅତ୍ୟନ୍ତ ଆମୋଦପୂର୍ଣ୍ଣ ତଥା ରସାଣିତ ହୋଇଛି । ଷୋଳସହସ୍ର ଗୋପାଙ୍ଗନାଙ୍କ ସହିତ ନଟବର ଶ୍ରୀକୃଷ୍ଣଙ୍କ ବାଳକୌତୁକ ଲୀଳା ବାତ୍ସଲ୍ୟରସର ଅପୂର୍ବ ହିଲ୍ଲୋଳ ସୃଷ୍ଟି କରେ । ଶ୍ରୀମଦ୍ ଭାଗବତ, ହରିବଂଶ ଆଦି ପୁରାଣରେ ଶ୍ରୀକୃଷ୍ଣ ବାଲ୍ୟଲୀଳାର ମନୋଜ୍ଞ ରସ-ପରିବେଶ ପ୍ରତ୍ୟେକ ପାଠକକୁ ରସ-ରାଜ୍ୟରେ ନିମଜ୍ଜିତ କରାଏ ।

ହିନ୍ଦୀଜଗତର ପ୍ରଖ୍ୟାତ କବି ସୁରଦାସ ଶ୍ରୀକୃଷ୍ଣଙ୍କ ବାଲଲୀଳା ବର୍ଣ୍ଣନାରେ ବି ପ୍ରସିଦ୍ଧି ଅର୍ଜନ କରିଛନ୍ତି; କିନ୍ତୁ ଭକ୍ତ ସାଲବେଗ ତାଙ୍କ ପଦ୍ୟାବଳୀଗୁଡ଼ିକରେ ବାତ୍ସଲ୍ୟରସର ଯେଉଁ ଅମୃତନିସ୍ୟନ୍ଦୀ ପ୍ରବାହିତ କରିଛନ୍ତି, ତାହା ପ୍ରତ୍ୟେକ ପାଠକର ହୃଦୟକୁ ସ୍ପର୍ଶ କରେ । ପଦ୍ୟାବଳୀର ଏକଶତଚବିଶ ସଂଖ୍ୟକ ପଦ୍ୟ, 'ସୁନାପୁଅ ନାଚଇରେ ଖାଇବ ଲବଣୀ ସର' ବାତ୍ସଲ୍ୟ-ବିଳାସର ଏକ ଚମତ୍କାର ଉଦାହରଣ । ଯଶୋଦା ହାତରେ ଗୋଟିକା, ଅଧାମ, ସର, ଲବଣୀ ଧରି ଗୋଡ଼ାଇଛନ୍ତି; କିନ୍ତୁ ବାଲଲୀଳାରେ ବିଭୋର ଶ୍ରୀକୃଷ୍ଣ 'ନାହିଁ ନାହିଁ ବୋଲି ଶ୍ରୀମୁଖ ହଲାଇ' ମାତାଙ୍କୁ ପ୍ରତ୍ୟାଖ୍ୟାନ କରୁଛନ୍ତି । ଏ ଧରଣର ପଦ୍ୟ ଗୋଟିଏ ମାତ୍ର ପ୍ରସ୍ତୁତ ସଂଗ୍ରହରେ ଦିଆଯାଇଥିଲେ ହେଁ, ସାଲବେଗ ଶ୍ରୀକୃଷ୍ଣଙ୍କ ବାଲଲୀଳା ବର୍ଣ୍ଣନା କରି ବାତ୍ସଲ୍ୟରସର ଶାଶ୍ୱତ ଧାରା ଛୁଟାଇ ଆହୁରି ଅନେକ ପଦ୍ୟ ରଚନା କରିଥିବାର ଆଶା କରାଯାଏ ।

ଆଲଙ୍କାରିକମାନେ ଭକ୍ତିକୁ ରସକୋଟିରେ ଗଣନା ନକରି ତାହାକୁ ଭାବ, ଅର୍ଥାତ୍ ଭକ୍ତିରସ ନ ହୋଇ ଭକ୍ତିଭାବ ହେବ ବୋଲି ସ୍ୱସ୍ୱ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି; କିନ୍ତୁ ଗୌଡ଼ୀୟ ଆଲଙ୍କାରିକ ରୂପଗୋସ୍ୱାମୀ ଭକ୍ତିରସର ମାହାତ୍ମ୍ୟ ଦେଖାଇବା ସଙ୍ଗେ ସଙ୍ଗେ ନବରସ ମଧ୍ୟରେ 'ଭକ୍ତି'କୁ ଅନ୍ତର୍ଭୁକ୍ତ କରିଛନ୍ତି । ସେହି ଦୃଷ୍ଟିରୁ ବିଚାରକଲେ ସାଲବେଗଙ୍କ ପଦ୍ୟାବଳୀର ପ୍ରାୟ ସମସ୍ତ ପଦ୍ୟ ଭଜନ ପର୍ଯ୍ୟାୟରେ ଅନ୍ତର୍ଗତ ହେବା ଅସମୀଚୀନ ନୁହେଁ । ବିଶେଷତଃ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଲାଗି ତାଙ୍କ ହୃଦୟରେ

ଯେଉଁ ଆକୁଳତା ପ୍ରକାଶ ପାଇଛି, ସେଗୁଡ଼ିକ ପ୍ରତ୍ୟେକ ଶୁଦ୍ଧାଭକ୍ତିର ଜ୍ୱଳନ୍ତ ଉଦାହରଣ । ବିଶେଷତଃ କବି ପ୍ରାୟ ଅଧିକାଂଶ ପଦ୍ୟ ଶେଷରେ 'କହେ ସାଲବେଗ ହୀନ' ବୋଲି ଲେଖି ନିଜ ଭକ୍ତି-ଭାବନାର ଚରମପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

"କହେ ସାଲବେଗ ହୀନ    ଏ ତ ଜଗମୋହନ
ଜଗମୋହନ ରୂପ ଧରିଛି !
×    ×    ×
ଶ୍ରୀରଙ୍ଗାଚରଣେ ଯାଇ    ମୂଢ଼ ସାଲବେଗ ଧାଇଁ
ଗୋ ସଖି, ମୁକତି ଲଭିବା ପାଇଁ ।
×    ×    ×
କହେ ସାଲବେଗ ହୀନ    ଏହି ମୋ ନିବେଦନ
ତକା ଚରଣେ ରହୁ ମନ କରେ, ଶ୍ୟାମଗୋରି !
×    ×    ×
କହେ ସାଲବେଗ ହୀନ ଜାତି
ଶ୍ରୀରଙ୍ଗାଚରଣେ ରହୁ ମତି ।
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି ଦୟାକର ବାରେ ଲକ୍ଷ୍ମୀପତି !
×    ×    ×
କହେ ସାଲବେଗ ହୀନ ଜାତିରେ ଯବନ,
ଶ୍ରୀରଙ୍ଗାଚରଣ ବିନୁ ନ ଜାଣଇ ଆନ ।।" ଇତ୍ୟାଦି ।

ଭକ୍ତ ସାଲବେଗ ଐକାନ୍ତିକ ଭକ୍ତିଭାବରେ ବିହ୍ୱଳ ହୋଇଯାଇଛନ୍ତି । ତାଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ, ଶ୍ରୀଜଗନ୍ନାଥ ଓ ଶ୍ରୀରାମ ଏକାକାର ହୋଇଉଠିଛନ୍ତି । ସେ ବୃନ୍ଦାବନର ରାଧାବଲ୍ଲଭ ଗୋପୀନାଥ ଶ୍ରୀକୃଷ୍ଣଙ୍କ ସହିତ ନୀଳଗିରିପତି ଶ୍ରୀଜଗନ୍ନାଥଙ୍କୁ ଏକାକାର କରି ଭକ୍ତି-ଅର୍ଘ୍ୟ ଅର୍ପଣ କରିଛନ୍ତି । ଭକ୍ତିଭାବର ଚରମ ସୋପାନରେ ପ୍ରବେଶ କରି ସାଲବେଗ ପ୍ରଭୁଙ୍କୁ ଆବେଦନ ଶୁଣାଇ କହିଛନ୍ତି—

"ସାତଶ ପଞ୍ଚାଶ କୋଶ ଚାଲି ନପାରଇ,
ମୋହ ଯିବା ଯାଏ ନନ୍ଦିଘୋଷେ ଥିବ ରହି,
ଜଗବନ୍ଧୁ ହେ ଗୋସାଇଁ !"

ଭକ୍ତର ଶେଷ-କାମନା ଭଗବାନଙ୍କ ଦେହରେ ଲୀନ ହୋଇଯାଇ ମୋକ୍ଷଲାଭ କରିବା । କିନ୍ତୁ ଭକ୍ତ ସାଲବେଗ ଭକ୍ତି-ସୋପାନରେ ଆହୁରି ପାଦେ ଆଗେଇ ଯାଇ ଶ୍ରୀଜଗନ୍ନାଥଙ୍କ ଚଲପଥ 'ଶରଧାବାଲି'ରୁ ହାତେ ମାଗି ସେହି ଧୂଳିରେ ଗଡ଼ି ଶ୍ରୀଜଗନ୍ନାଥଙ୍କ-ଠାରେ ଲୀନହେବାର କାମନା କରି ଲେଖିଛନ୍ତି—

"ଜଗନ୍ନାଥ ହେ, କିଛୁ ମାଗୁନାହିଁ ମୁଁ ତୋତେ,
ମାଗୁନାହିଁ ଧନ, ମାଗୁନାହିଁ ଜନ,
ମାଗୁଛୁ ଶରଧାବାଲିକୁ ହାତେ !"

ଭକ୍ତକବି ସାଲବେଗଙ୍କ ରଚନାରେ 'ଆଦିରସ' ବା ଶୃଙ୍ଗାରରସର ବର୍ଣ୍ଣନା କମ୍ ମିଳେ ନାହିଁ । ଏଠାରେ ସ୍ୱତଃ ମନରେ ପ୍ରଶ୍ନ ଉଠେ, ଜଣେ ଆଜନ୍ମ ବ୍ରହ୍ମଚାରୀ ତଥା ଭକ୍ତିଭାବର ଚରମସୋପାନରେ ଉପନୀତ କବିଙ୍କ ରଚନାରେ ଆଦିରସର ଉତ୍ସ ସମ୍ଭବ ହେଲା କିପରି ? ଏ ପ୍ରଶ୍ନର ସମାଧାନ ସ୍ୱତଃ ହୋଇଯାଏ । ମହାକବି କାଳିଦାସ ପ୍ରମୁଖ କବିମାନେ ଦେବବିଷୟକ ରତିକେଳୀ ବର୍ଣ୍ଣନା କରିବାବେଳେ ଆଲଙ୍କାରିକମାନଙ୍କ ମନରେ ଏହି ପ୍ରଶ୍ନ ଉଠୁଥିଲା । ସେମାନେ ସେ ପ୍ରକାର ରତିକେଳୀ-ବର୍ଣ୍ଣନାକୁ ଲୌକିକ ରତିକେଳୀ ସହିତ ତୁଳନା ନକରି ହର-ପାର୍ବତୀ, ରାଧା-କୃଷ୍ଣ, ଏପରିକି ସୀତା-ରାମଙ୍କ ରତିକେଳୀର ବର୍ଣ୍ଣନା ସ୍ୱ ସ୍ୱ ଅଳଙ୍କାର ଗ୍ରନ୍ଥରେ ଦେବବିଷୟକ ରତି ଅର୍ଥାତ୍ ଅଲୌକିକ ରସବଳାସରୂପେ ଗ୍ରହଣ କରିଛନ୍ତି । ମହାକବି ଜୟଦେବ ସେହି ଦୃଷ୍ଟିକୋଣରୁ ରାଧାମାଧବଙ୍କ ରହସ୍ୟଲୀଳାର ଜୟଗାନକରି 'ଶ୍ରୀ ଗୀତଗୋବିନ୍ଦ' ଆରମ୍ଭ କରିଛନ୍ତି—"ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ ।"

ଶୃଙ୍ଗାରରସ ବିପ୍ରଲମ୍ଭ ଓ ସମ୍ଭୋଗ ଭେଦରେ ଦୁଇ ପ୍ରକାର । ଆଲଙ୍କାରିକମାନେ 'ନ ବିନା ବିପ୍ରଲମ୍ଭେନ ଶୃଙ୍ଗାରଃ ପୁଷ୍ଟିମଶ୍ନୁତେ' ବୋଲି ପ୍ରାମାଣିକ ବଚନ ଦେଇଛନ୍ତି । ସେହି ଦୃଷ୍ଟିକୋଣରୁ ବିଚାରକଲେ, ବିପ୍ରଲମ୍ଭର ବର୍ଣ୍ଣନା କରି କବି ସାଲବେଗ ତାଙ୍କ ପଦ୍ୟାବଳୀ ମଧ୍ୟରେ ଅନେକଗୁଡ଼ିଏ ପଦ୍ୟ ରଚନା କରିଛନ୍ତି ।

"ତରୁ ତଳେ କେ ବଂଶୀ ବଜାଇଲା,
କି ଆଗୋ ମିତ !
ବାଂଶୁରୀ ବଜାଇ ମୋ ଚିତ୍ତ ମୋହିଲା ଲୋ !"

× × ×

"ଦୂତୀ ଗୋ, କହିବ କୃଷ୍ଣଙ୍କୁ
କମ୍ପାଇଁ ନନ୍ଦ ସ୍ତ୍ରୀ କରି ତେଜିଲେ ଆମ୍ଭଙ୍କୁ !"

× × ×

"ଦୂତୀ ଗୋ, ଦେଖି କେ ଧରିବ ହିଆ,
ଯଶୋଦାନନ୍ଦନ ବନମାଳିଆ !"

× × ×

"କହେ ମହାଦେଈ ଶୁଣ ଶ୍ରୀହରି ।
ରାଧିକା ମରିବ ଝୁରି ଝୁରି ।।"

ତାଙ୍କୁ ନ ଦେଖିଲେ ଦଣ୍ଡେ,
ପ୍ରାଣ ମୋ ନ ରହେ ପିଣ୍ଡେ ।
ଅତନୁ ମରମେ ପଶି କରୁଛୁ ଦହନ ॥"

ବିପ୍ରଲମ୍ଭର ଅନ୍ୟାନ୍ୟ ବିଭାବ ହେଉଛି ଲଜ୍ଜାତ୍ୟାଗ, ସ୍ୱପ୍ନ, ମୂର୍ଚ୍ଛା । ସାଲବେଗଙ୍କ ବର୍ଣ୍ଣନାରେ ସେ ପ୍ରକାର ପଦ୍ୟାବଳୀର ଅଭାବ ପରିଲକ୍ଷିତ ହୁଏନାହିଁ । ପ୍ରାଚୀନ ପରମ୍ପରା ଅନୁସରଣ କରି ଭକ୍ତକବି ଶ୍ରୀରାଧାକୃଷ୍ଣଙ୍କ ବିରହବର୍ଣ୍ଣନା ପ୍ରସଙ୍ଗରେ ବିପ୍ରଲମ୍ଭର ନିଖୁଣ ଚିତ୍ର ଅଙ୍କନ କରି ରାଧାଭାବରେ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ମତି ଦେଇଛନ୍ତି ।

"ଦିନେ ନିଶିରେ ମୋ' ପୁରକୁ ଗଲି ।
ପଲଙ୍କ ଉପରେ ଯାଇ ବସିଲି ॥
ସେହି ଦିନୁ ଲାଜଭୟ ମୋ ଚଳେ ।
ନନ୍ଦନନ୍ଦନଙ୍କୁ ହୋଇଲି ଗତେ ॥"

× × ×

କହେ ସାଲବେଗ ମୁଁ ମୂଢ଼ମତି ।
ରାଧାଭାବେ ନିତ୍ୟ ରହୁ ମୋ ମତି ॥"

ଶ୍ରୀକୃଷ୍ଣଙ୍କ ବିରହରେ ରାଧା ପାଗଳିନୀ ହୋଇଯାଇଛନ୍ତି । ଅତୀତର ସ୍ନେହ, ସୋହାଗ ମନେପଡ଼ି ତାଙ୍କ ମରମକୁ 'ଦହନ' କରୁଛି । ସେ ହତାହତ ଜ୍ଞାନ ହରାଇଛନ୍ତି । ଶ୍ରୀରାଧାଙ୍କ ଦୁଃଖରେ ଦୁଃଖୀ ହୋଇ ଭକ୍ତ ସାଲବେଗ ଉଚ୍ଛ୍ୱସିତ କଣ୍ଠରେ ଗାଇଉଠିଛନ୍ତି—

"କେ ଯାଇ କହିବ ଶ୍ୟାମବନ୍ଧୁଙ୍କୁ ବଚନ'
ଆଲିଙ୍ଗନ କରି ତାକୁ ଦେବି ମୁଁ ଚୁମ୍ବନ ।
କେ ଯାଇ କହିବ ଶ୍ୟାମବନ୍ଧୁଙ୍କୁ ବାରତା,
ଗଳାରୁ ମୁଁ କାଢ଼ିଦେବି ହାର ମୋ ମୁକୁତା ॥
ପ୍ରାଣବନ୍ଧୁଙ୍କୁ କହିବ ଦେଶୁ ହେଲେ ଦୂର ।
ପରାଣବନ୍ଧୁଙ୍କଠାରୁ ହେଲି ମୁଁ ଅନ୍ତର ॥"

ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ସାନ୍ନିଧ୍ୟ ଲାଭ କରିବାପାଇଁ ନାନାପ୍ରକାର ବେଶରେ ଭୂଷିତ ହୋଇ କେତେବେଳେ ବୁଢ଼ାନାଉରି ବେଶ ସାଜି ଦନ୍ଦରା ନାବରେ ବସିଛନ୍ତି; ଆଉ କେତେବେଳେ କାଚରା, ଶଙ୍ଖାରି, ସୁନାରି ଓ ଯୋଗୀ ବେଶରେ ପ୍ରାଣପ୍ରିୟାର ମନ କିଣି ନେବାକୁ ଚେଷ୍ଟା କରିଛନ୍ତି । କବି ସାଲବେଗଙ୍କ ପଦ୍ୟରେ ଶ୍ରୀକୃଷ୍ଣଙ୍କ ବାଘବେଶଟି ପ୍ରକାରାନ୍ତରରେ ବର୍ଣ୍ଣିତ ହୋଇଛି ।ଜନୈକା ଗୋପୀ ସଖୀମାନଙ୍କ ଆଗରେ ଛଳୋକ୍ତି ପ୍ରକାଶ କରି କହିଛନ୍ତି—

"ବାଘ ମାଡ଼ିଲାରେ, ନିକୁଞ୍ଜ ବନରେ ।
ବିରହୀ ହୋଇଛି ବାଘ ନ ପାଇ ଅଧାରେ ଗୋ ।

x x x

ଅଧର ସୁନ୍ଦର ବାଘ ଦେହସାକ କଲା ଗୋ !
କପୋଳେ ଚନ୍ଦନବିନ୍ଦୁ ଆଖି ଚକାଡୋଳା ଗୋ !
କାହୁଁ ଏ ଅଇଲା ବାଘ ଦେଖିଲି ତ ନାହିଁ ଗୋ ।
କହେ ସାଲବେଗ ବାଘ ନାମଟି କହ୍ନାଇ ଗୋ ॥"

ପରଶେଷରେ ଶ୍ରୀରାଧା କୃଷ୍ଣଙ୍କ ଈପ୍‌ସିତ ମିଳନ ହୋଇଛି । ଦୁହେଁ ଦୁହିଁଙ୍କ ପ୍ରେମରେ ନିମଜ୍ଜି ଯାଇଛନ୍ତି; କିନ୍ତୁ ଶ୍ରୀକୃଷ୍ଣଙ୍କୁ କେବଳ ଆପଣାର କରି ପାଇବା ପାଇଁ ଶ୍ରୀରାଧା ଚିନ୍ତା କରି ତାଙ୍କ ଦକ୍ଷିଣ-ନାୟକ ସ୍ୱଭାବରେ ମନେ ମନେ ବିରକ୍ତ ହୋଇ 'ଖଣ୍ଡିତା' ନାୟିକାରେ ପରିଣତ ହୋଇଛନ୍ତି ।

ବିପ୍ରଲମ୍ଭ ବର୍ଣ୍ଣନାରେ ସାଲବେଗ ଯେପରି ସିଦ୍ଧହସ୍ତତା ଦେଖାଇଛନ୍ତି, ମାନିନୀ ନାୟିକା ବର୍ଣ୍ଣନାରେ ମଧ୍ୟ ଅନୁରୂପ ଚମତ୍କାରିତା ଦେଖାଇ ପାଠକମାନଙ୍କୁ ମୁଗ୍ଧ କରିଛନ୍ତି । ବାସକସଜ୍ଜା ନାୟିକା ଶ୍ରୀରାଧା କୁଞ୍ଜରେ ରାତିଉଜାଗର ରହି ପ୍ରାଣପ୍ରିୟଙ୍କ ଆଗମନର ପ୍ରତୀକ୍ଷା କରିଛନ୍ତି । ରାତି ପାହିଗଲା, ଶଠନାଗର ହଠିଆ ଶ୍ରୀକୃଷ୍ଣ ପ୍ରଭାତ ସମୟରେ ଅନ୍ୟ ନାୟିକାର ରତି-ସଙ୍କେତ ଅଙ୍ଗରେ ଧାରଣକରି କୁଞ୍ଜରେ ପ୍ରବେଶ କରିଛନ୍ତି । ସେହି ପ୍ରସଙ୍ଗରେ ମହାକବି ଜୟଦେବ ଶ୍ରୀରାଧାଙ୍କ ମୁଖରେ କହିଛନ୍ତି—

"ଯାହି ଯାହି ମାଧବ ଯାହି କେଶବ,
ମାବଦ କୈତବ ବାଦମ୍ ।

ଭକ୍ତକବି ସାଲବେଗ ଜୟଦେବଙ୍କର ପଦାଙ୍କ ଅନୁସରଣ କରି ଲେଖିଛନ୍ତି—

"ଯାଅ ଯାଅ ମୋଠାରୁ ତୁମ୍ଭେ ରସିକ କହ୍ନାଇ,
ତରଳ ତରଙ୍ଗ ରୂପ ଅଙ୍ଗ ଦିଶୁନାହିଁ ॥
ଦଣ୍ଡେହେଁ ନରହି ମୋହଠାରେ ହେ ମୋହନ,
ବିପରୀତ ଦେଖିଲି ମୁଁ ଅଙ୍ଗରେ ଅଞ୍ଜନ ॥
କପୋଳେ କସ୍ତୁରୀ ଚିତା ଲଗିଛି ଅଳତା,
କି ବୋଲି ତାଠାକୁ ଗଲ ସେ କାହା ବନିତା ॥
ଅଙ୍ଗୁଷ୍ଠି ର ରତ୍ନମୁଦି ମାଲ କି ସକଳ,
ରତି ଅଳସରେ ଅବା ଦେଇ ତ ଅଇଲ ॥"

ବିପ୍ରଲମ୍ଭ ପରେ ସମ୍ଭୋଗ ବର୍ଣ୍ଣନା କରିବାରେ ମଧ୍ୟ କବି ସାଲବେଗ କମ୍ ପ୍ରତିଭା ପ୍ରଦର୍ଶନ କରିନାହାନ୍ତି । ଅଭିମାନିନୀ ଶ୍ରୀରାଧାଙ୍କ ମାନଭଞ୍ଜନ ନିମିତ୍ତ ଜୟଦେବ ପ୍ରଭୃତି ପ୍ରାଚୀନ କବିମାନେ ଯେପରି ଶ୍ରୀକୃଷ୍ଣଙ୍କ ମୁହଁରେ ଅନୁନୟ ପ୍ରକାଶ କରିଛନ୍ତି, ସେ ତୁଳନାରେ ସାଲବେଗ କମ୍ ଅନୁନୟପୂର୍ଣ୍ଣ ପଦ୍ୟ ଲେଖିନାହାନ୍ତି । କବି ଶ୍ରୀକୃଷ୍ଣଙ୍କ ମୁଖରେ କହିଛନ୍ତି—

ବିମ୍ବାଧର, ତୋ ରୂପକୁ ଶୃଙ୍ଗ ନୁହେ ସର ରେ ।
କାଲି ଦେଖିଥିଲି ସ୍ନାନବେଳେ,
ତନୁ ଜରଜର କାମଶରେ,
ଝୀନବାସ ଫୁଟି କୁଚ ଦିଶୁଥିଲା ମୂର୍ଚ୍ଛାଗତ ଗଲି ତେତେବେଳେ ॥”

ପରେ ମାନମୟୀ ଶ୍ରୀରାଧାଙ୍କର ମାନଭଞ୍ଜନ ହୋଇଛି । ଶ୍ରୀକୃଷ୍ଣଙ୍କ ଦ୍ୱାରା ମିଳିତା ହୋଇ ସେ ପ୍ରେମରସରେ ନିମଜ୍ଜିତା ହୋଇଯାଇଛନ୍ତି । ତତ୍ପରେ କଂସର ଡାକରା ପାଇ ଶ୍ରୀକୃଷ୍ଣ ଗୋକୁଳ ତ୍ୟାଗ କରି ମଧୁପୁରକୁ ଚାଲିଯାଇଛନ୍ତି । ପୁଣି ଆରମ୍ଭ ହେଲା ଶ୍ରୀରାଧାଙ୍କର ବିରହ । ପ୍ରାଣପ୍ରିୟଙ୍କୁ ଝୁରି ଝୁରି ରାଧିକା କ୍ଷୀଣତନୁ ହୋଇଯାଇଛନ୍ତି । ତା'ପରେ ତାଙ୍କଠାରେ ବିରହିଣୀର ଦଶଦଶା ଆରମ୍ଭ ହୋଇଛି । ମଥୁରାକୁ ଯିବାବେଳେ ଶ୍ରୀକୃଷ୍ଣ ବୃନ୍ଦାବନ ମଧ୍ୟରେ ଫେରିଆସିବାଲାଗି କଥା ଦେଇଯାଇଛନ୍ତି ।

“ଗୋପୀମାନେ, ଫେରି ଆସିବୁ ବୃନ୍ଦାବନେ ।
କଂସ ଦେଇଛି ଲେଖା ।
ମୁଦ ଫେଡ଼ିଣ ଦେଖା
ଯିବୁ ସେ ମାମୁଁଙ୍କ ଦର୍ଶନେ ଗୋ ॥”

ଅବଧି ଶେଷ ହୋଇଯାଇଛି, ପ୍ରାଣପ୍ରିୟ ଆସିନାହାନ୍ତି । ଶ୍ରୀରାଧାଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗି ଯାଇଛି । ସେ ଶ୍ରୀକୃଷ୍ଣଙ୍କ ବିରହରେ ପାଗଳିନୀ ହୋଇ ହିତାହିତ ଜ୍ଞାନ ହରାଇ ବସିଛନ୍ତି । କାଳିଦାସଙ୍କ ଯକ୍ଷ ପରି, ସେ ମଧ୍ୟ କୋକିଳ ଆଗରେ ନିଜର ବିରହବେଦନା ପ୍ରକାଶ କରି ପ୍ରାଣପ୍ରିୟ ନିକଟକୁ ସନ୍ଦେଶ ଘେନି ଯିବାଲାଗି ଅନୁରୋଧ କରିଛନ୍ତି ।

“କୋକିଳ, କାନ୍ତ ବିଦେଶେ ମୋର ରେ !
ହୁଆ ଜରଜର ତନୁ ଅଥିର ରେ, କୋକିଳ ।
ଯେଉଁ ଦେଶେ କାନ୍ତ ରହିଲେ ଯାଇ,
ସେ ଦେଶେ ବରଷା ଋତୁ କି ନାହିଁରେ, କୋକିଳ ।

×          ×          ×

ଏ ନବଯୌବନ ବହନ ଭାର,
କେତେ ମୁଁ ସହିବି ଅବଳା ନାରୀ ରେ, କୋକିଳ !”

ଶ୍ରୀରାଧାଙ୍କ ବିରହବେଦନା ପ୍ରଳାପରେ ପରିଣତ ହୋଇଛି । ସେ ଅତୀତକାଳୀନ ସମସ୍ତ ଲୀଳା-ଖେଳା ଅହରହ ଚିନ୍ତାକରି, ପରିଶେଷରେ ସ୍ୱପ୍ନରେ ସେହି ଦୃଶ୍ୟ ଦେଖି ଚମକପଡ଼ି ଉଠି ଆସି ସଖି ଆଗରେ ସମସ୍ତ ବୃତ୍ତାନ୍ତ ଅତି କରୁଣଭାବରେ ବଖାଣି ଯାଇଛନ୍ତି ।

"ସ୍ୱପ୍ନେ ଦେଖିଲି ଆଜ ରଜନୀ
ନନ୍ଦନନ୍ଦନ ମୋତେ କୋଳେ ଘେନି ।
କେତେ ଭାବକଲେ ମୁରଲୀପାଣି
ଗୋ ସଜନି !

× × ×

ମୁକୁର ଦେଖାଇ ଯଦୁନାୟକ ।
ଧଇଲେ ମୋ ଅର୍ଦ୍ଧ ଇନ୍ଦୁ ଚିବୁକ ॥

× × ×

ଖିଣ୍ଡିଣ କରନ୍ତେ ମନ୍ମଥ ଯୁକ୍ତି ।
ନାରଦେ ଶୃଙ୍ଗାର ରସ ଉପୁଜି ॥
କେତେ ଗୁପତରେ ସେ କାମକାର ।
ଚିତ୍ତ ଭଲେ ଥରେ ନୋହେ ଅନ୍ତର ॥
ନୀବିବନ୍ଧଛନ୍ଦ ନୋହେ ବାହାର ।
ଜୁରି କଲେ କେଳି ରସଭଣ୍ଡାର ॥
ହରିଲି ସୁରତ ହାରିଲି କାମ ।
ମୋ ଅଙ୍ଗେ ଆଉଜି ରହିଲେ ଶ୍ୟାମ ॥

× × ×

ଏଥି ଉତ୍ତାରୁ ପାଇଲି ଚେତନ ।
ଉଠି ଲୋଡ଼ନ୍ତେ କୋଳେ ନାହିଁ ଶ୍ୟାମ ॥"

ପଦ୍ୟଟି ଉତ୍କଟ ଆଦିରସାତ୍ମକ ହୋଇଥିଲେ ହେଁ, ଏହା ବିରହିଣୀ ନାୟିକା ଶ୍ରୀରାଧାଙ୍କ ସ୍ୱପ୍ନବୃତ୍ତାନ୍ତ ହୋଇଥିବାରୁ ତାହା ପାଠକଙ୍କୁ କରୁଣଗର୍ଭିତ ଶୃଙ୍ଗାରରସରେ ନିମଜ୍ଜିତ କରାଇଥାଏ ।

ଯା'ହେଉ, ଭକ୍ତିଭାବ, କରୁଣରସ ତଥା ଶୃଙ୍ଗାରରସର ପରିବେଷଣରେ କବି ସାଲବେଗ ସ୍ୱରଚିତ ପଦ୍ୟାବଳୀକୁ ଉଦ୍ଭାସିତ କରିବା ସଙ୍ଗେ ସଙ୍ଗେ ଭକ୍ତଜନତାର ମାନସ-ପଟଳରେ ରହସ୍ୟରାଜ୍ୟର ଏକ ଅମୂର୍ତ୍ତି ଆଲେଖ୍ୟ ଅଙ୍କନ କରିଛନ୍ତି । □□□

# କବି ସାଲବେଗଙ୍କ ଭାଷା

ଭକ୍ତକବି ସାଲବେଗ ଯେଉଁ ସମୟରେ ଜନ୍ମଗ୍ରହଣ କରିଥିଲେ, ସେ ସମୟଟି ଓଡ଼ିଆ ସାହିତ୍ୟର ସ୍ୱର୍ଣ୍ଣଯୁଗ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ତତ୍ପୂର୍ବରୁ ଓଡ଼ିଆ ସାହିତ୍ୟର ଉତ୍ତୁଙ୍ଗ ହିମାଚଳ ସଦୃଶ ସାରଳା ଦାସଙ୍କ 'ମହାଭାରତ', ବଳରାମ ଦାସଙ୍କ 'ଜଗମୋହନ ରାମାୟଣ', ଜଗନ୍ନାଥ ଦାସଙ୍କ 'ଶ୍ରୀମଦ୍ ଭାଗବତ', ପଞ୍ଚସଖାଙ୍କ ଅସଂଖ୍ୟ କାବ୍ୟ କବିତା, ହଳଧର ଦାସଙ୍କର 'ଅଧ୍ୟାତ୍ମ ରାମାୟଣ' ପ୍ରଭୃତି ପ୍ରଖ୍ୟାତ ଗ୍ରନ୍ଥ, ମାର୍କଣ୍ଡଦାସ, ଅର୍ଜୁନ ଦାସ, ନରସିଂହ ସେଣ ପ୍ରଭୃତିଙ୍କ କାବ୍ୟ-କବିତା ଓଡ଼ିଆ ଭାଷାରେ ରଚିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟ ପ୍ରଗତିପଥରେ ଆଶାନୁରୂପ ଅଗ୍ରସର ହୋଇଥିଲା । ସେହିପରି ଏକ ସୁବର୍ଣ୍ଣ ମୁହୂର୍ତ୍ତରେ କବି ସାଲବେଗଙ୍କ ଅଭ୍ୟୁଦୟ ଓଡ଼ିଆ ସାହିତ୍ୟ ପକ୍ଷରେ ଏକ ମାହେନ୍ଦ୍ର-ବେଳା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଭକ୍ତକବି ସାଲବେଗଙ୍କ ବାଲ୍ୟଜୀବନ 'ଲାଲବାଗ୍'ର ଯବନ ସଂସ୍କୃତି ମଧ୍ୟରେ ଅତିବାହିତ ହୋଇଥିବାରୁ ସେ ପିଲାଦିନରୁ ନିଶ୍ଚିତ ଭାବରେ ଉର୍ଦ୍ଦୁ, ହିନ୍ଦୀ ଭାଷା ଶିକ୍ଷା କରିଥିବେ; କିନ୍ତୁ ତାଙ୍କ ମାତା ଓଡ଼ିଆ ବ୍ରାହ୍ମଣ ଘରର ଝିଅ ହୋଇଥିବାରୁ, ମା'ଙ୍କ ପ୍ରଭାବରେ ଓଡ଼ିଆ କଥିତ ଭାଷାରେ ତାଙ୍କର ବେଶ୍ ଦଖଲ ହୋଇଥିବ ।

ମା'ଙ୍କ ପ୍ରଭାବରେ ସାଲବେଗ ଯବନ ସଂସ୍କୃତିର କବଳରୁ ମୁକ୍ତହୋଇ ହିନ୍ଦୁ ସଂସ୍କୃତି ଆଡ଼କୁ ଉନ୍ମୁଖ ହେବାମାତ୍ରେ, ବହୁ ସାଧୁସନ୍ଥଙ୍କ ସାହଚର୍ଯ୍ୟ ଲାଭକରିଥିବା ଅସ୍ୱାଭାବିକ ନୁହେଁ । ଆହୁରି ମଧ୍ୟ ଶ୍ରୀଚୈତନ୍ୟଦେବ ଓ ଗୋସ୍ୱାମୀମାନଙ୍କ ପ୍ରଚାର ଫଳରେ ଓଡ଼ିଶାରେ ଓଡ଼ିଆ କବିମାନେ ମଧ୍ୟ ବଙ୍ଗଳା ଭାଷାକୁ ମାଧ୍ୟମ ରୂପେ ଗ୍ରହଣ କରି କାବ୍ୟ-କବିତା ରଚନା କରୁଥିଲେ । ବିଶେଷତଃ ରାୟ ରାମାନନ୍ଦ, ପ୍ରତାପରୁଦ୍ର, ଜଗନ୍ନାଥ ଦାସ, ମାଧବୀ ଦାସୀ, ବଳରାମ ଦାସ ପ୍ରଭୃତି ପ୍ରସିଦ୍ଧ ବୈଷ୍ଣବ କବିମାନେ ଶ୍ରୀକୃଷ୍ଣ-ଚରିତାବଳୀର ବର୍ଣ୍ଣନା କରି ବଙ୍ଗଳା ଓ ବ୍ରଜଭାଷାରେ କବିତା ରଚନା କରୁଥିବାରୁ, ଭକ୍ତ ସାଲବେଗଙ୍କ ଉପରେ ତାର ପ୍ରଭାବ ପଡ଼ିଥିବ । ଏଣୁ ନିଃସନ୍ଦେହରେ କୁହାଯାଇପାରେ ଯେ, ଭକ୍ତକବି ଓଡ଼ିଆ, ବଙ୍ଗଳା, ଉର୍ଦ୍ଦୁ ଓ ବ୍ରଜଭାଷା ଜାଣିଥିଲେ । ତେଣୁ ତାଙ୍କ କବିତାବଳୀରେ ପ୍ରୋକ୍ତ ଭାଷାଗୁଡ଼ିକର ପ୍ରଭାବ ପରିଲକ୍ଷିତ ହେବା ସ୍ୱାଭାବିକ ।

ସାଲବେଗଙ୍କ କବିତାରେ ଅଣଓଡ଼ିଆ ଶବ୍ଦର ସମାହାର ଖୁବ୍ ବେଶି ବୋଲି ମନେ-ହୁଏନାହିଁ । ତଥାପି କେତୋଟି ସ୍ଥଳରେ ବଙ୍ଗଳା, ଉର୍ଦ୍ଦୁ ଶବ୍ଦ ଉର୍ଦ୍ଦୁ କବିଙ୍କ ଉପମାନ ପ୍ରଭୃତି ବ୍ୟବହୃତ ହୋଇଛି ।

"କାଳିଆ କାଳିଆ ବୋଲି, ଝୁରିଆ ଝୁରିଆ ମଲି ।।"

× × ×

ଏ କୁଳେ ଜନ୍ମିଲି ହିନ୍ଦୁ ନ ଖାଏ ମୋ ପାଣି ।।

× × ×

ଆପଣାର ଭୂମିବାଡ଼ି ନହର ପଡ଼ିଆରେ ।
ଆପଣେ ଚଳନ୍ତି ଯିବୁ ଦେହ ତ ଲଢ଼ିଆରେ ।।

× × ×

ପିତା ମୋ ମୋଗଲ ବେଟା ମାତା ଯେ ବ୍ରାହ୍ମଣୀ ।।

× × ×

ଚିବୁକ ସୁଲବ ବର ରାଜିତ ନିର୍ମଳ ।।

× × ×

ମୁକୁଟ ମନୋହର ଉରମାଳ ମନୋହର
ଅଙ୍ଗ ପୀତାମ୍ବର ରାଜିତେ ।।
କର୍ଣ୍ଣ କୁଣ୍ଡଳ ଅଧିକ ଝଲମଲ ।
କେଶରୀ ତିଳକ ବିରାଜିତେ ।।
ତଡ଼ିତ ନଓଘନ ନିନ୍ଦିତ ବରନ
ଲଜ୍ଜିତ କୋଟି ଅନଙ୍ଗରେ ।।

× × ×

ମାତା ତେଜ୍ୟା ପିତା ତେଜ୍ୟା ଆବର ତେଜ୍ୟା ଭାଇ ।
ସକଲ କୁଟୁମ୍ବ ତେଜ୍ୟା କରି ଗୋବିନ୍ଦରେ ଧ୍ୟାୟି ।।

× × ×

ନିଲମ୍ ଘୋଡ଼ା ବାଙ୍କେ ଜୁଡ଼ା ଶିରରେ ପାଗୁଡ଼ି ।

ଏତଦ୍ ବ୍ୟତୀତ ତାଙ୍କ ରଚିତ ବଙ୍ଗଳା ଓ ବ୍ରଜବୋଲି ରଚନା ପ୍ରତି ଲକ୍ଷ୍ୟକଲେ, ଉକ୍ତ ଦୁଇଟି ଭାଷାରେ ତାଙ୍କର ବେଶ୍ ଦଖଲ ଥିଲ ବୋଲି ନିଃସଙ୍କୋଚରେ କହିହୁଏ ।

"କୈଁୟା ନ ଭଜୋ କୈଁୟା ନ ଭଜୋ
ଝୁଠ୍ ଦୁନିୟା କାହେଁ କୈଁୟାରେ ମଜୋ ।।

× × ×

କହେ ସାଲବେଗ ସ୍ନାନ ଓ ରଙ୍ଗା ଚରନେ ।
ଓଇ ଶ୍ୟାମ ଅଲି ହୁଁୟା ଥାକବି ମଧୁପାନେ ।
ଦିବସ ରଜନୀ କାଲି ବିନୁ ନାହିଁ ଜାନରେ ।।"

ଓଡ଼ିଆ ଭାଷାରେ ସାଲବେଗଙ୍କ ଦକ୍ଷତା ବିଷୟ ଆଲୋଚନା କଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ । ସରସ, ସାବଲୀଳ, ସୁଶ୍ରାବ୍ୟ ପଦଯୋଜନାରେ ସାଲବେଗ ଥିଲେ ଜଣେ ସିଦ୍ଧହସ୍ତର ସଂଯୋଜକ କବି । ତାଙ୍କ ପଦଯୋଜନାର ଅଲୌକିକତା, ଉପମାନ ଉପମେୟ ଯୋଜନାର ଦକ୍ଷତା, ସ୍ୱତଃସ୍ଫୁର୍ତ୍ତି ସରଳ ପଦାବଳୀ ଯେକୌଣସି ଓଡ଼ିଆ ପାଠକ, ସମାଲୋଚକଙ୍କୁ ମୁଗ୍‌ଧ କରିବ । ତଦ୍‌ବ୍ୟତୀତ ପ୍ରାଚୀନ ଦେଶଜ ଶବ୍ଦ ପ୍ରୟୋଗରେ କବି ସାଲବେଗ ମଧ୍ୟ କମ୍ ବିଚକ୍ଷଣତା ଦେଖାଇ ନାହାନ୍ତି । ଉଦାହରଣ ସ୍ୱରୂପ କେତୋଟି ଶବ୍ଦ ଓ କ୍ରିୟାପଦ ଏଠାରେ ଉଦ୍ଧୃତ ହେଲା ।

'ଅଣସର, ଫୁଟି ଶୋଇଥିଲ, ନେଇଅଛୁ ଏକା, ନଅଣ ସୁନଆ (ସ୍ୱର୍ଣ୍ଣମୁଦ୍ରା), ଛୁଆଣି, ହୁଆ, ସୁବର୍ଣ୍ଣବାହୁ, ରମାଇଁ, ବାଇ, ଦୋଗୁଣ୍ଠି, ଅପହାଦା ବୋଧଇ, ଝଙ୍କ ତୋରଣି, ହୁଡ଼ାହୁଡ଼ି, ବଜ ସେହ୍ଲା, ଅପ୍ରାଧୀ, ଉଣା, ଯେହ୍ନେ କେମନ୍ତ, ଦୋଟି (ଦୁଇଟି), ଝୀନ ପତନୀ, ଅଠାକାଠି, ବାହୁଛି, ଭଣ୍ଡାଇବୁ, ଘେନମ, ବାହୁଡ଼ାଣୀ, ଠିଆଚଢା, ଦୋସଣି, ଧ୍ୱଂସିଆ, ଦ୍ରଶନ, ଶଗଡ଼ି, ଗୃପ, ଡୋଳଆ, ଆଣ୍ଟକଣ, ରହଣି, ପାବଛି, ଗହଣ, ଲଡ଼ଆ, ଅଠାକାଠି, ପୂତା, ଆତଙ୍କ, ପାହୋର, ନକ, ନାରଖାର, ମଞ୍ଜାଣି, ଗିଇଲି, ଛୁଦ୍ର (କ୍ଷୁଦ୍ର), ଅକତ (ସ୍ଥଗିତ), ଡର, ଏକାଇ, ଭଗାରି, ଦେବାନ୍ତି, ଧୁନି, ସୀତୟା, ଭାରଛି (ବାହାରଛି), ସ୍ନାହାନ, ଅଥିର, ଗୋଟିକା, ଅଧାମ, ଶାଚନ (ଶର୍କରା), ନେନ୍ତି, ଦେନ୍ତି, ସହନ୍ତା (ଲଜ୍ଜିଲା) ପ୍ରଭୃତି ।

କାବ୍ୟରଚନାଶୈଳୀ ମଧ୍ୟ କବି ସାଲବେଗଙ୍କର ଅତ୍ୟନ୍ତ ହୃଦୟଗ୍ରାହୀ । କବି ଅତ୍ୟନ୍ତ ସାବଲୀଳ ଶବ୍ଦଗୁଡ଼ିକୁ ସୁନ୍ଦର ଭାବରେ ଗୁନ୍ଥି ଏଡ଼େ ସୁଶ୍ରାବ୍ୟ ପଦ ରଚନା କରିଛନ୍ତି ଯେ, ତାହା ଯେ କୌଣସି ବିଦଗ୍‌ଧ ପାଠକଙ୍କୁ ମୁଗ୍‌ଧ କରିବ । ଉଦାହରଣ ସ୍ୱରୂପ କେତୋଟି ଯମକପୂର୍ଣ୍ଣ ପଦ ଏଠାରେ ଉଦ୍ଧୃତ ହେଲା ।

"ମୃଦୁ ମଧୁର ହାସ ଅଧରେ ଜଗପାଣ ।"
"ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ ।"

× × ×

"କାଳିଆ କାଳିଆ କ୍ରିପଣ୍ଡ କାଳିଆ ପିନ୍ଧିଛ ଝୀନ ପତନୀ,
କାଳିଆ ଅଙ୍ଗରୁ ବହେ ଶ୍ରମଜାଳ କାଳନ୍ଦୀ ନଦୀର ପାଣି ।"

× × ×

"ଜାଣୁ ଜାଣୁ ଶୁଣୁ ଶୁଣୁ ନଜାଣୁରେ ଅଜଣା ।"

× × ×

"ମୁରଲୀ ହେଲା ଶଲ ଲଜ୍ଜାରୁ ମୁଖୁ ଭଲ,
କିଛି ନବୋଲି ଗଲି ଆଉ ନ ବୋଲି ଗୋ ।"

× × ×

"କଣ୍ଠେ ହେମ ଗୁଞ୍ଜା ବେନି ଭ୍ରୂଲତା ଭୁଜଙ୍ଗିନୀ
ମୃଗଜ ନୟନୀ ମୁଖେ ମୃଦୁହାସୀ ।

× × ×

"କଳା ପୁରୁଷ ବୋଲି ହେଲାରେ ନାସ୍ତିକଲି
ଏବେ ତ ବଳୁଅଛୁ ଚଉ ।।" ଇତ୍ୟାଦି

**ସୁଲଳିତ ବାକ୍ୟାବଳୀ**—

"ଶ୍ରୀଭୁଜେ ଭୁଜ ପେଲି ମତ୍ତଗଜ ପ୍ରାୟେ ଝୁଲି,"

× × ×

"କଳା ବାନ୍ଧଣାଡ଼ି ପିନ୍ଧିବାର ବେଳେ ଅନାଇଥିଲି ଗୋ ତୋତେ,
ଆଗର ପଣତ ପଛକୁ ପକାଇ ବଂଶୀ ଲୁଚାଇଲୁ ମୋତେ ।"

× × ×

"ବାଙ୍କେ ବାଙ୍କେ ଯାଉ କଥା ତୁ ନକହୁ
କି ମାନ କରୁଛୁ ମୋରେ

× × ×

"ଲେଖାଯୋଖା ନାହିଁ ମୋ ହୃଦ ରମାଇଁ
ଟିକାଏ ଅନ୍ତର ନାହିଁ କି ପଶ୍ ।"

× × ×

"କାଳିଆ ଧନ, ତୋ ଲାଗି ଯାଉ ଏ ଜୀବନ ।।"

× × ×

"ମାତାଙ୍କ ସପତ ପିତାଙ୍କ ରଣ
ବାହୁଡ଼ାଣି ଦେବି ସୁରତି ଦାନ ।"

× × ×

"ଯହିଁକି ଡରଇ ତହିଁ ପଡ଼ିଲି ।"

× × ×

"ଆଗେ ଚଳେ ବଳଭଦ୍ର ମଧ୍ୟେ ଚନ୍ଦ୍ରମୁଖୀ ରେ,
ଆସୁଛି କାଳିଆ ପଛେ ଗହଟ ଲଗାଇ ରେ ।।"

× × ×

"ଗୁଞ୍ଜି ଗୁଞ୍ଜି ମାଳ ସଖୀ ଗୋପୀ ଘରବୁଡ଼ା ।।"

× × ×

"ଯାଇ ଫୁଲ କେଉ କେଉ ମଲ୍ଲୀ ଫୁଲ ଗଭା ।"

× × ×

"ସେ ତ ଚକ୍ଷ କାଲିଆ କାହା ପୁଅ ଗୋ କହ କହ ॥"

× × ×

"ବଙ୍କିମା ନୟନେ ଭେରିଛ ସୁହିଁଲେ
କାମେ ଜରଜର ମୋର ଦେହ ଗୋ କହ କହ !"

**ଉପମା—**

"ଦନ୍ତ ଡାଳିମ୍ବ ପନ୍ତି      ବିମ୍ବ ଅଧର ଜ୍ୟୋତି
ବଦନ ଶରଦ ସମ୍ପୂର୍ଣ୍ଣ ଶଶୀ ।"

× × ×

"ଜଘେ ଜାନୁଯୁଗ ରମ୍ଭା ପଦ ପଙ୍କଜ ଶୋଭା ॥"

× × ×

"କାଲିଆ ଅଙ୍ଗରେ ଝୋଟି ଚନ୍ଦନ ।
କଳା ମେଘେ ଯେସନେ ପୂର୍ଣ୍ଣିମୀ ଜହ୍ନ ॥
କଟୀତଟେ ଶୋହେ ପୀତ ବସନ ।
ନବ ଘନ କୋଳେ ବିଜୁଳି ଯେସନ ॥"

× × ×

"କପୋଳେ ଚନ୍ଦନ ବିନ୍ଦୁ ହୃଦେ କିବା ଇନ୍ଦୁ ।"

× × ×

"କୁଚ ହେମ କଳସ କଲି ଦାଡ଼ିମ ଶ୍ରୀଫଳ ।
କନକ ଶଙ୍କର ଘଟ ମନ୍ମଥ ମଙ୍ଗଳ ॥"

× × ×

"ଅତି ବିରାଜିତ ବରଭିରେ ମୋତି ହାରି ।
ହଂସ ବକ ଶ୍ରେଣୀ ଗଙ୍ଗାଜଳ ଦୁଗ୍ଧଧାରି ॥
ଚିବୁକ ସୁଲ୍ଲବବର ରାଜିତ ନିର୍ମଳ ।"

× × ×

"ମୃଗଜ ଖଞ୍ଜନ ମୀନ ପଙ୍କଜନୟନୀ ॥"

× × ×

"କରଯୁଗ ହେମ ଫଣୀ କନକ ମୃଣାଳ ॥" ଇତ୍ୟାଦି

× × ×

ଏହିପରି ଭାବରେ ଦେଖିବାକୁ ଗଲେ, କବି ସାଲବେଗ ଓଡ଼ିଆ ଭକ୍ତମଣ୍ଡଳୀ ମଧ୍ୟରେ ଜଣେ ଆଦର୍ଶ ଭକ୍ତରୂପେ ଯେପରି ବିଶିଷ୍ଟ ଆସନ ଅଲଂକୃତ କରିଥିଲେ, କବି ସମାଜରେ ମଧ୍ୟ

ଅନୁରୂପ ଗୌରବର ଅଧିକାରୀ ହୋଇପାରିଥିଲେ । ସେ ଶ୍ରୀକୃଷ୍ଣଙ୍କ 'ବାଳମୁକୁନ୍ଦ' ରୂପରେ ପ୍ରଲୁବ୍ଧ ହୋଇ ତାଙ୍କର ରୂପମାଧୁରୀର ବର୍ଣ୍ଣନରେ ଦକ୍ଷଚିତ୍ତ ହୋଇଥିବାରୁ, ଅପେକ୍ଷାକୃତ ଗଣଭାଷାର ବ୍ୟବହାରରେ ପଦାବଳୀ ରଚନା କରୁଥିଲେ । ତଦ୍‌ବ୍ୟତୀତ ବିଶିଷ୍ଟ ବିଦ୍ୱାନ୍‌ମାନଙ୍କ ଅପେକ୍ଷା ସାଧାରଣ ଜନତାଙ୍କ ସହିତ ବେଶି ସମ୍ପର୍କ ରଖିଥିବାରୁ, ତାଙ୍କ ରଚନାରେ ସର୍ବସାଧାରଣ ବୋଧଗମ୍ୟ ଭାଷାର ପ୍ରୟୋଗ ଅଧିକ ଦେଖାଯାଏ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ସେ ଆଦୌ କଠିନ ଶବ୍ଦ ବ୍ୟବହାର କରିନଥିଲେ । ତାଙ୍କ ରଚନାରେ ମଧ୍ୟ "ନୀଳାଦ୍ରିବାସ, ମତ୍ତ ବାରଣ, ତ୍ରିଭଙ୍ଗୀ, ଶରଣପଞ୍ଜର, ବାରଣ, ନନ୍ଦ, ଉରଗ, ମନ୍ମଥ, ମହୀନ୍ଦ୍ର, ରତ୍ନାସ୍ତ୍ର, ମୃଣାଳ, ଭୂକର୍ଣ୍ଣିକା, ନାସ୍ତି, ବାଞ୍ଛାନିଧି, ଭୂପାଳ, କାମଭଣ୍ଡାର, ପଦାବଳୀ, ସାଫଲ୍ୟ, ପାଦାମ୍ବୁଜ, ଜୀବ, ଉଦ୍ଧତ, ପୀତାମ୍ବର ଆଦି ସଂସ୍କୃତ ଶବ୍ଦ ପ୍ରୟୋଗ ହୋଇଥିବାର ଦେଖାଯାଏ ।

ତଦ୍‌ବ୍ୟତୀତ କବି ସାଲବେଗ ଆର୍ତ୍ତତ୍ରାଣ ପରମେଶ୍ୱରଙ୍କ କୃପାର ଅବଦାନରୁ ବିଭିନ୍ନ ଯୁଗରେ ଯେଉଁ ଭକ୍ତମାନେ ଉଦ୍ଧାର ପାଇଛନ୍ତି ତା'ର ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ସାଧାରଣ ପାଠକର ମାନସପଟଳରେ କେଉଁ ଯୁଗର ବଳି-ବାମନଚରିତ, ମୁଚୁକୁନ୍ଦ ସ୍ତୁତି, ଗଜଉଦ୍ଧାରଣ, ରାସଲୀଳାଚରିତ, ରାମାୟଣ ବୃତ୍ତାନ୍ତ, ପ୍ରହ୍ଲାଦ ଚରିତ, ଦ୍ରୌପଦୀ-ମାନଉଦ୍ଧାରଣ, ଗିରିଗୋବର୍ଦ୍ଧନଧାରଣ ଓ ଅଜାମିଳଚରିତ ଆଦି ଚିତ୍ରପଟପରି ଅଙ୍କିତ କରିଯାଇଛନ୍ତି ।

ଏତଦ୍‌ବ୍ୟତୀତ ଭକ୍ତକବିଙ୍କର ସଂସ୍କୃତ, ବ୍ରଜବୋଲୀ ଓ ବଙ୍ଗଳା ଭାଷାରେ ଅସାଧାରଣ ଜ୍ଞାନ ଥିବାର ଦୃଷ୍ଟାନ୍ତ ଆମକୁ ମିଳୁଛି । ଓଡ଼ିଶାରେ ସୁପ୍ରଚଳିତ 'ପତିତପାବନାଷ୍ଟକ'ର ରଚୟିତା ଭକ୍ତକବି ସାଲବେଗ ଥିଲେ ବୋଲି ବଙ୍ଗୀୟ ଆଲୋଚକ ବାବାଜି ସୁନ୍ଦରାନନ୍ଦ ବିଦ୍ୟାବିନୋଦଙ୍କ 'ଶ୍ରୀକ୍ଷେତ୍ର' ପୁସ୍ତକରୁ ଜଣାଯାଏ ।* 'ପତିତପାବନାଷ୍ଟକ'ର ରଚନାଶୈଳୀ, ଭାବଧାରା ତଥା ରଚୟିତାଙ୍କ ଆକୁଳ ନିବେଦନ ପ୍ରତି ଲକ୍ଷ୍ୟକଲେ ଏପ୍ରକାର ଅନୁମାନର ସତ୍ୟତା ଉପଲବ୍ଧି କରିହୁଏ ।

"ସଚନ୍ତ୍ର ଇବ ଲକ୍ଷ୍ୟସେ ସପଦି ମେ ଚରିତ୍ରଂ ସ୍ମରନ୍
ପରଂ କଲିତ ସାହସଃ ପତିତପାବନ ତ୍ୱଂ ବ୍ରତାତ୍,
ନ ମାମଗଣୟଃ ପୁରା ନ ହି ବିଗୁରି କାଲୋଽଧୁନା,
ବ୍ରତଂ ବିସୃଜ ବାଽଥବା ବରଦ ପାବୟୈନଂ ଜନମ୍ ।।"

ଅର୍ଥାତ୍—ହେ ମହାପ୍ରଭୁ, ମୋର ଚରିତ୍ର ଚିନ୍ତାକରି ତୁମେ ବୋଧହୁଏ ଚିନ୍ତାକୁଳ ହୋଇପଡ଼ିଛ ବୋଲି ମୁଁ ମନେକରୁଛି । କିନ୍ତୁ ତୁମେ ପତିତପାବନ ବ୍ରତ ଧାରଣ କରିଥିବାରୁ ମୁଁ ଏପ୍ରକାର ସାହସ କରୁଛି । ତୁମେ ପୂର୍ବରୁ ମୋତେ ଭକ୍ତମଣ୍ଡଳୀରେ ଗଣନା କରିନାହଁ,

* ଶ୍ରୀକ୍ଷେତ୍ର (ବଙ୍ଗଳା) ପୃ—୭୯ ।

ବର୍ତ୍ତମାନ ମଧ୍ୟ ବିଗ୍ରହ କରିବାର ଆଉ ସମୟ ନାହିଁ । ଅତଏବ ତୁମେ ପତିତପାବନ ନାମ ପରିହାର କର କିମ୍ବା ଏହି ପତିତ ବ୍ୟକ୍ତିକୁ ପବିତ୍ର କର ।

କବିଙ୍କର ସଂସ୍କୃତ ଭାଷାରେ ଅସାଧାରଣ ପାଣ୍ଡିତ୍ୟ ନଥିଲେ ଏ ଧରଣର ପଦ-ସଂଯୋଜନା କେବଳ ପ୍ରତିଭାପ୍ରସୂତ ବୋଲି ମନେହୁଏନାହିଁ ।

ବଙ୍ଗଳା ଭାଷାରେ ରଚିତ କବିଙ୍କ ଭଜନରୁ ତାଙ୍କର ଉକ୍ତ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିବାର ଧାରଣା କରିହୁଏ । ଅବଶ୍ୟ ସେହି ଯୁଗରେ ଅନେକ ଭକ୍ତକବି ପ୍ରତାପ-ରୁଦ୍ର, ବଳରାମ ଦାସ, ଜଗନ୍ନାଥ ଦାସ, ଅନନ୍ତ ଦାସ, ରାମାନନ୍ଦ ପଟ୍ଟନାୟକ, ମାଧବୀ ଦାସୀ, ସାର୍ବଭୌମ ଭଟ୍ଟାଚାର୍ଯ୍ୟ, କାଶୀ ମିଶ୍ର, ଶିଖି ମହାନ୍ତି ପ୍ରଭୃତି ବଙ୍ଗଳାରେ ଭଜନ ରଚନା କରୁଥିବାର ପ୍ରମାଣ ମିଳୁଛି । ବିଶେଷତଃ କବି କର୍ଣ୍ଣ ଦାସ ବଙ୍ଗଳାରେ 'ପାଲା' ରଚନା କରି ଓଡ଼ିଆ ସାହିତ୍ୟରେ ଗୋଟିଏ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରିଛନ୍ତି ।

ଯାହାହେଉ, କବି ସାଲବେଗ ବୃନ୍ଦାବନରେ ରହିଥିବା ସମୟରେ ହେଉ କିମ୍ବା ଶ୍ୟାମାନନ୍ଦ ଓ ତାଙ୍କ ଶିଷ୍ୟମଣ୍ଡଳୀର ସଂସ୍ପର୍ଶରେ ହେଉ, ବଙ୍ଗଳା ଭାଷାରେ ବେଶ୍ ଜ୍ଞାନ ଅର୍ଜନ କରିଥିଲେ ।

ପୁରୀ ଶ୍ରୀକ୍ଷେତ୍ରରେ ଉତ୍ତର ଭାରତୀୟ ଭକ୍ତମାନଙ୍କ ସମାବେଶ ଫଳରେ, ପୁରୀର ଜନସାଧାରଣ ହିନ୍ଦୀଭାଷା ସହିତ ସୁପରିଚିତ । ବିଶେଷତଃ ହିନ୍ଦୀଭାଷାଭାଷୀ ଭକ୍ତମାନଙ୍କ ସାହଚର୍ଯ୍ୟ ଲାଭକରି ସାଲବେଗ 'ବ୍ରଜବୋଲି'ରେ ଦକ୍ଷତା ଅର୍ଜନ କରିଥିବା ତାଙ୍କ ପ୍ରତିଭାର ଅନ୍ୟ ଏକ ବୈଶିଷ୍ଟ୍ୟ ବୋଲି ମନେହୁଏ ।

ପରିଶେଷରେ ଏତିକି କୁହାଯାଇପାରେ ଯେ, ଭକ୍ତକବି ସାଲବେଗ ଥିଲେ ଏକାଧାରରେ ଗୀତିକବି, ଆଦର୍ଶ ଭକ୍ତ, ସଂସ୍କାରଧର୍ମୀ, ସାହିତ୍ୟର ଯୁଗସ୍ରଷ୍ଟା ଓ ମହାପୁରୁଷ । ଅନ୍ୟ ଭକ୍ତକବିମାନଙ୍କ ତୁଳନାରେ ସେ ଅଧିକ ଭଜନ ରଚନା କରି ନ ଥିଲେ ହେଁ, ତାଙ୍କ ଭଜନଗୁଡ଼ିକ ଓଡ଼ିଆ ଭଜନ ସାହିତ୍ୟରେ ଆଲୋକସ୍ତମ୍ଭ ।

ଏହି ପୁସ୍ତକର ପ୍ରଥମ ସଂସ୍କରଣରେ ମାତ୍ର ବୟାଅଶୀଟି ପଦ୍ୟ ସନ୍ନିବେଶିତ ହୋଇଥିଲା । ସୌଭାଗ୍ୟବଶତଃ ଦ୍ୱିତୀୟ ସଂସ୍କରଣ ବେଳକୁ ଆହୁରି ଅଣତିରିଶଟି ପଦ୍ୟ ମିଳିଥିବାରୁ ସେଗୁଡ଼ିକ ଏଥିରେ ସନ୍ନିବେଶିତ ହୋଇଛି । ଏହା ମଧ୍ୟରେ ଆଉ ସାତୋଟି ପଦ୍ୟର ସନ୍ଧାନ ମିଳିଥିବାରୁ, ସେଗୁଡ଼ିକ ପ୍ରସ୍ତୁତ ସଂସ୍କରଣରେ ଦିଆଯାଇଛି । ସେଥିମଧ୍ୟରେ କେତୋଟି ପୂର୍ବବର୍ତ୍ତୀ ପଦ୍ୟର ପାଠାନ୍ତର; କିନ୍ତୁ 'କଳିଭାରତ' ଓ 'ବାଘ ମାଉଲାରେ' ସମ୍ପୂର୍ଣ୍ଣ ନୂତନ । ଶୁଣାଯାଏ, ସାଲବେଗଙ୍କ ନାମରେ ଭଣିତ ଆହୁରି କେତୋଟି ଭଜନ ରହିଛି । ବିଶେଷତଃ 'କଳିଭାରତ' ପରି ଆଉ ଗୋଟିଏ 'ଆଗତ-ଭବିଷ୍ୟ' ରହିଛି । ସେଗୁଡ଼ିକ ସଂଗୃହୀତ ହେଲେ, ପରବର୍ତ୍ତୀ ସଂସ୍କରଣରେ ସନ୍ନିବେଶିତ ହୋଇପାରିବ ।

□□□

# ପତିତପାବନାଷ୍ଟକମ୍ *

ସଚିନ୍ତ ଇବ ଲକ୍ଷ୍ୟସେ ଯଦୁପତେ ମେ ଚରିତଂ ସ୍ମରନ୍
ପରଂ କଳିତସାହସଃ ପତିତପାବନତ୍ୱବ୍ରତାତ୍ ।
ନ ମାମଗଣୟଃ ପୁରା ନହି ବିସ୍ତରକାଲୋଽଧୁନା
ବ୍ରତଂ ବିସୃଜ ବାଽଥବା ବରଦ ପାବୟୈନଂ ଜନମ୍ ॥୧॥

ନ ରାଘବ ! ନ ବାୟସୋ ନ ଖଳୁ କୃଷ୍ଣ-ଚୈଦ୍ୟୋଽସ୍ମ୍ୟହଂ ।
ନ ଖଲ୍ୱହମଜାମିଳୋ ନରକନାଶ ନାରାୟଣ !
ପ୍ରଧାନମପରାଧିନାଂ ପରିବୃତଞ୍ଚ ମାଂ ପାପିନଂ
କ୍ଷମାଜଲନିଧେ ! ବିଦନ୍ ଯଦୁପତେ ସାବଧାନୋ ଭବ ॥୨॥

---

୧—ହେ ମହାପ୍ରଭୋ ! ମୋର ପତିତ ଚରିତ୍ର ସ୍ମରଣ କରି ତୁମେ ଚିନ୍ତାକୁଳ ହୋଇ ପଡ଼ିଛ ବୋଲି ମୋର ମନେହୁଏ; କିନ୍ତୁ ପତିତତାରଣ ତୁମର ବ୍ରତ ହୋଇ-ଥିବାରୁ ମୁଁ ଏତେବଡ ସାହସ କରିଛି । ମୋତେ ପୂର୍ବରୁ ତୁମେ ଭକ୍ତ ମଧ୍ୟରେ ଗଣନା କରିନାହିଁ କିମ୍ବା ବର୍ତ୍ତମାନ ଆଉ ବିସ୍ତର କରିବାର ସମୟ ନାହିଁ । ତେଣୁ ହେ ମହାପ୍ରଭୁ ! ମୋତେ ପବିତ୍ର କର କିମ୍ବା ନିଜର ବ୍ରତ ପରିହାର କର !

୨—ହେ ରାଘବ, ମୁଁ କାକ ନୁହେଁ । ହେ କୃଷ୍ଣ, ମୁଁ ଶିଶୁପାଳ ନୁହେଁ । ହେ ନାରାୟଣ, ମୁଁ ଅଜାମିଳ ନୁହେଁ । ହେ କ୍ଷମାସାଗର, ପାପୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ମୋତେ ଜାଣି ଶୀଘ୍ର ଉପାୟ ଚିନ୍ତାକର !

---

* ପତିତପାବନାଷ୍ଟକ ପଣ୍ଡିତରାଜ ଜଗନ୍ନାଥଙ୍କ ରଚନା ବୋଲି ବିଦ୍ୱତ୍ସମାଜରେ ପ୍ରଚରିତ । କବିସୂର୍ଯ୍ୟ କାଳୀଚରଣଙ୍କ ରଚନା ବୋଲି ଅନେକ ବିଦ୍ୱାନ୍ ମତ ଦିଅନ୍ତି । ଶ୍ରୀମଦ୍ ହରିଦାସ ଏହା ସାଲବେଗଙ୍କ ରଚନା ବୋଲି 'ଗୌଡ଼ୀୟ-ବୈଷ୍ଣବ-ସାହିତ୍ୟ' ପୁସ୍ତକରେ ସମ୍ପାଦନ କରିଛନ୍ତି ।

ଯଦୁଦ୍ୟଦଘଲେଖନାକଳନ-ଜାଗ୍ରଦଗ୍ରାଙ୍ଗୁଳି-
ମିଳତ୍ ପ୍ରଖରଲେଖନୀ-ମୁଖବିଘାତଭୀତୋଦ୍ୟମାଃ ।
ଅଲଂ କିଲ ଲଲଜ୍ଜିରେ ସପଦି ଚିତ୍ରଗୁପ୍ତାଦୟଃ
ସ ଏଷ ପତିତାଗ୍ରଣୀ ସଦୟ ରକ୍ଷ ଦକ୍ଷୋଽସି ଚେତ୍ ॥୩॥

ବିଦନ୍ନପି ହୃଦନ୍ତରେ ପ୍ରତିପଦଂ ଯଦଂହଃକୃତେ,
ଯତେ ଯଦୁପତେ ନତେ ସଫଳତା ବ୍ରତେଷ୍ୱୀଦୃଶ ।
ଯତୋଽସି ଜଗତୋ ଗୁରୁଃ ସ୍ମୃତିନିଷେଧସ୍ତେ ତତୋ
ନ ନାମ ଚ ଭଜାମି ଯଦ୍ୟପି ବୃଥା କ୍ରୁଧଂ ମା କୃଥାଃ ॥୪॥

ଅନନ୍ତ ! ଯଦଘାବଳୀ ମନନସାବଧାନାତ୍ମକୈ-
ର୍ନିଜେ ଦୁରିତମଣ୍ଡଲେ ନଖିଳସାକ୍ଷିଭିର୍ନେକ୍ଷିତେ ।
ଜନା ଜଗତି ନିର୍ଭୟା ଜୟଜୟେତି ଜଲ୍ପନ୍ତ୍ୟମୁଂ
ପ୍ରଭୋ ଖଳ ଧୁରନ୍ଧରଂ ପତିତପାବନଶ୍ଚେଦବ ॥୫॥

---

୩—ମୋ ପରି ନିକୃଷ୍ଟ ପାପୀ ଆଉ କେହି ଜଗତମଧ୍ୟରେ ନାହାନ୍ତି । କାରଣ ମୋର ନିତ୍ୟପ୍ରତି ପୁଞ୍ଜିଭୂତ ପାପରାଶିର ଗଣନା କରିବାରେ ଚିତ୍ରଗୁପ୍ତଙ୍କ ଅଙ୍ଗୁଳିର ଅଗ୍ରଭାଗରେ ସ୍ଥିତ ଲେଖନୀର ମୁନ ନଷ୍ଟ ହୋଇଗଲଣି; ତେଣୁ ସେ ନିଜର ଅକ୍ଷମତା ଲାଗି ନିଜେ ଲଜ୍ଜିତ ହେଲେଣି । ମୁଁ ସେଇଭଳି ଜଣେ ନିକୃଷ୍ଟ ପତିତ; ଅର୍ଥାତ୍ ପତିତମାନଙ୍କ ମଧ୍ୟରେ ଅଧମ । ତେଣୁ ହେ ଦୟାସାଗର ! ଉଦ୍ଧାର କରିବା ଭଳି ତୁମର ଶକ୍ତି ଥିଲେ, ମୋତେ ରକ୍ଷାକର !

୪—ହେ ଯଦୁପତି ! ତୁମର ପତିତଉଦ୍ଧାରଣ ବ୍ରତ କେବେହେଲେ ବିଫଳ ହୁଏ ନାହିଁ—ଏହି ଧାରଣା ମୋ' ହୃଦୟରେ ଜାତ ହେବାରୁ, ମୁଁ ମୋ ପାପ ସମ୍ବନ୍ଧରେ ସଚେତନ ହୋଇଛି । ତୁମେ ଜଗଦ୍‌ଗୁରୁ; ସ୍ମୃତି ନିଷେଧ ପ୍ରଯୁକ୍ତ ତୁମର ନାମ ସୁଦ୍ଧା ମୁଁ ଜପ କରୁନାହିଁ । ତେଣୁ ମୋ' ଉପରେ କ୍ରୋଧ କରନାହିଁ; ଅର୍ଥାତ୍ ମୁଁ ତୁମର ନାମ ଭଜନ କରୁ ନ ଥିବାରୁ ମୋ' ପ୍ରତି ଅବହେଳା ଦେଖାଅ ନାହିଁ ।

୫—ହେ ଅନନ୍ତ ! ମୋର ପାପରାଶି ଏତେ ବେଶୀ ଯେ, ନିଖିଳ ଜଗତର ଦର୍ଶକଗଣ ମୋ' ଆଡ଼କୁ ଦୃଷ୍ଟି ଦେଇ ନିଜନିଜର ପାପ ସମ୍ବନ୍ଧରେ ଦୃଷ୍ଟି ଦେଉନାହାନ୍ତି । ପୃଥିବୀର ଲୋକମାନେ ପାପୀମାନଙ୍କ ମଧ୍ୟରେ ଅଗ୍ରଣୀ ବୋଲି ମୋତେ ଜାଣି ମୋର ଜୟ ଜୟ ଗାନ କରୁଛନ୍ତି । ହେ ପ୍ରଭୋ ! ତୁମେ ଯଦି ପ୍ରକୃତରେ ପତିତ-ପାବନ, ତା'ହେଲେ ଏହି ପତିତାଧମକୁ ଉଦ୍ଧାର କର ।

ଅନେକ ପତିତାଧିପାନବତି ଚକ୍ରବର୍ତ୍ତୀ ଯଥା
ନୃପାନସ୍ୱମସଙ୍କ୍ଷନଃ ପତିତପାବନତ୍ୱେନ ତୁ ।
ଇତି ପ୍ରଥିତବର୍ଣଂ ଖଲାଃ ପତିତପାବନଂ ମାଂ ବଦୁଃ
ନ ପାବୟସି ଚେତ୍ ଫଲଂ ନ ତୁ ଭବେଦ୍ଦଂ କେବଲମ୍ ॥୬॥

କଦାପି ହ୍ନୁ ପଦାମୃତଂ ତବ ମୟାପି ନାସ୍ୱାଦିତଂ
ବୃଥା ଭବ କଥାଭରୈରପି ଚ ନାଥ ! ନୀତଂ ବୟଃ ।
ତ୍ୱୟା ଯଦପି ହେଲୟା ମୟି ନ ଚେଦ୍ୱିଧେୟା ଦୟା
ତଦୈବ ମହତୀ କ୍ଷତିଃ ପତିତପାବନସ୍ତ୍ୱଂ ଯତଃ ॥୭॥

ଭବାନ୍ ପରମଧାର୍ମିକଃ ପ୍ରକଟିତାତିକାରୁଣ୍ୟକଃ
ସ୍ୱତନ୍ତ୍ରଚରିତୋ ଯଦି ସ୍ୱୟମସ୍ୱଶ୍ଚ କିଂ ନେଦୃଶଃ ।
ଅଲଂ କିମପି ଚେତ୍ ସ୍ୱକଂ ପତିତପାବନତ୍ୱାଦିକଂ
ପ୍ରଦର୍ଶୟତୁ ନାନ୍ୟଥା ଭବତୁ ତେ ଯଶଃ ସର୍ବଥା ॥୮॥

---

୬—ଯେପରି କୌଣସି ରାଜଚକ୍ରବର୍ତ୍ତୀ ବହୁ ସାମନ୍ତ ରାଜାଙ୍କୁ ରକ୍ଷାକରି ନିଜେ ସମ୍ରାଟ ବୋଲାଇଥାଏ, ସେହିପରି ମୁଁ ବହୁ ପତିତଙ୍କୁ ନିଜର ବହୁବିଧ କୁକୃତ୍ୟ ଫଳରେ ରକ୍ଷା କରିଅଛି । ପୃଥିବୀର ଦୁଷ୍ଟମାନେ ମୋତେ ପତିତମାନଙ୍କର ଅଗ୍ରଗଣ୍ୟ ରୂପେ ସ୍ୱୀକାର କରୁଛନ୍ତି । ଯଦି ତୁମେ ମୋତେ ଉଦ୍ଧାର ନ କର, ତେବେ ତାହା ସେହି ଦୋଷର ଫଳ ବୋଲି ମୁଁ ଭାବିବି ନାହିଁ କି ?

୭—ହେ ପ୍ରଭୋ ! ମୁଁ କେବେହେଲେ ତୁମର ପାଦଧୌତ ଜଳ ଅର୍ଥାତ୍ ପାଦୋଦକ ପାନ କରିନାହିଁ ଏବଂ ସାଂସାରିକ ବିଷୟବାସନାରେ ଲିପ୍ତ ରହି ବୃଥାରେ ଆୟୁ ଅତିବାହିତ କରିଛି । ବର୍ତ୍ତମାନ ତୁମେ ଯଦି ଅବଜ୍ଞାରେ ମଧ୍ୟ ମୋ ପ୍ରତି କୃପା ପ୍ରଦର୍ଶନ ନ କର, ତା'ହେଲେ ତୁମରି ସୁନାମରେ ହିଁ କଳଙ୍କ ରହିବ, କାରଣ ତୁମେ ପତିତପାବନ ।

୮—ହେ ପ୍ରଭୋ ! ତୁମେ ପରମଧର୍ମ ସଂରକ୍ଷକ ଏବଂ ତୁମର କରୁଣା ବହୁଭାବରେ ପ୍ରକଟିତ ହୋଇଛି । ତୁମେ ସ୍ୱାଧୀନ ସ୍ୱଭାବବିଶିଷ୍ଟ । ଏ ଅଧମ କଣ ସେହି ଧରଣର ସ୍ୱାଧୀନଚେତା ନୁହେଁ କି ? ହେ କରୁଣାସାଗର ! ବର୍ତ୍ତମାନ ତୁମେ ତୁମର ପତିତପାବନ ଗୁଣକୁ ମୋ'ଠାରେ ପ୍ରଦର୍ଶନ କରିବାରେ ଟିକିଏ ହେଲେ କୃପଣ ହୁଅନାହିଁ । ତାହା ଫଳରେ ତୁମର ପତିତପାବନ ଯଶଃରେ କଳଙ୍କ ରହିବନାହିଁ ।

ବଦନ୍ତି ଯଦ୍ଧି ପାବତାଃ ପତିତପାବନତ୍ୱବ୍ରତଂ
ଭବନ୍ତମଧିକଂ ନ ତତ୍ ପରମଦୁର୍ବିନୀତୋଽପ୍ୟହମ୍ ।
ପୁନାତୁ ନ ପୁନାତୁ ବା ଭୁବି ଯଥା ତଥୈବ ବ୍ରୁବେ
ତ୍ୱହାଣ ଗୁଣମେବ ମେ କୁରୁ କୃପାଂ ସ ଦୋଷୀ ନ କୋ ।।୯।।

---

୯—ଜଗତରେ ଯେଉଁମାନଙ୍କୁ ତୁମେ ପବିତ୍ର କରଛ, ସେମାନେ ତୁମକୁ ପତିତପାବନ-ରୂପକ ବ୍ରତଧାରଣକାରୀରୂପେ ବର୍ଣ୍ଣନା କରିଥା'ନ୍ତି । ମୁଁ ଅତ୍ୟନ୍ତ ଦୁର୍ବିନୀତ; ସେତିକ ମଧ୍ୟ ମୁଁ ଆପଣଙ୍କ ଉଦ୍ଦେଶ୍ୟରେ କହିପାରୁନାହିଁ । ବର୍ତ୍ତମାନ ତୁମେ ମୋତେ ପବିତ୍ର କର ବା ନ କର, ମୁଁ ପୃଥିବୀରେ ଏହା ପ୍ରକାଶ କରିବି । ତୁମେ ଗୁଣ ଗ୍ରହଣକରି ମୋ'ପ୍ରତି କୃପାଦୃଷ୍ଟି ଦିଅ ! ଏ' ସଂସାରରେ କିଏ ବା ଦୋଷମୁକ୍ତ ନୁହେଁ ?

ଏହି 'ପତିତପାବନାଷ୍ଟକ'ଟି ମଧ୍ୟ କବିସୂର୍ଯ୍ୟ ବଳଦେବ ରଥଙ୍କର ବୋଲି ଓଡ଼ିଶାରେ ଲୋକମତ ପ୍ରଚଳିତ ରହିଛି ।

ଅବଶ୍ୟ ସାଲବେଗଙ୍କ ନାମରେ ଏହି 'ପତିତପାବନାଷ୍ଟକ'ଟି ପ୍ରଚଳିତ ଥିବାର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ, ଯବନ ସଂସ୍କୃତିରେ ପ୍ରତିପାଳିତ ଭକ୍ତକବି ଶ୍ରୀଜଗନ୍ନାଥଙ୍କ ପ୍ରତ୍ୟକ୍ଷ ଦର୍ଶନ କରିବାଲାଗି ବ୍ୟାକୁଳ ହେଉଥିଲେ । ଏହି ଭାବଧାରାରେ କବିଙ୍କର ଆହୁରି କେତୋଟି କବିତା ରହିଛି । ତେଣୁ କବି ସାଲବେଗ ଖୁବ୍ ସମ୍ଭବତଃ ଏହି ଅଷ୍ଟକର ପ୍ରଣେତା ହୋଇପାରନ୍ତି । କବି ନିଜ ଓଡ଼ିଆ କବିତାରେ ଯେପରି ଶବ୍ଦବିନ୍ୟାସ କରି ନିଜ ଜ୍ଞାନ ତଥା ପ୍ରତିଭାର ପରିଚୟ ଦେଇଛନ୍ତି, ସେଥିରୁ ତାଙ୍କର ସଂସ୍କୃତ ଭାଷାରେ ଜ୍ଞାନ ନ ଥିଲା ବୋଲି କହିହେବନାହିଁ ।

( ୨ )

## କଳିଭାରତ

କହୁଅଛନ୍ତି ସାଲବେଗ । କଳି ପୁରାଣର ଚରିତ (୧) ॥
ଶୁଣ ହେ ସୁଜ୍ଞଜନମାନ । ଯେ କିଛି କଳିର ଭିଆଣ ॥
ୟେକ ଯେ ଦିନେ ଜାଣ ମୁହିଁ । ବଳଗଣ୍ଡିର ପାଶେ ଥାଇ ॥
ବଡ଼ଦେଉଳେ ମୁହିଁ ଗଲି । ପ୍ରଭୁଙ୍କ ଦର୍ଶନ ଯେ କଲି ॥
ଲେଉଟି ବଳଗଣ୍ଡି ଠାରେ । ପ୍ରବେଶ ହୋଇଲି ରାତରେ ॥
ମୋତେ ବୋଇଲେ ନାରାୟଣ । ହେ ସାଲବେଗ ୟେବେ ଶୁଣ ॥
ଯେ କିଛି କଳିର ପୁରାଣ । ଲେଖନ କର ଏବେ ପୁଣ ॥
ମୁହିଁ ବୋଲଇ ଯଦୁସାଇଁ । କିବା ଲେଖନ କରିବଇଁ ॥
ମୋତେ ବୋଇଲେ ଚକ୍ରଧର । ଯାହା କାଟିବୁ ମନେ ଗାର ॥
ଯେ ଭାଗବତ ହେବ ସାର । କହିଦେବି ମୁଁ ତୋ ହୃଦର ॥
ସେ ଆଜ୍ଞା ପାଇ ଲେଖିଲଇଁ । ଶୁଣ ସୁଜନେ ମନ ଦେଇ ॥
ରାମ ଯେ ଚନ୍ଦ୍ର ଗଜପତି । ତାହାଙ୍କ ଆଠଅଙ୍କେ ସ୍ଥିତି ॥
ଯାଜ ଯେ ନଗ୍ର ବୋଲି ଜାଣ । ବୈତରଣୀ ନଦୀତଟରେ ପୁଣ ॥
ବିରଜା ଶାସନ ପାଖର । ପୂର୍ବଭାଗରେ ଆଡ଼ମ୍ବର ॥
ବିପ୍ର ଯେ ବ୍ରାହ୍ମଣ ନାମରେ (୨) । ତା ଘରେ ଜନମ ଶ୍ରୀଧରେ ॥
ଜନ୍ମ ମାସକେ ଦୁଇ ଭାଇ । ମାତା ପିତାହିଁ ନାଶ ଯାଇ ॥
ତତକ୍ଷଣେ ବଇକୁଣ୍ଠେ ଗଲେ । ପୁଷ୍ପବମାନେ ବିଜେ କଲେ ॥
ବୋଲନ୍ତି ପ୍ରଭୁ ଚକ୍ରଧର । କି ବୁଦ୍ଧି କରିବା ୟେଥର ॥
ଦେଖ ହୋ ପିତାମାତା ନାଶ । ଯିବା ହୋ ବୃନ୍ଦାବନେ ଆସ ॥

---

(୧) 'କଳିଭାରତ' ଶୀର୍ଷକ ରାଜ୍ୟ ସଂଗ୍ରହାଳୟ ପୋଥି O.L./1598 ଓ Cy/1223ରୁ ସଂଗୃହୀତ । ଏହି ପୋଥିର ଦୁଇଟି ଅଧ୍ୟାୟ (ପ୍ରଥମ ଓ ଷଷ୍ଠ) ସାଲବେଗଙ୍କ ନାମରେ ଭଣିତ । ଅନ୍ୟାନ୍ୟ ଅଧ୍ୟାୟଗୁଡ଼ିକ ଦୀନକୃଷ୍ଣ ଦାସଙ୍କ ନାମରେ ଭଣିତ ହୋଇଛି ।

(୨) ଘରେ ମୂଳପାଠ ।

ଦ୍ୱ ଅଶ୍ୱ ଚଢ଼ି ବେନି ଭାଇ | ବୃନ୍ଦାବନକୁ ବିଜେ ହୋଇ ||
ଚନ୍ଦନ ବୃଷ୍ଟି ହେଲା ପଥେ | ଦେବେ ଆନନ୍ଦେ ଶୁଙ୍କଚଣ୍ଡେ ||
ପୁଷ୍ପବରଷି ହେଲା ଗୋଳ | ଫୁଲର ଘାଟେ ଆଦ୍ୟମୂଳ ||
କୈବର୍ତ୍ତେ ଦର୍ଶନ ଯେ ଦେଇ | ପ୍ରଭୁଙ୍କୁ ପୂଜା ଯେ କରଇ ||
ସେଠାରୁ ବିଜେ କରି ଗଲେ | ଶ୍ରୀବୃନ୍ଦାବନରେ ମିଳିଲେ ||
ଏବେ ହୋ ସୁଜ୍ଞଜନେ ଶୁଣ | ନବ ଅଙ୍କର ଯେ ଭିଆଣ ||
ଯବନେ ଉତ୍ପତ୍ତି ହୋଇବେ | ଖୁରୁଧା କଟକକୁ ଯିବେ (୩) ||
ବାଳେକ ରାମଚନ୍ଦ୍ର ରାଣ | ଦେଲୁ ଯେ ପାତ୍ର ମୁଣ୍ଡହାଣ ||
ଦମନ ହାଥେ କାଟି ଯିବ | ଉତ୍ତର ଦିଗେ ସେ ଚଳିବ ||
ମୁକୁତା ଦେଖି ରାଜଧର | ପୁଣି ଧାଇଁବେ ନଗକର ||
ଯୁଦ୍ଧ କରିବେ ମହାଘୋର | ପଳାଇଯିବେ ନୃପବର ||
ପ୍ରଭୁଙ୍କୁ ଘେନି ପଳାଇବ | ନିଷ୍ଟିନ୍ତ ହୋଇ ରାଜା ଥିବ ||
ଦଶ ଅଙ୍କର କଥା ଶୁଣ | ନୃପତି କରିବେ ବନ୍ଧନ ||
ଆଣିବେ କଟକ ଭୁବନ | ନିଷ୍ଟିନ୍ତେ ଥୋଇବେ ରାଜନ ||
କୁମାର ଭାଗ୍ୟରଥି ନାମ | କରିବ ସେହୁ ସେ ବିଷମ ||
ଦଶ ଅଙ୍କେଣ ନୃପନାଥ | ଘେନି ଆସିବେ ଜଗନ୍ନାଥ ||
ଏଗାର ଅଙ୍କେ ଏବେ ଜାଣ | ପୁଣି ଯେ ଘେନିଯିବେ ରାମ ||
ପ୍ରଭୁଙ୍କୁ ଘେନି କରି ଯିବ | ନିଷ୍ଟଳ ଭାବେ ସେ ରହିବ ||
ଏଗାର ଅଙ୍କଠାରେ ଜାଣ | ଉତ୍ତରେ ତର୍କିର ଗମନ ||
ଲେଉଟି ଆସିବେ ଦମନ | ଏବେ ହୋ ସୁଜ୍ଞଜନେ ଶୁଣ ||
ଏଗାର ଅଙ୍କ ଶୂନ୍ୟ ଜାଣ | ସେଠାରେ ତର୍କିର ମରଣ ||
ବାର ଅଙ୍କ ଆଶ୍ୱିନ ମାସ | କୁମାର ହୋଇବଟି ନାଶ ||
ଅସ୍ଥଲୀ ଦମନ ଆସିବ | ଘୋର ଯୁଦ୍ଧଟି ସେ କରିବ ||
ତେର ଅଙ୍କର କଥା ଶୁଣ | ବୃନ୍ଦାବନେଟି ନାରାୟଣ ||
ଛାଡ଼ିବେ ମଦନଗୋପାଳ | ଆସିବେ ପ୍ରଭୁ ଆଦ୍ୟମୂଳ ||
ବାଳକ ରୂପେ ଯେ ବ୍ରାହ୍ମଣ | ଗୁପତେ ନ ଚିହ୍ନିବେ ପୁଣ ||
ଦୋ ଗଙ୍ଗାଘାଟଠାରେ ଯାଇ | ମିଳିବେ ପ୍ରଭୁ ଭାବଗ୍ରାହୀ ||
ଦୋ ଗଙ୍ଗା ପୂର୍ବ ଯେ ଭାଗେଣ | ସିଠ ନାମେଣ ଏକ ଜଣ ||
ତାହାଙ୍କୁ ଦର୍ଶନ ଯେ ଦେଇ | ଗୁପତେ ନ ଚିହ୍ନିବେ କେହି ||

---

(୩) ହୋଇବ ଯିବ ମୂଳପାଠ ।

ସେଠାରୁ ବିଜେ କରି ପୁଣ । ଆସିବେ ପ୍ରଭୁ ନାରାୟଣ ॥
ଯାଜ ଯେ ନଗ୍ରଠାରେ ଆସି । ମିଳିବେ ପ୍ରଭୁ ବ୍ରହ୍ମରାଶି ॥
ବିରଜା ଶାସନ ପାଖର । ସେଠାରେ ରହି ଚକ୍ରଧର ॥
ତହୁଁ ଚଳିବେ ନରହରି । ଆନନ୍ଦ ଚିତ୍ତରେ ବିସ୍ତରି ॥
ଯାଜ ଯେ ପଶ୍ଚିମ ଭାଗରେ । ହ୍ରଦ ପାଖରେ ଏକ ଶରେ ॥
ବଟର ତଳେ କମଳାକ୍ଷୀ । ସେଠାରେ ବିଜେ ବ୍ରହ୍ମରାଶି ॥
ରହିବେ ତହିଁ ଦୁଇଦିନ । ଚଳିବେ ନଗ୍ର ଯେ ଦକ୍ଷିଣ ॥
ଏ ରୂପେ ନ ଚିହ୍ନିବେ କେହି । ବିଜୟେ କରି ଯଦୁସାଇଁ ॥
କଟକ ଭୁବନେ ମିଳିବେ । ଦିନେକ ସେଠାରେ ରହିବେ ॥
ପୁରୁଣା କଟକୁ ବାହାର । ତହୁଁ ଚଳିବେ ଦାମୋଦର ॥
ଶ୍ରୀପୁରୁଷୋତ୍ତମେ ମିଳିବେ । ଆନନ୍ଦ ଚିତ୍ତେ ବାସୁଦେବେ ॥
ଶ୍ରୀବଡ଼ଦେଉଳ ପାଖର । ଦକ୍ଷିଣ ପାରୁଶର ଘର ॥
ହରି ପଣ୍ଡା ନାମେ ବ୍ରାହ୍ମଣ । ତା ଘରେ ପାଣ୍ଡବେ ଜନମ ॥
ପାଞ୍ଚ ଯେ ପୁତ୍ର ହୋଏ ତାର । ଯୁଧିଷ୍ଠି ଭୀମ ବଳିଆର ॥
ନକୁଳ ସହଦେବ ଜାଣ । ଅର୍ଜୁନ ଘେନ ପାଞ୍ଚଜଣ ॥
ବଳଗଣ୍ଡି ରଠାରେ ହରି । ସେଠାରେ ଗେଣ୍ଡୁ ଖେଳ କରି ॥
ରହିବେ ପ୍ରଭୁ ପୀତବାସ । ତେର ଅଙ୍କ ଶ୍ରାବଣ ମାସ ॥
ନୃପତି ପିତୃଶ୍ରାଦ୍ଧ ଜାଣ । ପଡ଼ିବ ସେହି ମାସେ ପୁଣ ॥
ମୃଗ ଅର୍ଥେ ନୃପତିବର । ବୁଲିବ ଯାଇ ବନସ୍ତର ॥
ବାହୁଡ଼ା ବେଳେ ନରନାଥ । ଦେଖିବେ (୪) ରାମ ଗୋପୀନାଥ ॥
ଚିହ୍ନିବେ ଏ ତ ବନମାଳୀ । ଚରଣେ କରି କୃତାଞ୍ଜଳି ॥
ଘେନାଇ ଯିବେ ନୃପବର । ରଖିବେ ନେଇ ନିଜ ପୁର ॥
ପାତ୍ରମନ୍ତ୍ରୀଙ୍କି ଡକାଇବେ । ରାଣୀହଂସପୁରେ କହିବେ ॥
ଏ ଦୁଇଗୋଟି ଯେ ବ୍ରାହ୍ମଣ । କିଛି ନ ବୋଲିବଟି ପୁଣ ॥
ଯେତେକ ଦୋଷ ଏ କରିବ । ମୋର ଉପରେ ତୁମ୍ଭେ ଦେବ ॥
ଏମନ୍ତ ବୋଲି ନୃପରାଣ । ରଖାଇ ରାମ ଭଗବାନ ॥
ଏମନ୍ତେ ତେର ଅଙ୍କ ଶେଷ । ଚଉଦ ଅଙ୍କ ପରବେଶ ॥
ବୋଲିବେ ପ୍ରଭୁ ଭଗବାନ । ଚଉଦ ଅଙ୍କ ହେଲା ପୁଣ ॥
ଏମନ୍ତ ବୋଲି ବିସ୍ତରିବେ । ରାଣୀହଂସପୁରେ ପଶିବେ ॥

---

(୪) ଦେଖିବ··ମୂଳପାଠ, ଏପରି ପାଠ ନକଲକାରଙ୍କ ଦୋଷରୁ ହୋଇଥାଏ ।

ହାସ୍ୟ କରିବେ ଚକ୍ରଧର । କୋପିବେ ରାଣୀମାନେ ତାର ॥
କାହିଁର ଭିକ୍ଷୁକ ବ୍ରାହ୍ମଣ । କାଲି ଆଣିଲେ ନୃପରାଣ (୫) ॥
ଏମନ୍ତ ବୋଲଣ ବୋଲିବେ । ଶ୍ରୀକୃଷ୍ଣ ଅଙ୍ଗରେ ପିଟିବେ ॥
ଅନ୍ତର୍ଦ୍ଧାନ ଯେ ନାରାୟଣ । କାହୁଁ ପାଇବେ ରାଣୀଗଣ ॥
ନ ଦେଖି ରାମ-ନୃପନାଥ । ଝୁରିବେ ରାମ ଗୋପୀନାଥ ॥
କେ ପ୍ରଭୁ ଚୁଙ୍କିଗଲ କାହିଁ । ଏମନ୍ତ ବୋଲି ନୃପସାଇଁ ॥
ଚଉଦ ଅଙ୍କଠାରେ ଜାଣ । ସେଠାରେ ନୃପଙ୍କ ମରଣ ॥
ମାତଲୀ ଲଗାଇବ ରଥ । ବୈକୁଣ୍ଠେ ଯିବେ ନରନାଥ ॥
ପାତ୍ରମନ୍ତ୍ରୀଙ୍କର ବିଗୁର । ଭାଳିବେ ମନ୍ତ୍ରୀଗଣ ଆର ॥
କେ ରାଜା ଖୁରୁଧା ଭୁବନ । ଭାଳିବେ ପାତ୍ରମନ୍ତ୍ରୀମାନ ॥
ଦେବେ ଡାକିବେ ଶୂନ୍ୟେ ଥାଇ । ବାଇ ହୋଇଲୁ ପାତ୍ର ତୁଇ ॥
ସୁବର୍ଣ୍ଣ ହସ୍ତୀ ଯେ ମଣ୍ଡାଅ । ତା ପରେ କଳସ ଥୁଆଅ ॥
ଯା ପରେ ଢାଳିବ କଳସ । ସେ ରାଜା ହେବ ଖୁଧା ଦେଶ ॥
ରାତ୍ର ଦିବସ ଏବେ ଜାଣ । ଚଉଦ ଦିନ ପରମାଣ ॥
ପ୍ରଭୁଙ୍କୁ ଭେଟିବେ ସେ ଯାଇ । ବଳଶ୍ରେଣୀର ପାଶେ ରହି ॥
କଳସ ଢାଳ କୃଷ୍ଣ ଶିରେ । ରାଜନ ହେବେ ଚକ୍ରଧରେ ॥
ବଳରାମ ଯେ ରାଜା ହୋଇ । ମ୍ଳେଚ୍ଛଙ୍କୁ ଘେନ ସଙ୍ଗେ ତହିଁ ॥
ଭୀମ ହୋଇ ଦ୍ୱାରପାଳ । ନକୁଳ ଅଟେ ବଳଆର ॥
ଅର୍ଜ୍ଜୁନ ପାତ୍ର ହେବ ଜାଣ । ସହଦେବଙ୍କୁ ମନ୍ତ୍ରୀପଣ ॥
ଏମନ୍ତେ ପାଳିବେ ସଂସାର । ଆପଣେ ପ୍ରଭୁ ଚକ୍ରଧର ॥
ହିନ୍ଦୁ ଜାତିରେ ଦୁଷ୍ଟ ଯେତେ । ମାରିବେ ଆପେ ଗୋପୀନାଥେ ॥
ପଛେ ମେଲଖ ନିବାରଣ । କରିବେ ପ୍ରଭୁ ନାରାୟଣ (୬) ॥
ଶୁଣ ସୁଜନ ଜନମାନ । ଆଉ ଭକତେ ନାହିଁ ଦିନ ॥
ଶ୍ରୀକୃଷ୍ଣ ଚରଣରେ ପଣ । ଭଜନ କର ପୀତବାସ ॥
ଦର୍ଶନ କରିବ ଶ୍ରୀଧର । ବିଷ୍ଣୁ ଭଗତି ଯେତେ ନର ॥
କାମ ଯେ କ୍ରୋଧ ଅହଂକାର । କେବଳ କୃଷ୍ଣ ଆଶ୍ରେ କର ॥
କେବଳ କୃଷ୍ଣ ଆଶ୍ରେ କର । ତରିବ ଘୋର ଏ ସଂସାର ॥

---

(୫) ଆସିଲେ ମୂଳପାଠ ।

(୬) ମେଲଖ = ମ୍ଳେଚ୍ଛ > ମେଲଛ > ମେଲକ୍ଷ > ମେଲଖ ହେବା ସମୀଚୀନ ।

ସୁଜନଜନମାନେ ଶୁଣ । ଅଗମ କଳିର ପୁରାଣ ॥
ଯାହା ବୋଇଲେ ନରହର । ଲେଖନ କଲି ପତ୍ର ଧରି ॥
କହେ ଶାଳିଆ ଦାସ ହୀନ । ଶ୍ରୀକୃଷ୍ଣ ଚରଣେ ମୋ ମନ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ କଳିକଳୁଷଚରିତେ କୃଷ୍ଣ ଅବତାରେ ନାମ ପ୍ରଥମ ଅଧ୍ୟାୟ ।

( ୩ )

## କଳି ଭାରତ

ଦୀନବନ୍ଧୁ ନାମ ବନ୍ଧ, ନୀଳଗିରି ଛାଡ଼ି ଦଣ୍ଡଆ ରହି ହେ !
ଭଗତ ଦେଲ ଉଠାଇ, ମୋ ରାମ ଯେ ॥
ବ୍ରାହ୍ମଣେ ଅନ୍ୟାୟ କଲେ, ପ୍ରଭୁଙ୍କରେ ଅପରାଧ ହୋଇଲେ ଯେ !
ପ୍ରଭୁ ନୀଳଗିରି ଛାଡ଼ିଗଲେ, ମୋ ରାମ ହେ ॥
ଢାଇସ୍ତୀ ଆଠଗଡ଼େ ଥୋଇ, ଗୋଦାବରୀ କୂଳେ ଜନମ ହୋଇ ହେ !
ଜଗନ୍ନାଥ ବଡ଼ଭାଇ, ମୋ ରାମ ଯେ !
ସଂସାର ଜନେ ହେ ଶୁଣ, ଜନମ ହୋଇଲେ ଶ୍ରୀଭଗବାନ ଯେ !
ନନ୍ଦୀପୁର ଠାରେ ପୁଣ, ମୋ ରାମ ହେ ॥
ତେତିଶ କୋଟି ଦେବଲ, ଜନମ ହୋଇଲେ ପଶ୍ଚିମକୂଳ ଯେ !
ଭଗତଙ୍କ ରକ୍ଷାପାଳ, ମୋ ରାମ ଯେ ॥
ଚଉଦ କୋଟି କାତ୍ୟାନୀ, ଚଉଷଠୀ ଯୋଗିନୀ ସଙ୍ଗତେ ଘେନ ଯେ ।
ବିରଜାଇ ଆଦି କରି, ମୋ ରାମ ଯେ ॥
ସଂସାର ଜନେ ହେ ଶୁଣ, ମିଛମାୟା ଆଦି ତେଜ ନିର୍ଗୁଣ ଯେ !
ଚଉଦେ ହେବ ମର୍ଦ୍ଦନ, ମୋ ରାମ ଯେ ॥
ଭଗତ ଜନେ ରହିବେ, ମ୍ଲେଚ୍ଛ ଅଧମ ପାତକୀ ମରିବେ ଯେ !
ଦେବୀ-ଝପରେ ପଡ଼ିବେ, ମୋ ରାମ ଯେ ॥
ସଂସାର ଜନେ ହେ ଶୁଣ, ରାଧାକୃଷ୍ଣ ପାଦେ କରିବ ଧ୍ୟାନ ଯେ !
ଦେଖିବ ରହି ସେ ମାନ, ମୋ ରାମ ଯେ ॥
ଆଜ୍ଞା ଦେଲେ ଭଗବାନ, ବ୍ରହ୍ମା ମହେଶ୍ୱର ସକଳ ଜନ ଯେ !
ଉତ୍ତର ଖଣ୍ଡେ ଜନମ, ମୋ ରାମ ଯେ ॥

ବ୍ରହ୍ମାଋଷି ଉତ୍ତରରେ, ଶ୍ରୀଜଗନ୍ନାଥଙ୍କ ପୂର୍ବଭାଗରେ ଯେ !
ଦକ୍ଷିଣରେ ବଳେବରେ, ମୋ ରାମ ଯେ !!

ଆଜ୍ଞାଦେଲେ ଭଗବାନ, ଦେବୀଦେବୀ ତୁମ୍ଭେ ଉଠ ବନ୍ଧନ ଯେ !
ଚଉଦେ କର ଭୋଜନ, ମୋ ରାମ ଯେ !

ଭଗତ ପାଖେ ନ ଯିବ, ବିଶୂଳପାଡିଆ ସବୁ ନାଶିବ ଯେ !
ତେବେ ପୃଥିବୀ ଆସାନ ହେବ, ମୋ ରାମ ଯେ !!

ପରହିଂସେ ଯେଉଁ ଜନ, ଦୁର୍ଗା ଖପରକୁ ଯିବେ ବହନ ଯେ !
ପୃଥିବୀ ହେବ ଆସାନ, ମୋ ରାମ ଯେ !!

ପରବୁଡ଼ା ଯେଉଁ ଜନ, ଦୁର୍ଗା ଖପରକୁ ଯିବେ ସେମାନ ଯେ !
ଆଜ୍ଞାଦେଲେ ଭଗବାନ, ମୋ ରାମ ଯେ !!

ଯେଉଁ ପ୍ରାଣୀ ଭାଗ୍ୟ ଥିବ, ହରିପାଦରେ ଶରଣ ପଶିବ ଯେ !
ଦେବୀ ଖପରେ ସେ ନ ପଡ଼ିବ, ମୋ ରାମ ଯେ !!

ଯାଜପୁର ସ୍ଥାନ ଯେତେ, ତେର ଅଙ୍କମାନେ ନଥିବେ କେହି ଯେ !
ଥୋକେ ଯିବେ ରେଣୁ ହୋଇ, ମୋ ରାମ ଯେ !!

ଆଜ୍ଞାଦେଲେ ଭଗବାନ, ମରିବେ ପାତେଙ୍କୀ ମେଲଣି ଜନ ଯେ !
ତୁମ୍ଭେଥିବ ମୋର ସନ୍ନିଧାନ, ମୋ ରାମ ଯେ !!

ରାଜା ହେବେ ଭଗବାନ, ଆନନ୍ଦେ ପାଳିବେ ସେ ପ୍ରଜାଜନ ଯେ !
ନୀଳଗିରିରେ ଥାଇଣ, ମୋ ରାମ ଯେ !!

ଶ୍ରୀମୁଖ-ବଚନ ଶୁଣ, ଚଉଦ ଅଙ୍କକୁ କଲେ ପ୍ରମାଣ ଯେ !
ମରିବେଟି ଦୁଷ୍ଟଜନ, ମୋ ରାମ ଯେ !!

ସତ୍ୟରେ ପୃଥିବୀ ହେବ, ଶ୍ରୀନୀଳଗିରିକି ପ୍ରଭୁ ଆସିବ ଯେ !
କୈବଲ୍ୟପୁର ହୋଇବ, ମୋ ରାମ ଯେ !!

ପନ୍ଦର ଅଙ୍କ ଭିତରେ, ନନ୍ଦିଘୋଷ ରଥ ହେବ ସେଠାରେ ଯେ !
ପ୍ରଭୁ ଯିବେ ଗୁଣ୍ଡିଚା-ନବରେ, ମୋ ରାମ ଯେ !!

କହେ ସାଲବେଗ ହୀନ, ସଂସାର ଜନେ ହେ ସମସ୍ତେ ଶୁଣ ହେ !
ରାଧାକୃଷ୍ଣ ପାଦେ କର ଧ୍ୟାନ, ମୋ ରାମ ଯେ !!

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ଶୁକ ପରୀକ୍ଷିତ ସମ୍ବାଦେ କଳିଯୁଗପ୍ରବନ୍ଧେ
ନାମ ଷଷ୍ଠ ଅଧ୍ୟାୟ ।।

୪

ଅଣସର ଘରେ ଥିଲି ଆଜ ବାହାର ହେଲ
ତ୍ରିଭଙ୍ଗୀ ଭଙ୍ଗୀ କରି ଗୁହ୍ଡିଁଛ * ।୧।
ଶ୍ରୀଭୁଜେ ଭୁଜ ପେଲି ମତ୍ତଗଜ ପ୍ରାୟେ ଝୁଲି
ମହାପାତକ ମାନ ଦହୁଛ ।୨।
ମୃଦୁ ମଧୁର ହାସ ଅଧରେ ଜଗଦୀଶ
ଢଳପୁରକୁ ଯାଚ ଦେଉଛ ।୩।
ଅତି ମୋହନ ବେଶ ଧରି ନୀଳାଦ୍ରି ବାସ
ଗୁହ୍ଡିଁ ଢଳପୁରକୁ ତାରୁଛ ।୪।
କହେ ସାଲବେଗ ହୀନ ଏ ତ ଜଗମୋହନ
ଜଗମୋହନ ରୂପ ଧରିଛ ** ।୫।

* ଶ୍ରୀଜଗନ୍ନାଥ ଓ ଅନ୍ୟ ତିନ ମୂର୍ତ୍ତି ଜ୍ୟେଷ୍ଠ ପୂର୍ଣ୍ଣିମା ପରଦିନଠାରୁ ଆରମ୍ଭ କରି ନେତ୍ରୋତ୍ସବ ପର୍ଯ୍ୟନ୍ତ ଆତ୍ମଗୋପନ କରି ରହନ୍ତି । ସେହି ସମୟରେ ମଧ୍ୟ ଦେବାଧିଦେବଙ୍କ ପ୍ରତିମାରେ ରଙ୍ଗ ବନ୍ଦନଯୋଗ କରାଯାଏ । ନେତ୍ରୋତ୍ସବ ପରଦିନ ଗୁଣ୍ଡିଚା ଯାତ୍ରାକୁ ବିଜେ କରିବା ନିମିତ୍ତ ପହଣ୍ଡି ବିଜେକରନ୍ତି । ଭକ୍ତମାନେ ଦୀର୍ଘ ଦିନ ଧରି ମହାପ୍ରଭୁଙ୍କ ଦର୍ଶନ ନ ପାଇ ଆକୁଳନେତ୍ରରେ ପ୍ରଭୁଙ୍କ ଦର୍ଶନ ଲାଗି ଅପେକ୍ଷା କରିଥାଆନ୍ତି । ମନ୍ଦିର ମଧ୍ୟକୁ ପ୍ରବେଶ କରିପାରୁ ନ ଥିବା ଭକ୍ତମାନେ ରଥ ଉପରେ ପତିତପାବନଙ୍କୁ ଦର୍ଶନ କରିବା ଲାଗି ଉତ୍କଣ୍ଠିତ ନେତ୍ରରେ ଗୁହ୍ଡିଁ ରହିଥାନ୍ତି । ଭକ୍ତକବି ସାଲବେଗ ଶ୍ରୀମନ୍ଦିରକୁ ପ୍ରବେଶ କରିପାରୁ ନଥିବାରୁ ରଥ ଉପରେ ବାମନଙ୍କୁ ଦେଖି ଜୀବନ ସଫଳ କରିବାର ବାସନା ପୋଷଣ କରିଛନ୍ତି । ଏହି ପ୍ରସଙ୍ଗରେ ପ୍ରସ୍ତୁତ ପଦ୍ୟଟି ରଚିତ ହୋଇଛି ।

**ପଦ୍ୟଟି ରାଜ୍ୟ ସଂଗ୍ରହାଳୟର O. L./536 ସଂଖ୍ୟକ ପୋଥିରୁ ସଂଗୃହୀତ ହୋଇଛି ।

୫

(୧) ଅତି ଯତନରେ ବଂଶୀ ଗଢ଼ାଇଲି ସୁନାର ବେଣ୍ଠ ଲଗାଇ
କେ ଯାଇ କହିବ ମାତା ଯଶୋଦାଙ୍କୁ ମୋ ବଂଶୀ ନେଲେ ଚୋରାଇ
ଚତୁରି ରାଧେ, ମୁରଲୀ ଆମ୍ଭର ଦିଅ !
ହସ୍ତର କଙ୍କଣ ଗଲା (୨) ମୋତିହାର ଯାହା ଇଚ୍ଛା ତାହା ନିଅ ।ପଦ।

କଦମ୍ବମୂଳରେ ଫୁଟି ଶୋଇଥିଲି ବଂଶୀ ସୀମନ୍ତେ ଦେଇ
ଏଥି ବାଟେ ଗଲେ ଚତୁରୀ ରାଧିକା ମୋ ବଂଶୀ ନେଲେ ଚୋରାଇ
ଚତୁରୀ ରାଧେ...... ।୧।

କଳାବାଦ ଶାଢ଼ି ପିନ୍ଧିବାରବେଳେ ଅନାଇଥିଲି ଟି ତୋତେ
ଆଗର ପଣତ ପଛକୁ ପକାଇ ବଂଶୀ ଲୁଚାଇଲୁ ମୋତେ
ଚତୁରୀ ରାଧେ...... ।୨।

ନାକେ ନାକଚଣା ଗୋଡ଼େ ଗୋଡ଼ବଳା ହସ୍ତରେ ସୁବର୍ଣ୍ଣ ବାଛି
ଏମନ୍ତ ଚୂଳିକ ପଞ୍ଚାନ୍ତର ନାହିଁ ଚମକ ପଡ଼ୁଛି ଦେଖି
ଚତୁରୀ ରାଧେ...... ।୩।

ରାଧିକା ବୋଲନ୍ତି ଶୁଣ ହୋ କହ୍ନାଇ ବଂଶୀ ନେଇ ନାହିଁ ମୁହିଁ
ବଂଶୀ ନେଇଥିଲେ ନିୟମ କରୁଛି ନଣନ୍ଦର (୩) ମୁଣ୍ଡ ଛୁଇଁ
ଚତୁରୀ ରାଧେ...... ।୪।

ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ଗୋ ରାଧିକା ବଂଶୀ ନେଇଅଛୁ ଏକା
ବଂଶୀ ନେଇକରି ନିୟମ କରୁଛୁ ବେନି ଭୁଜ ଟେକା ଦେଖା ।
ଚତୁରୀ ରାଧେ...... ।୫।

ରାଧିକା ବୋଲନ୍ତି ଶୁଣ ହୋ କହ୍ନାଇ ତୁମ୍ଭ ବଂଶୀ ମୂଲ କେତେ
ଆମ୍ଭ ବଂଶୀ ମୂଲ ନଅଣ ସୁନଆ (୪) ବନ୍ଧା ଘେନିଯିବି ତୋତେ
ଚତୁରୀ ରାଧେ......।୬।

ବଂଶୀ ରଙ୍ଗପାଖେ ସୁବର୍ଣ୍ଣ କୁଆଁଣି ବାନା ଉଡ଼େ ଢନପୁର
କହେ ସାଲବେଗ ଜାତିରେ ପଠାଣ ହସ୍ତିଆ ନାଗରବର ।
ଚତୁରୀ ରାଧେ, ମୁରଲୀ ଆମ୍ଭର ଦିଅ (୫, ।୭।

---

(୧) ପଦ୍ୟଟି O. L./536 ରାଜ୍ୟ ସଂଗ୍ରହାଳୟ ପୋଥିରୁ ସଂଗୃହୀତ ।

(୨) ଗଳାହାର କେବଳ ପୋଥିପାଠ । ଛନ୍ଦ ନିୟମ ରକ୍ଷା ଲାଗି 'ମୋତେ' ଶବ୍ଦ ଯୋଡ଼ିଦିଆଯାଇଛି ।

(୩) ଶ୍ରୀରାଧିକାଙ୍କ ନଣନ୍ଦ ଜଟିଳା 'ରାଧାକୃଷ୍ଣମିଳନ'ର ପ୍ରଧାନ ବିରୋଧୀ ନାୟିକା ଥିଲେ ।

(୪) ସୁନଆ—ସ୍ୱର୍ଣ୍ଣମୁଦ୍ରା ।

(୫) ଏହି ଗୀତରୁ କିଛି ଅଂଶ ରଘୁ ଅରକ୍ଷିତଙ୍କ ନାମରେ ଭଣିତ ହୋଇଥିବାର ଦେଖାଯାଏ ।

୬

ଅଗୋ ଆଗୋ ମଲ୍ଲୀ ମାଳତୀ !
କେଣେ ଗଲା ବେଣୁସ୍ୱନ ? । ପଦ ।

ସେ ବେଣୁଧ୍ୱନି ଶୁଣିଣ ତନୁ
ଜରଜର ହୁଏ ହୃଦୟ ଝୀନ ।୧।

ସେହି ବୃନ୍ଦାବନେ ପଶି
ଅଲପ ଅଲପ ବଜାନ୍ତି ବଂଶୀ, ଗୋ ସଖି !
ନେଉଛୁ ପରାଣ ଶୋଷି ।୨।

ଗଲେ ଏ ଅରଣ୍ୟବନେ,
ପୁଲକିତ କଲେ ମୁରଲୀ ସ୍ୱନେ, ଗୋ ସଖି !
କିଛୁ ପଡ଼ୁନାହିଁ ମନେ ।୩।

ସେ ପ୍ରଭୁ ସ୍ୱେମନ୍ତ କଲେ
ଗଜ ଆରତ ଷଣକେ ଶୁଣିଲେ, ଗୋ ସଖି !
ଆମ୍ଭଙ୍କୁ ନିରାଶ କଲେ ।୪।

ଶ୍ରୀକୃଷ୍ଣ ଆମ୍ଭ ଜୀବନ, ମନ ଜାଣି କରନ୍ତି ଆଲିଙ୍ଗନ,
ଗୋ ସଖି ! ଯେସନେ ଲାଗେ ଚନ୍ଦନ ।୫।

ଖଣ୍ଡେଦୂର ଖୋଜିଗଲୁ
ପାଦଚିହ୍ନ ଚିହ୍ନି ଭେଟ ପାଇଲୁ, ଗୋ ସଖି !
ଅଲକ୍ଷରେ ବଣା ହେଲୁ ।୬।

ଶ୍ରୀରଙ୍ଗାଚରଣେ ଯାଇ, ମୂଢ଼ ସାଲବେଗ ଧାଇଁ
ଗୋ ସଖି ! ମୁକତି ଲଭିବା ପାଇଁ ॥*

---

*ପ୍ରସ୍ତୁତ ପଦ୍ୟଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ । ମୂଳପାଠରେ କେତେକ ଲେଖନଗତ ପ୍ରମାଦ ଥିବାରୁ ସ୍ଥଳବିଶେଷରେ ସାମାନ୍ୟ ସଂଶୋଧନ କରାଯାଇଛି ।

## ୭

ଆଜ ତ ବେଶ ବଡ଼ ତୋଫାରେ, * ଶ୍ୟାମ ଗୋରା !
ଆଜ ତ ଛବି ବଡ଼ ତୋଫା ।।
ତାର ଚୂଳକୁ ଅନା — ଉଡ଼ୁ ଅଛୁ ଯେ ବାନା
ସେ ଯେଉଁ ନନ୍ଦପୁଅ କହ୍ନାରେ, (୧) ଦୃଷ୍ଟି ଅନା !
ତ୍ରିଭଙ୍ଗି (୨) ଛନ୍ଦେ ଉଭା, — କରେ ମୁରଲୀ ଶୋଭା,
ମୋ କୁଳ ବୁଡ଼ାଇବୁ ପରାରେ, ଶ୍ୟାମ ଗୋରା !
ପିନ୍ଧିଛୁ ହୀନ ପାଟ — ଗୋପେ କରୁଛୁ ନାଟ
ତୋ ଲାଗି ହୋଇଛୁ ଉଚ୍ଚାଟ ରେ, ଶ୍ୟାମ ଗୋରା !
ଯାଉଛୁ ଗୋପଦାଣ୍ଡେ — ବାନ୍ଧୁଛୁ କାଣ୍ଡେ କାଣ୍ଡେ
ଏ କାଣ୍ଡେ ମରଯିବୁ ପରାରେ, (୩) ଶ୍ୟାମ ଗୋରା !
କଣିଲ୍ ପରା କରି — ଡାକୁଛୁ ବେଣୁ ଧରି (୪)
ଗୋପେ ନ ରଖିବ କି ପରାରେ, ଶ୍ୟାମ ଗୋରା !
କହେ ସାଲବେଗ ହୀନ — ଏହୁ ମୋ ନିବେଦନ
ଚକା-ଚରଣେ ରହୁ ମନ କରେ, ଶ୍ୟାମ ଗୋରା ।।

---

* ପଦ୍ୟଟି ଶ୍ରୀନିବାସ ରଥଙ୍କ ସଂଗ୍ରହରୁ ଗୃହୀତ ।

୧) 'କହ୍ନାଇରେ' ପୋଥି ପାଠ । (୨) 'ହି ଭଙ୍ଗି' ଦୁଇଥର ପୋଥିରେ ପ୍ରୟୋଗ କରାଯାଇଛି । (୩) 'ମରାଯିବୁ' ପୋଥିପାଠ । (୪) 'ବେଣୁ ଧରି' ପୋଥିରେ ନାହିଁ ।

## ୮

ଆହା ଯେ ସୁଆଳୁଣୀ ହୁଆବରନ ଗୁଲି ତୋରେ,
କାହ୍ନେ କାହ୍ନେ ଯାଉ କଥା ତ ନ କହୁ କି ମାନ କରିଛୁ ମୋରେ ଯେ ।୧।
କାନେ କାନଫୁଲ ପାଦରେ ନୂପୁର ଯମୁନା ଗାଧୋଇ ଯାଉ
କଦମ୍ବମୂଳରେ ଶ୍ରୀକୃଷ୍ଣ ବଜଯେ ଗିଳିବ ରାଧବ ରାହୁ ଯେ ।୨।
କର୍ଣ୍ଣରେ କୁଣ୍ଡଳ ଗଳେ ମୋତିମାଳ ହସ୍ତରେ ସୁବର୍ଣ୍ଣ ବାହୁ
ଏମନ୍ତ ଗୁଆଳିକ ମୁଣ୍ଡରେ ପସରା ଝଲକି ପଡ଼ିବ ଦହି ଯେ ।୩।
ସରୁ ହୀନ ଶାଢ଼ୀ ପିନ୍ଧିଥାଉ ଭିଡ଼ି ମଥାରେ ଯାଉଛୁ ଲୋଟି
ଏମନ୍ତ ଗୁଆଳିକ କାଖରେ କଳସୀ ଦିଶେ ଯଉବନ ଫୁଟି ଯେ ।୪।

କହେ ସାଲବେଗ ଶୁଣରେ ସଜନ ! କାହିଁକି କରୁଛୁ ମାନ ।
ମୁଖ ଟେକି ଯେବେ ବାରେକ ଚାହିଁବୁ ପାଇବୁ ପରଶଧନ ଯେ ।୫।*

* କବିତାଟି ଶ୍ରୀମନ୍ଦିରର ଜନୈକ ଭକ୍ତଙ୍କ ମୁଖରୁ ଶୁଣି ଏଠାରେ ସଂଗ୍ରହ କରାଯାଇଛି । ରାଜ୍ୟ ସଂଗ୍ରହାଳୟର Cy/662 ପୋଥି ଅନୁସାରେ ସଂଶୋଧିତ । ଏଠାରେ ଭକ୍ତକବି ସାଲବେଗ ଶ୍ରୀକୃଷ୍ଣଙ୍କ ଦୂତୀ ଭାବରେ ନିଜକୁ ପ୍ରକାଶ କରିଛନ୍ତି ।

## ୯

ଆହେ କୃଷ୍ଣ ମୁରଲୀଧରୀ,
ଲେଖାରେ ତୁ ମୋର ଭଣଜା ପରି ।।
ଗୋପପୁରେ ଥାଇ ଗୋପୀଙ୍କି ଡରାଇ,
ଚୋରି କରି ଖାଅ ଛେନା କାକରୀ ।
ଯେଉଁ ଗୋପୀ ତୋତେ ପଣତେ ବାନ୍ଧିଲା,
ସେ କଥା ତୋ ମନେ ନାହିଁ କି ପରି ।।୧।।
ଲେଖାଯୋଖା ନାହିଁ ମୋ ହୃଦ ରମାଇଁ
ଟିକାଏ ଅନ୍ତର ନାହିଁ କି ପରି ।
ମାମୁଁ କୁ କହିବ ଚୁଟି ଝୁଆଇବ
କହ୍ନାଇ କରୁଛୁ ଶାହ ଶାପରି ।।୨।।
ଗୋପେ କେତେ ସ୍ତିରୀ ନାହାନ୍ତି ମୋପରି
ମାଇଁ ବୋଲି ମିଛେ ଡାକୁଛ ପରି,
ମାତା ଯେତେବେଳେ ଚୁଟି ଧରିଥାଏ
ମୋହ କୋଳେ ଲୁଚିଥାଅ ତ ପରି ।।୩।।
ସମସ୍ତେ ବୋଲନ୍ତି ରାଧା ନାଶ ଗଲା,
କୃଷ୍ଣ ତାକୁ ବାଇ କରିଛି ପରି ।
ଏକା ରାଧା ରାଧା ବୋଲି ବେଣୁ ବାଇ
ଗୋପେ କେତେ ସ୍ତିରୀ ନାହାନ୍ତି ପରି ।।୪।।
ଷୋଳସହ ଗୋପୀ ଗୋପପୁରେ ଲେଖି
ରାଧାଶ ଦୋହରୀ ହୋଇଲା ପରି ।
ନନ୍ଦା ଅପନନ୍ଦାମାନ ନ ସହିଇ,
ତୋ ଲାଗି ଖାଇବ ବିଷ ମହୁରି ।।୫।।

କହନ୍ତି ଶ୍ରୀକୃଷ୍ଣ ଶୁଣ ଗୋ ରାଧିକେ,
ତୋ ମନ ମୋ ମନ ଯେକଇ ପରା ।
ନନ୍ଦା ଅପନନ୍ଦା ଯେତେ ଦେଲେ ହେଲେ,
ତୁ ପିନା ମୋହର ହୃଦୟହାରା ।।୭।।
କହନ୍ତି ଶ୍ରୀକୃଷ୍ଣ ଶୁଣ ଗୋ ରାଧିକେ,
ଯେଥିର ତ ମୁହିଁ ଯିବି ମଥୁରା ।
କହେ ସାଲବେଗ ଜାତିରେ ଯବନ,
ତୁମ୍ଭେ ଗଲେ ମୁହିଁ ଝୁରିବି ପରା ।।୭।।*

* ଏହି ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି ଭଣ୍ଡାରର Cy/452 ପୋଥିରୁ ସଂଗୃହୀତ ।

## ୨୦

ଆହେ ନୀଳଗିରି !

ତୁମ୍ଭ ଶ୍ରୀଭୁଜେ ଦକ୍ଷିଣା କେତେ କେତେ । ପଦ ।
ତୁଳସୀ ଚଉରା ପାଟେଣ ଜଗି
ବସି ଧ୍ୟାଉଛନ୍ତି କେତେ ଯୋଗୀ,
ବ୍ୟାଘ୍ରଚର୍ମ ପାରି ସ୍ତୁତି କରୁଛନ୍ତି, ଜପୁଛନ୍ତି ନାମ ସଂଖ୍ୟା କରି ।୧।
ବଡ଼ଦାଣ୍ଡ ଦେଖି ହେଲି ତୋଷ,
ରେଣୁମାତ୍ର ତେଣୁ କଲି ଗ୍ରାସ,
କ୍ଷୀରି ଖେଚଡ଼ିରେ ମନ ନ ବୋଧଇ ଝଙ୍କ ତୋରାଣିରେ ମନ ତୋଷ ।୨।
ସିଂହଦ୍ୱାରେ ପଡ଼େ ବେତବାଡ଼ି,
ବାଜନ୍ତେ ପାତକ ଯାଏ ଛାଡ଼ି,
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତେ ଏକକୁ ଆରେକ ହୁଡ଼ାହୁଡ଼ି ।୩।
ବାଇଶି ପାବଚ୍ଛୁ ଗଲି ସୁଟେ,
କୈବଲ୍ୟ ପସଟ ବେଳା ପାଟେ,
ଚଣ୍ଡାଳୁ ବ୍ରାହ୍ମଣ ଶୂଦ୍ର ପରସନ୍ତେ କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ।୪।
ରୋହିଣୀ ପାଦୁକା କୁଣ୍ଡରଜ
ସିଂହ ମାଡ଼ି ବସିଅଛି ଗଜ,
ସତେ କି ଏ ଜନ୍ମ ସୁଫଳ ଲଭିବ କାକ ପଡ଼ି ହେଲା ଚତୁର୍ଭୁଜ ।୫।

ରତ୍ନ ଗରୁଡ଼ ପଛରେ ଦେଖ
କି ଶୋଭା ପାଉଛି ପଦ୍ମମୁଖ,
ହୀରା ନୀଳା ମୋତି ମାଣିକ୍ୟ ଜଳୁଛି ହୃଦେ ଲମ୍ବିଅଛି ହାରାନେକ ।୭।
ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଆଣି,
ନୀଳପର୍ବତକୁ ପ୍ରଦକ୍ଷିଣ କଲେ ସାଧୁସନ୍ଥ ଦେଲେ ହରିଧ୍ୱନି ।୭।
କହେ ସାଲବେଗ ହୀନ ଜାତି
ଶ୍ରୀରଙ୍ଗାଚରଣେ ରହୁ ମତି,
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି, ବାରେ ଦୟାକର ଲକ୍ଷ୍ମୀପତି ।୮।*

---

*ଏହି ପଦ୍ୟଟି ଜଗନ୍ନାଥ ପୁସ୍ତକାଳୟ, କଟକଦ୍ୱାରା ପ୍ରକାଶିତ 'ଭଜନ ସର୍ବସାର' ପୁସ୍ତକରୁ ସଂଗୃହୀତ । ଏହା ସାମାନ୍ୟ ପରିବର୍ତ୍ତିତ ହୋଇ ଅନ୍ୟ ଏକ ଭଜନ ରୂପେ ବିଭିନ୍ନ ଗାୟକଙ୍କ ମୁଖରେ ଶୁଣାଯାଏ ।

# ୧୧

ଆହେ ନୀଳାଚଳବାସୀ,
ଶୋକ-ଜଳଧିରେ ଗଲି ଭାସି ।।
ବାରଣଭୟକୁ କାରଣ କର ହେ
ଶରଣ-ପଞ୍ଜର-ବାନା (୧)
ଆରତନାଶନ ଖଳବିନାଶନ
ବାରେ ହୁଅ ବଜ୍ରସେନ୍ହା ।୧।
ଜଗତପାଳରେ ଡିଣ୍ଡିମ ବାଜୁଛି
ଉଡ଼େ ଅବଧୂତ ବାନା (୨)
ମୃଗୁଣୀ ଆରତ ଖଣ୍ଡିଲ ହେ ନାଥ
ପତିତ ଭୟ ଭଞ୍ଜନା (୩) ।୨।
ଧନ୍ଦର୍ଯ୍ୟରେ ମେରୁ ନାମ କଳ୍ପତରୁ
ତୃଷ୍ଣା ଶୀତ ହେଲି ସିନା
ଅରୁଣ ଚରଣ ଆଶ୍ରେ କଲିଠାରେ
ବୁଡ଼ିଲି ମୋର ଚେତନା ।୩।

ମୁଁ ଅବା ଅପ୍ରାଧୀ ହେ କୃପାବାରିଧି
ଥରେ ନୋହିଲ କରୁଣା,
କହେ ସାଲବେଗ ପ୍ରଭୁପଣକୁ ଏ
ଦର୍ଶିବ ବନ୍ଧୁତ ଗୁଣା ।୪।*

---

(୧) ବାରଣଭୟ, ଅର୍ଥାତ୍ କୁମ୍ଭୀର କବଳରେ ପଡ଼ି ଗଜ ବିଷ୍ଣୁଙ୍କୁ ପ୍ରାର୍ଥନା କଲା । ଆର୍ତ୍ତତ୍ରାଣ ବିଷ୍ଣୁ ଗଜର ଡାକରେ କୁମ୍ଭୀରକୁ ବିନାଶ କରିଥିଲେ ।
(୨) ଅବଧୂତ ବାନା, ଅର୍ଥାତ୍ ନିର୍ଗୁଣ ନିରାକାର ରୂପେ ଜଗତରେ ଖ୍ୟାତ ।
(୩) ବନରେ ମୃଗୁଣୀ ବ୍ୟାଧ କବଳରେ ପଡ଼ି ଶ୍ରୀଜଗନ୍ନାଥଙ୍କୁ ଡାକିବାରୁ ବିଷ୍ଣୁମାୟାରେ ବ୍ୟାଧର ସମସ୍ତ ପ୍ରକାର ଚକ୍ରାନ୍ତ ବିଫଳ ହେଲା ଏବଂ ମୃଗୁଣୀ ନିଜ ଶାବକ ସହିତ ନିରାପଦରେ ବନକୁ ଫେରିଗଲା ।
*ପଦ୍ୟଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି O.L./୪୪୨ରୁ ସଂଗୃହୀତ ।

## ୧୨

ଆହେ ନୀଳଗିରିଲା ପ୍ରବଳ ମତ୍ତ ବାରଣ,
ମୋ ଆରତ-ନଳିନୀବନକୁ କର ଦହନ ॥ ୧ ॥

ଗଜରାଜ ଡାକ ଦେଲା ଗ୍ରାହ ମୁଖ ବେଳେଣ,
ଚକ ପେଷି ନକ୍ର ନାଶି କୃପା କଲ ଆପଣ ॥ ୨ ॥

ଦ୍ରୌପଦୀ ଯେ ଚିନ୍ତା କଲା କୁରୁସଭା ତଳେଣ,
କୋଟି ବସ୍ତ୍ର ଦେଇ ତାଙ୍କ ଲଜ୍ଜା କଲ ବାରଣ ॥ ୩ ॥

ହରିଣୀ କି ଘୋରବନେ ପଡ଼ିଥିଲା କଷଣ,
ଡାକିଲା ମାତ୍ରକେ ହରି ରକ୍ଷାକଲ ଆପଣ ॥ ୪ ॥

ରାବଣରେ ଭିଡ଼ି ବିଭୀଷଣ ଗଲା ଶରଣ,
କେତେ କେତେ ବିପତ୍ତିରୁ ରଖିଅଛ ଆପଣ (୧) ॥ ୫ ॥

ଅଜାମିଳ ଡାକ ଦେଲା ଜୀବ ଯିବା ବେଳେଣ,
ତେତେ ବଡ଼ ପାପୀ ଗଲା ବଇକୁଣ୍ଠ ଭୁବନ (୨) ॥୬॥

ପ୍ରହଲ୍ଲାଦ ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ,
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ।।୬।।

ନୀଳାଚଳେ ବିଜେ କରି ବୌଦ୍ଧ ଅବତାରେଣ,
ବେନି ଭୁଜ ଟେକି ପ୍ରଭୁ ଯାଚୁଅଛ ଶରଣ ।।୮।।

କହେ ସାଲବେଗ ହୀନ ଜାତିରେ ମୁଁ ଯବନ ।
ଶ୍ରୀରଙ୍ଗାଚରଣ ତଳେ ରଖ ମୋତେ ଶରଣ (୩) ।।୯।।

---

(୧) ଶରଣ ସମ୍ଭାଳି ତାଙ୍କୁ ଲଙ୍କେ କଲ ରାଜନ ।—ପାଠଭେଦ ।
(୨) ଏ ପଦ କେତେକ ପାଠରେ ନାହିଁ ।
(୩) ଶ୍ରୀରଙ୍ଗାଚରଣେ ତଳେ କରୁଅଛି ଜଣାଣ ।—ପାଠଭେଦ ।

## ୧୩

ଉପାଧ୍ୟେ ବୋଲରେ । ଘୋଷା ।

କାଳିଆ (୧) କାଳିଆ ବୋଲି, ଝୁରିଆ ଝୁରିଆ ମଲି ଗୋ ।।୧।।
କାଳିଆ କି ମନ୍ତ୍ର କଲା ଗୋ, ପିଣ୍ଡ ଥୋଇ ପ୍ରାଣ ନେଲା ଗୋ ।।୨।।
କଦମ୍ବ ତରୁ ମୂଳେ, ଚଉ ଛନଛନ ହେଲି ଗୋ ।।୩।।
କାଳିଆ ବିଷମ କାଲା, 'କାଲ୍ହ' ହେଲେ ଜପମାଳା ଗୋ ।।୪।।
କହେ ସାଲବେଗ ହୀନ, କୃଷ୍ଣଚରଣରେ ମନ ଗୋ ।।୫।।

---

ପ୍ରସ୍ତୁତ ଗୀତଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./72 ରୁ ସଂଗୃହୀତ । ଏହା ଗାଇବାପାଇଁ "ରାଗ—କନଡ଼ା, ଜତି, ଆଡ଼ତାଳୀ"ର ନିର୍ଦ୍ଦେଶ ମୂଳ ପୋଥିରେ ରହିଛି ।

(୧) 'କାଲ୍ୟା' ବୋଲି ମୂଳପାଠ ।

(୨) 'କାଲ୍ହ' ଶବ୍ଦର ଆକ୍ଷରିକ ଓଡ଼ିଆ ଅର୍ଥ 'ବଧିର'; କିନ୍ତୁ ଏଠାରେ 'କଳା' ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଅର୍ଥରେ ପ୍ରୟୋଗ କରାଯାଇଛି । ଆହୁରି ମଧ୍ୟ 'କାଲ' ଅର୍ଥାତ୍ 'ବଧିର' ଅର୍ଥ ଏଠାରେ ଅସଙ୍ଗତ ବୋଲି ମନେହୁଏ ନାହିଁ । କାରଣ ଶ୍ରୀରାଧା ଯାହାଙ୍କୁ ଜପମାଳା କରିଥିଲେ, ସେ ଥରେହେଲେ ନ ଶୁଣି ବଧିର ପାଲଟିଯାଇଛନ୍ତି । ତେଣୁ ଅଭିମାନଭରା କ୍ରୋଧରେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ 'କାଲ' ବୋଲି ସମ୍ବୋଧନ କରିବା ଅସମୀଚୀନ ନୁହେଁ ।

## ୧୪

ଏକା ତୋ ଭକତ ଜୀବନ,
ଭକତ ନିମନ୍ତେ ତୋର ଶଙ୍ଖ ଚକ୍ର ଚିହ୍ନ ॥
ଭକତ ତୋ ମାତାପିତା ଭକତ ତୋ ବନ୍ଧୁ,
ଭକତ ହେତୁରେ ତୋର ନାମ କୃପାସିନ୍ଧୁ ॥
ଧେନୁ ପଛେ ପଛେ ବତ୍ସା ଗମେ କ୍ଷୀର ଲୋଭେ,
ଭକତ ପଛରେ ତୁହି ଥାଉ ସେହି ଭାବେ ॥
ବାପ ମୋ ମୋଗଲପୁଅ ମାଆ ମୋ ବ୍ରାହ୍ମଣୀ,
ଏ କୁଳେ ଜନ୍ମିଲି ହିନ୍ଦୁ ନ ଖାଏ ମୋ ପାଣି ॥
କହେ ସାଲବେଗ ହୀନ ଜାତିରେ ଯବନ,
ଶ୍ରୀରଙ୍ଗାଚରଣ ବିନୁ ନ ଜାଣଇ ଆନ ॥*

---

* ଏହି ଭଜନଟିର ଭିନ୍ନପ୍ରକାର ସ୍ୱରୂପ ଏଠାରେ ସଂଗୃହୀତ ହୋଇଛି । ଗାୟକବିଶେଷରେ ମୌଳିକ ସ୍ୱରୂପର ସାମାନ୍ୟ ପରିବର୍ତ୍ତନ ହେବା ଖୁବ୍ ସ୍ୱାଭାବିକ । ହୁଏତ ଭକ୍ତକବି ଭିନ୍ନ ଭିନ୍ନ ସମୟରେ ଏହି ଭଜନଟିକୁ ସ୍ୱରୂପ ଭେଦରେ ଗାନ କରିଥିବା ଅସମ୍ଭବ ନୁହେଁ ।

## ୧୫

ଏକା ମୋ ଭଗତ ଜୀବନ ।
ଭଗତ ନିମନ୍ତେ ମୋର ଶଙ୍ଖ ଚକ୍ର ଚିହ୍ନ ॥ (୧)
ଭଗତ ମୋ ପିତାମାତା ଭଗତ ମୋ ବନ୍ଧୁ ।
ଭଗତ ନିମନ୍ତେ ମୋର ନାମ କୃପାସିନ୍ଧୁ ॥

---

(୧) ସୁଦାମା ନାମକ ଗୋପାଳ ଶ୍ରୀରାଧାଙ୍କ ଶାପରୁ ଶଙ୍ଖଚୂଡ଼ ଅସୁରରୂପେ ଜନ୍ମଗ୍ରହଣ କରି ତୁଳସୀ ନାମ୍ନୀ ସତୀ ସ୍ତ୍ରୀର ପାଣିଗ୍ରହଣପୂର୍ବକ ଦେବତାମାନଙ୍କୁ ଜୟ କରିଥିଲା । ବିଷ୍ଣୁ ତୁଳସୀର ସତୀତ୍ୱ ନଷ୍ଟ କରନ୍ତେ, ଶଙ୍ଖଚୂଡ଼ ବଧହେଲା ଏବଂ ବିଷ୍ଣୁଙ୍କ ଆୟୁଧରୂପେ ସ୍ଥାନ ପାଇଲା । ବେଦ-ଅପହରଣକାରୀ ଶଙ୍ଖାସୁର ମଧ୍ୟ ଅନୁରୂପ ବର ପାଇ ବିଷ୍ଣୁଙ୍କ ଆୟୁଧ ହୋଇଛି ।

ଦେବତାମାନଙ୍କ ଅନୁରୋଧମତେ ଦିବାକରଙ୍କ ତେଜଃପୁଞ୍ଜ ଗ୍ରହଣକରି ସଦାଶିବ ସୁଦର୍ଶନ ଚକ୍ର ନିର୍ମାଣ କରିଥିଲେ । ସେହି ଅସ୍ତ୍ରଦ୍ୱାରା ବିଷ୍ଣୁ ଦାନବବଳ ସଂହାର କରି ଭକ୍ତଙ୍କର ମନୋବାଞ୍ଛା ପୂରଣ କରିଥିଲେ ।

ଭଗତ ଯେଣିକି ଯାଇ ମୁହିଁ ଯାଇ ତେଣେ ।
ଭଗତର ଅଭିମାନ ନ ସହଇ କ୍ଷଣେ ॥
ଭଗତ ମୋ ପାଟସୂତା ମୁହିଁ ଫୁଲ ଯୂଇ ।
ଭଗତ ଯେମନ୍ତେ ଗୁନ୍ଥେ ମୁଁ ତେଣେ ବୁଲଇ ॥
ଧେନୁ ପଛେ ବତ୍ସା ଯେହ୍ନେ ଗମେ କ୍ଷୀର ଲୋଭେ ।
ଭଗତର ପଛେ ମୁହିଁ ଥାଇ ସେହି ଭାବେ ॥
ଭଗତର ଭାର ବହି ମୋ କାନ୍ଧ ଫଳିଛି (୨) ।
ଭଗତ ମାଇଲା ନାତ ମୋ ହୃଦ ବହିଛି (୩) ॥
ଭଗତ ନିମନ୍ତେ ମୁଁ ଯେ ହସ୍ତିନାକୁ ଗଲି ।
ବିଦୁର କେମନ୍ତ ଜାତି ତା'ଘରେ ଭୁଂଜିଲି (୪) ॥
କହେ ସାଲବେଗ ହୀନ ଜାତିରେ ଯବନ ।
ରାଧାକୃଷ୍ଣ ପାଦ ବିନୁ ଅନ୍ୟେ ନାହିଁ ମନ ॥

---

(୨) ହନୁମାନ-ଅର୍ଜ୍ଜୁନଙ୍କ ବିବାଦବେଳେ ବିଷ୍ଣୁ ଅର୍ଜ୍ଜୁନଙ୍କ ମାନ ରକ୍ଷା ପାଇଁ ହନୁମାନଙ୍କ ଭାର ବହନ କରିଥିଲେ ।

(୩) ଶ୍ରୀବତ୍ସ ବ୍ରାହ୍ମଣ ବିଷ୍ଣୁଙ୍କ ବକ୍ଷରେ ପାଦପ୍ରହାର କରିଥିଲେ ।

(୪) ଦୁର୍ଯ୍ୟୋଧନଙ୍କ ସଭାରୁ ଅପମାନିତ ହୋଇ ଫେରିବା ମାର୍ଗରେ ଶ୍ରୀକୃଷ୍ଣ ବିଦୁରଙ୍କ ଗୃହରେ ଭୋଜନ କରିଥିଲେ ।

## ୧୭

ଏକା ମୋ ଭକତ-ଜୀବନ,
ଭକତ ନିମନ୍ତେ ମୋର ଶଙ୍ଖଚକ୍ର ଚିହ୍ନ ॥
ଧେନୁ ପଛେ ବତ୍ସା ଯେହ୍ନେ ଗମେ କ୍ଷୀର ଲୋଭେ,
ଭକତ ପଛରେ ମୁହିଁ ଥାଇ ସେହି ଭାବେ ॥
ଭକତ ମୋ ପାଟସୂତ୍ର ଗୁନ୍ଥିଲି ଯେ ଫୁଲ ।
ଯେମନ୍ତେ ଗୁନ୍ଥିଲେ ମୁଁ ତ ଯେ ହୋଇଥାଇ ତୁଲ ॥
ଭକତ ମୋ ମାତାପିତା ଭକତ ମୋ ବନ୍ଧୁ ।
ଭକତ ନିମନ୍ତେ ମୋର ନାମ କୃପାସିନ୍ଧୁ ॥
ଭକତ ନିମନ୍ତେ ମୁଁ ଯେ ହସ୍ତିନାକୁ ଗଲି ।
ବିଦୁର ଯେବଣ ଜାତି ତା' ଘରେ ଭୁଞ୍ଜିଲି ॥

ଭକତଙ୍କ ଭାର ବହି ମୋ କାନ୍ଧ ଫାଟିଲାଣି ।
ଭକତ ମାରିବା ନାଟ ମୋ ହୃଦେ ବହୁଛି ॥
କହେ ସାଲବେଗ ହୀନ ଜାତିରେ ଯବନ ।
ଥାଇ ଦାରୁ ଆଜ୍ଞା ହେଲେ ଯିବି ବୃନ୍ଦାବନ ॥*

* ଏହି ପଦ୍ୟଟି ଶ୍ରୀଜଗନ୍ନାଥ ରଥଙ୍କଠାରୁ ସଂଗୃହୀତ । ଏଥିରେ କୌଣସି ବିଶେଷତ୍ୱ ନ ଥିଲେ ହେଁ କେବଳ ଶେଷପାଦ 'ଥାଇ ଦାରୁ ଆଜ୍ଞା ହେଲେ ଯିବି ବୃନ୍ଦାବନ'ର ମହତ୍ତ୍ୱ ରହିଛି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ସାଲବେଗ ବୃନ୍ଦାବନ ଯାତ୍ରା ପୂର୍ବରୁ ଶ୍ରୀକ୍ଷେତ୍ରରେ ବାସକରିବା ସଙ୍ଗେ ସଙ୍ଗେ ଭଜନ ରଚନା କରୁଥିଲେ ଏବଂ ପ୍ରଭୁଙ୍କ ଅନୁଜ୍ଞା ପାଇବା ପରେ ସେ ବୃନ୍ଦାବନ ଯାତ୍ରା କରିଥିଲେ ।

## ୧୭

ଏ ନବଘନ କଳାବଦନ ଲୁଚିଯାଇଛି ଗୋ !
ପିନ୍ଧିଛି ପାଟପଟନି ଜଡ଼ିଛି ରତନ
କଳାମେଘେ ବିଜୁ ଯେହ୍ନେ ମାରେ ଘନ ଘନ ॥
ବସିଅଛି ସିଂହାସନେ ଭିଡ଼ିଛି ଆସନ ।
ବାମ-ଭୁଜ ଟେକି ପ୍ରଭୁ ସୁହାନ୍ତି ନୟନ ॥
ଆଖି ଦୋ'ଟି ଚକା ଚକା ବାହା ଦୋ'ଟି ବଙ୍କା ।
କଦମ୍ବମୂଳକୁ ଯାଇନପାରଇ ମୋତେ ତ ଲାଗଇ ଶଙ୍କା ॥
ତମ-ତନୁ (୧) ଛନ୍ଦେ ତୋର ମନ ଭ୍ରମ ଝାଲେ ।
ମୁକୁତା କି ଫଳଅଛି ତରୁଲତା ମୂଳେ ॥
କହେ ସାଲବେଗ ହୀନ ମୁଁ ପତିତ ଦୀନ ।
କଲେକ କଲେକ ସେବିଅଛି ଶ୍ରୀରଙ୍ଗାଚରଣ ॥

(୧) ତମ-ତନୁ : ତମ=ଅନ୍ଧକାର, ଅର୍ଥାତ୍ କୃଷ୍ଣବର୍ଣ୍ଣ ଶରୀର ।

## ୧୮

କନକ କେତକୀ ଚମ୍ପା ତଡ଼ିତବରଣୀ ।*
ଇନ୍ଦୀବର ନୀଳମଣି ଜଳଦ-ବସନୀ ।।
ମୃଗଜ ଖଞ୍ଜନ ମୀନ ପଙ୍କଜନୟନୀ ।
କାମଧେନୁ ଭ୍ରମରପନ୍ତି ଭ୍ରୂରୁ ଭୁଜଙ୍ଗିନୀ ।।
ଅରୁଣ ପ୍ରବାଳ ବିମ୍ବ ସୁରଙ୍ଗ ଅଧର ।
ବସନ ଝରକୁ ଶ୍ୱେତ ମଣି ମୋତିବର ।।
ଚିବୁକ (୧) ଗୁଲାବ ବର ରାଜିତ ନିର୍ମଳ ।
କରଯୁଗ ହେମଫଣୀ କନକ ମୃଣାଳ ।।
ଅଙ୍ଗ ବିରାଜିତ ବକ୍ଷେରେ ମୋତିହାର ।
ହଂସ-ବକଶ୍ରେଣୀ ଗଙ୍ଗାଜଳ ଦୁଗ୍ଧଧାର ।।
କୁଚ ହେମ କଳସ କଳି ଦାଡ଼ିମ୍ବ ଶ୍ରୀଫଳ ।
କନକ ଶଙ୍କର ଘଟ ମନ୍ମଥ ମଙ୍ଗଳ ।।
କଟୀ ହରି ଡମ୍ବରୁ ଜାନୁ ହେମ ରମ୍ଭାସ୍ତମ୍ଭ ।
ନୂପୁର ମଦନ ଫାନ୍ଦ ଶିରବରଂ ନିତମ୍ବ ।।
ସୁରତି ପ୍ରାନ୍ତେ ଶ୍ରମବିନ୍ଦୁ ଶୋଭେ ଅଙ୍ଗ ।
ଜାଣି ତ ମୁକୁତାବର ସନାଳ ତରଙ୍ଗ ।।
ପାଶେ ପାଶେ ଥାଇ ତହିଁ କରନ୍ତୁ ବ୍ୟଜନ ।
ହରକ ମନାନ୍ଦୁ ମୁଁ ତ ସାଲବେଗ ହୀନ ।।

---

* ପ୍ରସ୍ତୁତ କବିତାଟି ଡକ୍ଟର ବଂଶୀଧର ମହାନ୍ତଙ୍କ 'ଭକ୍ତକବି ସାଲବେଗ' ଶୀର୍ଷକ ପ୍ରବନ୍ଧ (ଝଙ୍କାର ୯ମ ବର୍ଷ, ୧୨ଶ ସଂଖ୍ୟା)ରେ ଦୁଇଟି ସ୍ଥାନରେ ଭାଗ ଭାଗ ହୋଇ ରହିଛି; କିନ୍ତୁ ଶ୍ରୀମନ୍ଦିର ପୁରୀର ଜଣେ ଭକ୍ତ ଗାୟକ ଏହାକୁ ଗୋଟିଏ କବିତାରୂପେ ଗାନକରି ଶୁଣାଇବାରୁ ଏହା ଗୋଟିଏ କବିତା ରୂପେ ଏଠାରେ ପ୍ରଦତ୍ତ ହେଲା । ଭକ୍ତକବି ଏଠାରେ ଠାକୁରାଣୀଙ୍କ ନିଧୁବନ ଲୀଳାର ଶେଷରେ ଅଙ୍ଗଶୋଭା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେତେବେଳେ ଶ୍ରମ ଅପନୋଦନ ଲାଗି ବ୍ୟଜନକରିବାର କାମନା ଭକ୍ତ ସାଲବେଗଙ୍କ ହୃଦୟରେ ଜାଗ୍ରତ ହୋଇଛି ।

(୧) ଶ୍ରୀମତୀଙ୍କ ଅଧରକୁ ଶ୍ରେଷ୍ଠ ଗୋଲାପ ସହିତ ତୁଳନା କରିବା ସାଲବେଗଙ୍କର ଇସଲାମ ସଂସ୍କୃତିର ପରିଚୟସୂଚକ ।

## ୧୯

କଳାଗୁନ୍ଦ, କଳାବଦନ ଲୁଚିଯାଇ ରେ ! *
ଖୋଜି ଖୋଜି ପାଉଥିଲି ହଜିଗଲା କାହିଁରେ ॥
ଉଛୁର ହୋଇଲା ବେଳ ଖୋଜୁଛନ୍ତି କାହିଁ ।
ଧୂଳିରେ ଧୂସର ମୁଖ ଭାହିଁ (୧) ଦଶୁ ନାହିଁ ରେ ॥
ଗୋପପୁରେ ଯେତେ ଗୋପ (୨) ବତ୍ସା ରଖିଥାଇ ।
ଗୋପୀଙ୍କ ନାମ ଧରି ସେ ମୁରଲୀ ବଜାଇ ରେ ॥
ଗୋପୀଙ୍କ ଲବଣୀ କୃଷ୍ଣ କରନ୍ତି ଭୋଜନ ।
ଅଞ୍ଚଳେ ପୋଛନ୍ତି ମୁଖ ଶ୍ରୀମଧୁସୂଦନ ରେ ॥
ଖୋଜ ଖୋଜ ବ୍ରହ୍ମା ଯା'ଙ୍କୁ ନ ପାଇଲେ ଚେତ ।
କହେ ମୂଢ଼ ସାଲବେଗ ଭାଗ୍ୟ ଯଶୋବନ୍ତୀ ରେ ॥

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟସ୍ଥ ପୋଥି O.L. /1740ରୁ ସଂଗୃହୀତ ।

(୧) 'ଭାହିଁ' ପଦ ମୂଳ ପୋଥିରେ ନାହିଁ । (୨) ମୂଳ ପୋଥିରେ 'ଗୋପୀ' ଅଛି; କିନ୍ତୁ ଗୋପୀମାନେ ବତ୍ସା ରଖୁ ନ ଥିଲେ; ବରଂ ଗୋପ ଅର୍ଥାତ୍ ଗୋପାଳ ବା ଗୋପବାଳକମାନେ ବତ୍ସା ରଖୁଥିଲେ ।

## ୨୦

କହ ଗୋ କି ବୁଦ୍ଧି କରିବି ! (୧)
ପ୍ରାଣନାଥ ନଇଲେ ମୁଁ ଜୀବନ ହାରିବି !
ଯେ ଦେଶରେ ରହିଛନ୍ତି ମୋର ପ୍ରାଣପତି ।
ସେ ଦେଶରେ ନାହିଁ ପରି ମାର-ଶର ଭୀତି ॥
ଅଙ୍କ ବିନା କାନ୍ତ ମୋତେ ନ ବସାନ୍ତି ଆନେ ।
ସେ ଏଡ଼େ ନିଷ୍ଠୁର ବୋଲି ନ ଥିଲା ମୋ ମନେ ॥
ଅବଧି ତ ବଳିଗଲା କାନ୍ତ ମୋ ନଇଲେ ।
କାହା ଗୃହେ ଅଭିଳାଷେ ସେ ମୋତେ ପାଶୋରିଲେ ॥

---

(୧) ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟସ୍ଥ OrMS/143ରୁ ସଂଗୃହୀତ ।

ଯେତକ ଚେତନ୍ତ କାନ୍ତ ତେତକ ପକାନ୍ତ ।
ଭ୍ରମରଙ୍କ ପର ପିନା ପୁରୁଷଙ୍କ ମତ ॥
କହେ ସାଲବେଗ ହୀନ ଜାତରେ ଯବନ ।
ରାଧାକୃଷ୍ଣ ପଦ୍ମପାଦେ ରହୁ ମୋର ମନ (୬) ॥

(୬) ଶ୍ରୀକୃଷ୍ଣଙ୍କ ମଥୁରାଗମନ ପରେ ବିରହିଣୀ ଶ୍ରୀରାଧାଙ୍କ ପ୍ରଳାପପୂର୍ଣ୍ଣ ଉକ୍ତିଭଳି ମନେ ହୁଏ । ଏଠାରେ ଅବଧି ଶେଷ ହୋଇଯିବାରୁ ଶ୍ରୀକୃଷ୍ଣଙ୍କୁ ଫେରିଆସିବାର ନ ଦେଖି ଶ୍ରୀରାଧା କିମ୍ବା ଚନ୍ଦ୍ରାବଳୀ ଏପରି ଭାବନା କରୁଛନ୍ତି । ଏଠାରେ ଶ୍ରୀକୃଷ୍ଣଙ୍କ ନାମ ପଦ୍ୟରେ ନ ଥିଲେ ମଧ୍ୟ ଏହି ଗୀତଟି କୃଷ୍ଣଲୀଳାର ଅଂଶବିଶେଷ ବୋଲି ଧାରଣା କରିହୁଏ ।

## ୨୧

କାଳିଆ କଦମ୍ବ ତରୁ ତଳେ ମୋତେ ଦେଖି ହସିଲା । *

ହୋଇଲି ଅମ୍ବ ଅମ୍ବ (୧) କାଖରୁ ମୋ କୁମ୍ଭ ଖସିଲା । ୧ ।
ତେରଚ୍ଛା ଚାହାଣି ରସେ ଛନ୍ଦ ମୋର ଧ୍ୱଂସିଲା (୨) ।
ବଚନ କହିଣ କାହ୍ନୁ ପୁଣ ପୁଣ ହସିଲା । ୨ ।
ବୋଇଲା ତ (୩) ରାଧା ଗଲା ପ୍ରାଣେ ମୋତେ ଦଶିଲା ।
ଧାଇଁ ଆସି ମାଇଁ ବୋଲି ପଥ ସେ ଓଗାଳିଲା । ୩ ।
ଘାଟ ବାଟ ନ ଛାଡ଼ି ସେ ପଥ ଜଗି ବସିଲା ।
ତାକୁ ଦେଖି ଅଙ୍ଗେ ମୋ ଅନଙ୍ଗ ଅହି (୪) ଦଂଶିଲା । ୪ ।
କହେ ଦୂତୀ ଶୁଣ ରାଧା କୃଷ୍ଣ ତୋତେ ରସିଲା ।
ହୀନ ସାଲବେଗ ମୂଢ଼ କୃଷ୍ଣରସେ ଭାସିଲା (୫) । ୫ ।
ହେମ ମରକତେ ରାଧା ଶ୍ୟାମ ଅଙ୍ଗେ ମିଶିଲା (୬) । ୬ ।

* ଏ ରଚନାଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ହୋଇଛି ।

(୧) 'ଦମ୍ବ ଦମ୍ବ' ମୂଳପାଠ । (୨) 'ଧଁସିଲା' ମୂଳପାଠ । (୩) 'ବୋଇଲେ ତ' ମୂଳପାଠ; କିନ୍ତୁ ହସିଲା, ରସିଲା, ଓଗାଳିଲା ପ୍ରଭୃତି କ୍ରିୟାପଦ ଦୃଷ୍ଟିରୁ 'ବୋଇଲା' ପାଠ ସମୀଚୀନ । (୪) ଅନଙ୍ଗ ଅହି—କାମରୂପକ ବିଷଧର ସର୍ପ । (୫) 'ରସିଲା' ମୂଳପାଠ: କିନ୍ତୁ ଭକ୍ତକବି ସାଲବେଗ ଶ୍ରୀରାଧା-କୃଷ୍ଣଙ୍କ ରସରେ ନ ରସି 'ଭାସିଲା' ହେବା ସମୀଚୀନ ବୋଲି ମନେହୁଏ । (୬) ଏ ପାଦଟି ଅସମ୍ପୂର୍ଣ୍ଣ ବୋଲି ମନେହୁଏ ।

## ୨୨

କାଳିଆ କାହ୍ନୁ ମୋହନ ବେଣୁ
କାହୁଁ ଖୋଜି ଖୋଜି ପାଇଲି ।*
ଯେ ବୋଲୁ ସେ ବୋଲୁଛୁ ତ ମୁରଲୀରେ ରହିଲି । ପଦ ।
ପାଦେ ପାଦ ଛନ୍ଦି ପୀତବାସ ପିନ୍ଧି କଦମ୍ବ ତଳରେ ରହିଲା,
ପୟରେ ନୂପୁର ଝୁମୁକ କଟାଉ କେମନ୍ତେ ସୁନ୍ଦର ଶୋହିଲା ।।
ମୁଁ ତାର ମାଇଁ ସେ ମୋହର ଭଣଜା ମୁଖେ ତାର ଲାଜ ନୋହିଲା,
ତାର ଲାଗି ପଛେ ତେଜିବି ଜୀବନ ଲୋକେ ଅପଖ୍ୟାତି ହୋଇଲା ।।
ବେଗେ ରହ ରହ କାହ୍ନୁ କୁମ୍ଭ ଥୁଅ ଆଗରେ ଓଗାଳି ରହିଲା,
ମନ୍ଦ ମନ୍ଦ ହସି ପାଖେ ବସାଇଲା ଟେରେଇ ନୟନେ ଚାହିଁଲା ।।
ତା ଅପାଙ୍ଗ ଶର ମରମେ ବାଜିଲା ଶର ବାଜି ଲାଗି ରହିଲା,
ଶୟନ ଭୋଜନ ଦୁସ୍ଥ ମୁଁ ତେଜିଲି ମରଣା ଉପାସ୍ଥ ହୋଇଲା ।।
କହେ ଅତି ଶୋକେ ରାଧା ଦୂତୀ ଆଗେ କୃଷ୍ଣଙ୍କୁ ଆଣ ଯା ବୋଇଲା,
ରାଧିକା ସନ୍ଦେଶ ଘେନି ସହଚରୀ କୃଷ୍ଣଙ୍କୁ କୁଞ୍ଜରେ ଭେଟିଲା ।।
ରାଧିକା ବିନୟ ଦୂତିକା କହନ୍ତେ ଶ୍ରୀକୃଷ୍ଣ ତୁମୁରେ ରହିଲା,
ବିଳମ୍ବ ନ କର ଚଳ ରାଧାପୁର, ହୀନ ସାଲବେଗ କହିଲା ।।

---

* ରଚନାଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ । ଶ୍ରୀକୃଷ୍ଣଙ୍କ ମୋହନସୁନ୍ଦର ରୂପରେ ବିମୁଗ୍ଧା ରାଧାଙ୍କର ମନୋଭାବ ପ୍ରକାଶ କରି କବି ସାଲବେଗ ପ୍ରଭୁଙ୍କଠାରେ ପ୍ରାର୍ଥନା କରି କହିଛନ୍ତି, 'ବିଳମ୍ବ ନ କର ଚଳ ରାଧାପୁର, ହୀନ ସାଲବେଗ କହିଲା' । କବି ଠାକୁରାଣୀଙ୍କର ଦୁଃଖରେ ଅଧୀର ହୋଇ ପ୍ରଭୁଙ୍କ ପାଦପଦ୍ମରେ ନିବେଦନ ଜଣାଇଛନ୍ତି । କବିଙ୍କର ଦାସ୍ୟଭକ୍ତି ଏହି ରଚନାରେ ଫୁଟିଉଠିଛି ।

## ୨୩

କାଳିଆ କି ମନ୍ତ୍ର କଲା
ଚିତ୍ତ ଛନ୍ନ ଛନ୍ନ ହେଲା ।।
ପୋଖରୀର ତୀରପାଖେ ତୀର ଗଛ ଚମ୍ପା ।
ଡାଳ ଭାଙ୍ଗି ଫୁଲ ତୋଳେ ଚତୁରୀ ରାଧିକା ।।
ପୋଖରୀର ତୀର ପାଖେ ବୁଣିଲି ଧଣିଆ ।
ଡାଳ ଭାଙ୍ଗି ଫୁଲ ତୋଳେ ବିଦେଶୀ ବଣିଆ ।।

ବାଟେ ଯେ କଆଳୀ ଫୁଲ୍ ତୋଳିଲି ପଣତେ ।
ବାଳୁତ କାଳରୁ ପ୍ରୀତି ତେଜିବି କେମନ୍ତେ ॥
ବଂଶୀ ବାଜେ ସିଂହା ବାଜେ ବାଜେ କରତାଳ ।
ମୟୂରଚନ୍ଦ୍ରକା ଚୂଳ ନାଚେ ଢଳଢଳ ॥
ଦସ୍ୟୁଣା ଯେ ଚୂଳମାଳ ଚନ୍ଦନ ବିନ୍ଦୁକୁ ।
ଆହା କି ଶୋଭା ପାୟେ ମୋ ପରାଣବନ୍ଧୁକୁ ॥
କହେ ସାଲବେଗ ହୀନ ଜାତିରେ ଯବନ ।
ଶ୍ରୀମୁଖରେ ଆଜ୍ଞା ହେଲେ ଯିବି ବୃନ୍ଦାବନ ॥

## ୨୪

କାଳିଆ ଧନ, ବାରେ ନ ଦେଲୁ ଦରଶନ ।
ବାରେ ତୋ ଲଗି ଯାଉ ଜୀବନ ॥

ଅଣ୍ଟାଗୋଟି ତୋର ଡମ୍ବରୁ ଆକାର
ଗଢ଼ିଛୁ କେଉଁ ବିନ୍ଧାଣି ।

ଚୂଳ ଗୋଟି ତୋର ଛୁଆ ସିଂହ ପ୍ରାୟେ
ମତ୍ତଗଜ ପର ଠାଣି ॥

ଆମ୍ଭେ ଗୃଶ ସଖୀ ଯମୁନାକୁ ଗଲୁ
ଚୀନାମାଲୀ ନେଲା କାଢ଼ି ।

କେ ଯାଇ କହିବ ଶ୍ୟାମବନ୍ଧୁ ଆଗେ,
ଧନୁଶର ଧରି ଧାଇଁ ॥

ଗୃର ସଖୀ ଆମ୍ଭେ ଯମୁନାକୁ ଗଲୁ,
ଆମ୍ଭ ଗୃର କୁମ୍ଭ ନୂଆ ।

ଡାଳକ ପାଣିରେ କୁମ୍ଭ ନ ବୁଡ଼ଇ,
କୃଷ୍ଣ ହେଲେ ପାଣିକୁଆ ॥

ଆମ୍ଭେ ଗୃର ସଖୀ ଯମୁନାକୁ ଗଲୁ,
ବାଟରେ ଚିକଟି ମାଟି ।

ଗୋଡ଼ ଖସିଗଲା କୁମ୍ଭ ଢଳିଗଲା,
ଭାଜିଗଲା ଚୂଡ଼ିମୁଠି ॥

ପର୍ବତ ଶିଖରେ ଇନ୍ଦ୍ର ବୃଷ୍ଟି କଲେ
ଯମୁନାକୁ ବହେ ଧାରେ ।
ଶ୍ରୀକୃଷ୍ଣ ବୋଲି ମୁଁ ଚିହ୍ନି ନ ପାରିଲି,
ସେ ଥିଲେ କଦମ୍ବମୂଳେ ।।
ବେଣ୍ଟ ପାଖେ ଶିଖୀ ନୃତ୍ୟ କରୁଛନ୍ତି,
ମଧ୍ୟରେ ବହେ ଯମୁନା ।
କହେ ସାଲବେଗ ଜାତିରେ ଯବନ,
ନୀଳଚକେ ଉଡ଼େ ବାନା ।।*

* ଶ୍ରୀନିବାସ ରଥଙ୍କ ସଂଗ୍ରହରୁ ଗୃହୀତ ।

ପ୍ରସ୍ତୁତ ପଦ୍ୟଟି ପରି ଆଉ ଗୋଟିଏ ପଦ୍ୟ ସାଲବେଗଙ୍କ ନାମରେ ରହିଛି । କେତେକ ପଦ ସାମଞ୍ଜସ୍ୟ ଥିଲେ ମଧ୍ୟ ଏଥିରେ କେତେକ ନୂତନତ୍ୱ ଅଛି ।

## ୨୫

କାଳିଆ ଧନ ! ତୋଲାଗି ଯାଉ ଏ ଜୀବନ !
ବାରେ ନ ଦେଲୁ ଦରଶନ । *
କାଳିଆ କାଳିଆ ନିପଟ୍ଟ କାଳିଆ ପିନ୍ଧିଛୁ ପୀନ ପତନ,
କାଳିଆ ଅଙ୍ଗରୁ ବହେ ଶ୍ରମଜଳ କାଳନ୍ଦୀ ନଦୀର ପାଣି ।୧।
ନନ୍ଦଘୋଷ ରଥେ ବସିଛୁ କାଳିଆ ଜଗତ ମୋହିବା ପାଇଁ,
ହରି ହରି ବୋଲି ଶବଦ ଶୁଭୁଛି ମନରେ ଆନନ୍ଦ ହୋଇ ।୨।

*ଅନ୍ୟ କେତୋଟି ଜଣାଣ ପରି ଭକ୍ତକବି ସାଲବେଗ ଏହି ପଦ୍ୟରେ ମଧ୍ୟ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଅଭେଦ ପରିକଳ୍ପନା କରିଛନ୍ତି । କବିଙ୍କ ମାନସପଟଳରେ ଝଲସି ଉଠିଛି—ଗୋଟିଏ ପଟେ ରଥଯାତ୍ରା ସମୟର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପହଣ୍ଡି ବିଜେ, ଅନ୍ୟପଟେ ନାଚିଉଠିଛି—ଷୋଳସହସ୍ର ଗୋପବାଳାଙ୍କ ମଧ୍ୟରେ ନଟବର ନାଗରଙ୍କର ରାସକ୍ରୀଡ଼ା । ଉଭୟ ମନମୋହକ ଦୃଶ୍ୟର ଏକ ମିଳନ କରାଇ କବି ପ୍ରସ୍ତୁତ ପଦ୍ୟଟିକୁ ସେଉଜ୍ଜ୍ୱଳ୍ୟ କରାଇଛନ୍ତି ।

ଅଣ୍ଟା ଗୋଟି ତୋର ଡମ୍ବରୁ ଆକାର ଗଢ଼ିଛି କେଉଁ ବିନ୍ଧାଣି,
ସ୍ତନ ଗୋଟି ତୋର ମତ୍ତଗଜ ପ୍ରାୟେ *ସୁହାଣି ତୋ ସିଂହଠାଣି ।୩।

ଏ ଗୋପପୁରରେ ଯେତେକ ବାଳକ ସମସ୍ତେ ଧରନ୍ତି ଭାଲ,
ସବୁ ଗୋପୀ ମୁଣ୍ଡେ ଫୁଲ ଖଣ୍ଡେ ଖଣ୍ଡେ କୃଷ୍ଣଙ୍କିରେ ଜାମୁଡ଼ାଳ ।୪।

ସେପାଖେ ଚନ୍ଦ୍ରକ ଏପାଖେ ଚନ୍ଦ୍ରକ ମଝିରେ ଗୁଞ୍ଜରମାଳ,
ଶ୍ରୀଜଗନ୍ନାଥଙ୍କ ଶ୍ରୀପାଦେ ଶରଣ କହେ ସାଲବେଗ ହୀନ ।୫।

* ଏଠାରେ ସୁରୋଟି ଅକ୍ଷର ପୋଥିରେ ନାହିଁ । କେବଳ ଅର୍ଥସଙ୍ଗତ ଦୃଷ୍ଟିରୁ 'ସୁହାଣି ତୋ' ଏଠାରେ ଯୋଗକରାଯାଇଛି ।

## ୬୭

କାହିଁକି ଆସିଛୁ ମନ, କସ ନେବା ପାଇଁ ରେ ।
ଆସିଛୁ ଲଙ୍ଗଳା ତୁ ଯିବୁ ଶୂନ୍ୟ ହୋଇ ରେ ।।
ଘାଇଯାକ ମୁକୁଳା ତୁ ବନ୍ଧ କେତେ ବାନ୍ଧୁ ରେ ।
ଆପେ ମଲେ ଯୁଗଯାଏ ପରଳୟ କାନ୍ଦୁ ରେ ।।
ତୁ ଯାହାକୁ ବଶ ହେଲୁ ଶାଢ଼ି ଶଙ୍ଖା ଦେଇ ରେ ।
ଖାଉଅଛି ସେହି ତୋତେ କାଳରୂପୀ ହୋଇ ରେ ।।
ମାଟିଘଟ ପଞ୍ଜରାରେ ପାଳୁ ସୁନା ଶୁଆ ରେ ।
ଅଠାକାଠି ଲଗାଇଛି ଶବର ନୋହଆ ରେ ।।
କହେ ସାଲବେଗ ହୀନ ପାଦପଦ୍ମେ ଧ୍ୟାଇ ରେ ।
ଶ୍ରୀରଙ୍ଗାଚରଣ ବିନୁ ଅନ୍ୟ ଗତି ନାହିଁ ରେ ।।

## ୬୮

(୧) କାହିଁ ଗଲେ ମୁରଲୀ ଫୁଙ୍କା
ଯୁବତୀ-ରସିକ କାମିନୀ-ରଙ୍କା
ପାଦପାଣି ବଙ୍କା-ନୟନ-ବଙ୍କା ଅଧର ବଙ୍କା ।୧।
ବାଙ୍କ ଶ୍ରୀଅଧରେ-ମୁରଲୀ ବଜାଇ ଡାକୁଛନ୍ତି ଆସ ଆସ ରାଧିକା
ବସ୍ତ୍ର ଚୋରିକରି କେଲି କଦମ୍ବରେ ବାନ୍ଧି ପତାକା ।୨।

ତ୍ରେତୟା ଯୁଗରେ ରାମ ଅବତାରେ
ଜାନକୀ ଛଳରେ ଭାଙ୍ଗିଲେ ଲଙ୍କା (୨)
କହେ ସାଲବେଗ ବଂଶୀରେ ଶରଣ
ଝୁରି ଝୁରି କ୍ଷୀଣ ହେଲେ ରାଧିକା ।୩।*

---

(୧) ପ୍ରସ୍ତୁତ ଗୀତଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./157ରୁ ସଂଗୃହୀତ ।
(୨) ପ୍ରସ୍ତୁତ ପଦଟି ସାଲବେଗଙ୍କ ଅନ୍ୟ ଭଜନରେ ଥିବାର ଦେଖାଯାଏ ।
* ଭଜନଟି O.L./72 ପୋଥିରେ ନିମ୍ନଲିଖିତ ପ୍ରକାରେ ରହିଛି—

କାହିଁ ଗଲେ ମୁରଲୀଫୁଙ୍କା, ଯୁବତୀ ରସିକ କାମିନୀରଙ୍କା । ପଦ ।
ପାଦ ପାଣି ବଙ୍କା ନେପୁର ବଙ୍କା, ଚଳଇ ବଙ୍କା ତା ନୟନ ବଙ୍କା ।
ଶ୍ରୀରଙ୍ଗ ଅଧରେ ମୁରଲୀ ବଜାଇ, ସହଜେ ଅଟଇ ସେ ପୁଣି ବଙ୍କା ।।
ଆମ୍ଭେ ସବ ସଖୀ ଯମୁନାକୁ ଗଲେ, ଶଙ୍କର ଗଉରୀ ପୂଜ ବାଲୁଙ୍କା ।
ଏବେ ପୁଣି ଲୋକହସା କରୁଅଛ ନଗରରେ ବୈଂଶୀ କରୁଛ ଡଙ୍କା ।।
ମୀନ ଅବତାରେ ତ୍ରେତୟା ଯୁଗରେ ସାଗର ଭିତରେ ମାଇଲ ଶଙ୍ଖା ।
ଆମ୍ଭେ ସବସଖୀ ଯମୁନାକୁ ଗଲେ ତାହାର ଯୋଗୁ ନ ଲାଗଇ ଦଙ୍କା ।।
ରାମ ଅବତାରେ ତ୍ରେତୟା ଯୁଗରେ ଜାନକୀ ଛଳେ ବିଧ୍ୱଂସିଲେ । ଲଙ୍କା ।
କହେ ସାଲବେଗ ଜାତରେ ଦମନ ଝୁରି ଝୁରି ତନୁ କ୍ଷୀଣ ରାଧିକା ।।

## ୨୮

କାହିଁ ଗଲେ ମୁରଲୀଫୁଙ୍କା !
ଚଳବଙ୍କା ତାଙ୍କ ନୟନବଙ୍କା ।
ଶ୍ରୀରଙ୍ଗ ଅଧରେ ମୁରଲୀ ବାହୁଛି,
ସହଜେ ସେଇ ତ ଅଟଇ ବଙ୍କା ।।
ଆମ୍ଭେ ସବ ସଖୀ ଯମୁନାକୁ ଗଲୁ
ଶଙ୍କରଙ୍କୁ ପୂଜ ପାଇଲୁ ଲଙ୍କା (୧) ।

---

(୧) 'ଶଙ୍କରଙ୍କୁ ପୂଜ ପାଇଲୁ ଲଙ୍କା' ଅର୍ଥ ଆଦୌ ସୁସ୍ପଷ୍ଟ ନୁହେଁ । ତେଣୁ ଏଠାରେ O.L./72 ପୋଥିରେ ଥିବା ପାଠ—'ଆମ୍ଭେ ସବସଖୀ ଯମୁନାକୁ ଗଲେ, ଶଙ୍କର ଗଉରୀ ପୂଜ ବାଲୁକା ।।' ଅଧିକ ସମୀଚୀନ । କୌଣସି ଗାୟକ ମୁଖରେ ଏହା ବିକୃତ ହୋଇ-ଯାଇଛି ।

(୨) ଆଣ୍ଠୁକ ପାଣିରେ କୁମ୍ଭ ନ ବୁଡ଼ଇ
ତାହା ଦେଖି ମନେ ହେଲା ତାଟଙ୍କା ॥
ଆମ୍ଭେ ସବୁ ସଖୀ ନୀର ପାଇଁ ଗଲେ
ବାଟ ଜଗି ପୁଣି ମାରନ୍ତି ଟେକା ।
କଂସକୁ କହିବୁ ଗ୍ଭଟ ମରାଇବୁ
କାଲି ଭଣ୍ଡାଇବୁ ଷାଠିଏ ଟଙ୍କା ॥
ତ୍ରେତୟା ଯୁଗରେ ରାମ ଅବତାରେ,
ଜାନକୀ ଛଳେ ଯା ବନ୍ଧିଲେ ଲଙ୍କା ।
କହେ ସାଲବେଗ ଜାତିରେ ଯବନ
ଝୁରି ଝୁରି ତନୁ କ୍ଷୀଣ ରାଧିକା ॥*

---

(୨) 'ଆଣ୍ଠୁକ ··· ଷାଠିଏ ଟଙ୍କା' ଏହି ଦୁଇଟି ପଦ ଅନ୍ୟ ଦୁଇଟି ପୋଥିପାଠରେ ଦେଖାଯାଏନାହିଁ ।

* ପ୍ରସ୍ତୁତ ଗୀତଟି ପୂର୍ବଗୀତର ଅନୁରୂପ ହୋଇଥିଲେ ମଧ୍ୟ ରାଜ୍ୟ ସଂଗ୍ରହାଳୟର ଦୁଇଟି ପୋଥିରେ (O.L./72 ଓ O.L./157) ଅନୁରୂପରେ ବର୍ଣ୍ଣିତ ହୋଇଛି ।

## ୨୯

କାହିଁ ପାଇଁ ଚକାଡ଼ୋଳା, ମୋତେ କଲ ମାନ ।
କଲାକନ୍ଧି ବନମାଳୀ ନନ୍ଦର ନନ୍ଦନ ॥
କୁଞ୍ଜଲତା ତଳେ ମୁଁ ଯେ କରିବି ଶୟନ ।
ପ୍ରଦକ୍ଷିଣ କରୁଥିବି ଗିରି ଗୋବର୍ଦ୍ଧନ ॥
ରାଧାକୁଣ୍ଡେ ଶ୍ୟାମକୁଣ୍ଡେ କରିବି ସ୍ନାହାନ ।
ସାଫଲ୍ୟ କରିବି ମୁଁ ଯେ ମଣିଷ ଜୀବନ ॥
ଏ ପିଣ୍ଡରେ ଜୀବ ଥିଲେ ଯିବି ବୃନ୍ଦାବନ ।
ଦର୍ଶନ କରିବି କୁଞ୍ଜେ ମଦନମୋହନ ॥
କହେ ସାଲବେଗ ହୀନ ଜାତିରେ ଯବନ ।
ରାଧାକୃଷ୍ଣ ଭଜୁ ଭଜୁ ଯାଉ ଏ ଜୀବନ ॥*

---

*ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟସ୍ଥ ପୋଥି O.L./1789ରୁ ସଂଗୃହୀତ । ଏ ପଦ୍ୟଟି 'ଜୀବନ୍ତରେ ଥିବ ଯେବେ ଯିବି ବୃନ୍ଦାବନ' ଗୀତର ଅନୁରୂପ; କିନ୍ତୁ କେତୋଟି ପଦ, ବିଶେଷତଃ ପ୍ରଥମ ଦୁଇପାଦ ଅତ୍ୟନ୍ତ ଆବେଗମୂଳକ ଆତ୍ମନିବେଦନ ।

## ୩୦

କାହ୍ନୁ ହେ, ବଂଶୀ କେ ଦେଲା ତୋତେ ।
ରାଧା ରାଧା ବୋଲି ଡାକେ ନିରତେ ॥
ବଂଶୀ କେ ଦେଅନ୍ତା ମୋହର ହସ୍ତେ ।
ଭସାଇ ଦେଅନ୍ତି ଯମୁନା ତଟେ ॥
କୁଳଛଡ଼ା ବଂଶୀ କୁଳ ଛଡ଼ାଇ ।
ବଂଶୀ ସିନା ଦେଲା ପ୍ରୀତି ବଢ଼ାଇ ॥
ତୁ ନନ୍ଦସୁତ ମୁଁ ରାଜକୁମାରୀ ।
ବଂଶୀ ସିନା ଦେଲା ପରଚ କରି ॥
ଲୁଚି ଲୁଚି ଯାଇ ବଂଶୀ· ସଙ୍ଗତେ ।
ଖୋଜି ଖୋଜି ବଂଶୀ ଡାକଇ ମୋତେ ॥
ଗୋପପୁରେ ଗୋପୀ ନାହାନ୍ତି କେତେ ।
ମୋ ନାମ ଜାଣିଲା ବଂଶୀ କେମନ୍ତେ ॥
ଜାତି ତାର କଣା ବାଉଁଶ ଖଣ୍ଡେ ।
ତହିଁ ଚଢ଼ାଇଛି କୁସୁମ-କାଣ୍ଡେ ॥
ଅକଳଙ୍କ ଘରେ କୁଳଚନ୍ଦ୍ରମା ।
କହେ ସାଲବେଗ ବଂଶୀ ଗରିମା ॥*

---

*ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1740 ରୁ ସଂଗୃହୀତ । ଅନୁରୂପ ଭାବଧାରାରେ 'ବଂଶୀ ଗୋ କୃଷ୍ଣ କାହ୍ନୁଁ ଆଣିଲେ, ନନ୍ଦର ନନ୍ଦନ ମୋ ପ୍ରାଣ ନେଲେ' ଓ 'ବଂଶୀ ଗୋ କୃଷ୍ଣ କାହ୍ନୁଁ ଆଣିଲେ, ମୋହନ ମୁରଲୀ ମୋ ପ୍ରାଣ ନେଲେ' ଆଉ ଦୁଇଟି ଗୀତ ଥିଲେ ମଧ୍ୟ ପଦମଧ୍ୟରେ ବହୁ ପାର୍ଥକ୍ୟ ରହିଛି ଏବଂ ପ୍ରସ୍ତୁତ ପଦ୍ୟଟି ଅଧିକ ଭାବଦ୍ୟୋତକ ।

## ୩୧

କାହ୍ନୁ ହେ (୧), ମୁଁ ତ କଞ୍ଚି କୁସୁମ
ବିକାଶିଲେ ପୁଷ୍ପ ବାସ ଘେନମ (୨) ॥
ନଟବର ବେଶେ କଳାକହ୍ନାଇ ।
ତୁମ୍ଭେ ମୋ ଭଣଜା ମୁଁ ତୁମ୍ଭ ମାଇଁ ॥୧॥

ମାତାଙ୍କ ଶପଥ ପିତାଙ୍କ ଘ୍ରାଣ ।
ବାହୁଡ଼ାଣି ଦେବ ସୁରତ ଦାନ ॥ ୨ ॥
ଛାଡ଼ ଛାଡ଼ ବାଟ ନନ୍ଦନନ୍ଦନ ।
ଛାଡ଼ିଦେଲେ ଯିବ ସଖୀ ସଙ୍ଗେଣ ॥ ୩ ॥
ଗୁରୁ ଗୁରୁଜନ ବୋଲ ନ କଲି ।
ତୁହ୍ମଁକ ଡରଇ ତହୁଁ ପଡ଼ିଲି ॥ ୪ ॥
କହେ ସାଲବେଗ ଜାତିରେ ହୀନ ।
ରାଧାକୃଷ୍ଣ ପାଦେ ରହୁ ମୋ ମନ ॥ ୫ ॥

---

(୧) ପ୍ରସ୍ତୁତ ଗୀତଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./740ରୁ ସଂଗୃହୀତ ।

(୨) ଏହି ପଦରୁ ଜଣାଯାଏ ଯେ, ଶ୍ରୀରାଧା ଅପ୍ରାପ୍ତ-ବୟସ୍କା; କିନ୍ତୁ ପରବର୍ତ୍ତୀ ପଦରୁ ଜଣାଯାଏ ଯେ ସେ ବିବାହିତା । ତେଣୁ 'କଢ଼ି କୁସୁମ' ପଦରୁ ଅନୁମାନ କରାଯାଏ ଯେ, ଶ୍ରୀରାଧା ସଖୀମାନଙ୍କ ଗହଣରେ ଥିବାରୁ ବିଷଣ୍ଣବଦନା । ନଟବରବେଶ ଦେଖି ଶ୍ରୀକୃଷ୍ଣଙ୍କୁ ମୂର୍ଚ୍ଛି ଯିବାପାଇଁ ମନ ବଳୁନଥିଲେ ହେଁ, ସଖୀମାନଙ୍କ ସାନ୍ନିଧ୍ୟରୁ ବିମନା । ତେଣୁ ସେ ନିଜକୁ 'କୁସୁମକଢ଼ି' ବୋଲି କହିଛନ୍ତି । ଫେରିବାବେଳେ ଯେ କୌଣସି ଉପାୟରେ ସଖୀମାନଙ୍କ ସଙ୍ଗ ତ୍ୟାଗ କରି ପ୍ରଫୁଲ୍ଲମାନସରେ ଶ୍ରୀକୃଷ୍ଣଙ୍କ ସହିତ କେଳି କରିବାର ପ୍ରତିଶ୍ରୁତି ଦେଇ ଯିବାପାଇଁ ଚେଷ୍ଟା କରୁଛନ୍ତି ।

## ୩୨

କି ଆଗୋ ମିତ ! କେଡ଼େ ସୁନ୍ଦର ଗୋପୀନାଥ ।
କଣ୍ଠେ ସୁନା ପଇତା    କପୋଳେ ଠିଆ ଚିତା
ଗଳାରେ ଦୋସରି ମୁକୁତା, କି ଆଗୋ ମିତ !
ବେନି କର୍ଣ୍ଣେ କୁଣ୍ଡଳ    କଣ୍ଠେ ତୁଳସୀମାଳ
ଶିରରେ ରଙ୍ଗ ଗୋପଚୂଳ, କି ଆଗୋ ମିତ !
ରାଧିକା ହସ ହସ    ଦୃଷ୍ଟି ପାଶେ ପ୍ରବେଶ
ଆଜ 'ତ ନୂଆ ନୂଆ ବେଶ, କି ଆଗୋ ମିତ !
କଳା ପୁରୁଷ ବୋଲି    ହେଳାରେ ନାସ୍ତି କଲି
ଏବେ ତ ବଳୁଅଛି ଚିତ୍ତ, କି ଆଗୋ ମିତ !
ତ୍ରିଭଙ୍ଗୀ ଛନ୍ଦେ ଉଭା    କରେ ମୁରଲୀ ଶୋଭା
କେ ଜାଣେ ବ୍ରଜକୁଳର ପ୍ରଭା, କି ଆଗୋ ମିତ !

କହେ ସାଲବେଗ ହୀନ କୃଷ୍ଣପାଦରେ ଧ୍ୟାନ
ମୂଢ଼ ଜାତରେ ମୁଁ ଯବନ, କି ଆଗୋ ମିତ ! *

*ଶ୍ରୀକୃଷ୍ଣଙ୍କ ମନମୋହନ ତଥା କାମିନୀମୋହନ ବେଶର କଳ୍ପନା ଭକ୍ତକବି ସାଲବେଗଙ୍କ ମାନସଚକ୍ଷୁରେ ଉଦ୍ରେକ ହୋଇଛି । ସେ ମନେମନେ ସେହି ମୁନିମନୋହର ବେଶରେ ବିମୁଗ୍ଧ ହୋଇ ସଖୀଭାବରେ ତାର ଆରାଧନା କରିବାକୁ ଯାଇ ଗୀତଟି ରଚନା କରିଛନ୍ତି ।

## ୩୩

କୁଞ୍ଜେ ଗମେ ବିନୋଦିଆ,
ଆତଙ୍କ-ନାଶନ ହୀନା ବିପତ୍ତି ଧ୍ୱଂସିଆ ।।
ଧନ୍ୟ ସେ ବୃନ୍ଦାବନ ଗୁଳ୍ମ ତରୁଲତା,
ଓଳଟି ବହେ ଯମୁନା ବହିଛି ବିଧାତା । ୧ ।
ବାଞ୍ଛାନିଧି (୧) କଳ୍ପତରୁ ଆସନ୍ତେ ବନରୁ ।
ମୁରଲୀର ସୁଧାରସ ବରଷେ ଅଧରୁ । ୨ ।
ଗୋପସୁତ ସଙ୍ଗେ ମିଳି ଆସେ ବନମାଳୀ,
ମୟୂର-ଚନ୍ଦ୍ରିକା-ଚୁଳି ନାଚେ ଚଳିଚଳି । ୩ ।
କପୋଳେ ଚନ୍ଦନ ବିନ୍ଦୁ ଉଦେ କିବା ଇନ୍ଦୁ,
ଦେଖ ସଖୀ ଆସୁଛନ୍ତି ଆମ୍ଭ ପ୍ରାଣବନ୍ଧୁ । ୪ ।
କହେ ସାଲବେଗ ହୀନ ମୁହିଁ ମୂଢ଼ମତି,
ରାଧାକୃଷ୍ଣ ପାଦ ବିନୁ ଅନ୍ୟ ନାହିଁ ଗତି । ୫ ।

(୧) ଏହି ଗୀତଟି O. L./740 ପୋଥିରୁ ସଂଗୃହୀତ । ଭଜନର କେତୋଟି ପଦ 'କୁଞ୍ଜେ ଗୋ ବନ ବିନୋଦିଆ' ଶୀର୍ଷକ ଭଜନରେ ଥିବାର ଦେଖାଯାଏ । ଆଉ ମଧ୍ୟ 'କୁଞ୍ଜେ ଗମେ ବିନୋଦିଆ' ପଦ ସହିତ 'ଦେଖ ସଖୀ ଆସୁଛନ୍ତି ଆମ୍ଭ ପ୍ରାଣବନ୍ଧୁ' ପଦଟି ଅପ୍ରାସଙ୍ଗିକ ବୋଲି ମନେହୁଏ । ତେବେ ଲୋକମୁଖରେ ଏହି ଦୁଇଟିଯାକ ଭଜନରେ ଓଲଟପାଲଟ ଘଟିଛି କିମ୍ବା କବି ଗୋଟିଏ ଭଜନକୁ ଭିନ୍ନ ଭିନ୍ନ ସମୟରେ ଏପରି ଗାନ କରିଥିଲେ—ତାହା ଜାଣିବା ସମ୍ଭବ ନୁହେଁ ।

## ୩୪

କୁଞ୍ଜେ ଗୋ ବନବନୋଦିଆ,
ଆତଙ୍ଗନାଶନବାନା ବପତ୍ତି ଧ୍ୱଂସିଆ (୧) ॥
ଗୋରୁ ଗୋପାଳ ମେଳିଆ (୨) ଆସନ୍ତ ବନରୁ ।
ମୁରଲୀର ସୁଧାରସ ବରଷେ ଅଧରୁ ॥
ଲଲାଟେ ଚନ୍ଦନ ବିନ୍ଦୁ ଇନ୍ଦୁ କମ୍ପା ନିନ୍ଦୁ ।
ଦେଖ ସଖୀ ଆସୁଛନ୍ତି ମୋର ପ୍ରାଣବନ୍ଧୁ ॥
କଟିତଟେ ପୀତପଟ୍ଟ ଝଟଝଟ ସାଜେ ।
ଅଷ୍ଟରତ୍ନେ ଜଡ଼ିତ ସେ ନେପୁର ବିରାଜେ ॥
ବେଣୁ ବାଜେ ସିଂହା ବାଜେ ବାଜେ କରତାଳି ।
ମୟୂର (୩) ଚନ୍ଦ୍ରିକା ଚୂଳ ନାଚେ ଢଳଢଳି ॥
ଶୁକଳ ଶ୍ରୀବୃନ୍ଦାବନେ ତରୁ କୁଞ୍ଜ ଲତା ।
ପାଳଟି ଯମୁନା ବହେ ବହିଲ ବିଧାତା ॥
କହେ ସାଲବେଗ ହୀନ ମୁହିଁ ମୂଢ଼ମତି ।
ରାଧାକୃଷ୍ଣ ପାଦ ବିନୁ ଅନ୍ୟେ ନାହିଁ ଗତି ॥*

(୧) 'ଧାସିଆଁ' ମୂଳପାଠ, (୨) 'ମିଳି' ମୂଳପାଠ, (୩) 'ମଇର' ମୂଳପାଠ ।

* ପ୍ରସ୍ତୁତ ପାଠସମ୍ବଳିତ ଗୀତଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ହୋଇଛି । ଠିକ୍ ଏହି ଭାବଧାରାରେ ଲିଖିତ ଆହୁରି ଦୁଇଟି ଗୀତ ମିଳୁଥିଲେ ମଧ୍ୟ, ପ୍ରସ୍ତୁତ ଗୀତରେ କେତେ ପଦ ନୂତନ ରହିଛି । ତେଣୁ ଗୀତଟିକୁ ସ୍ୱତନ୍ତ୍ର ଗୀତରୂପେ ଦିଆଯାଇଛି ।

## ୩୫

କୁଞ୍ଜେ ଗୋ ବନବନୋଦିଆ ।
ଆତଙ୍ଗ ନାଶନ ବାନା ବପତ୍ତି ଧ୍ୱଂସିଆ ॥
ଆଗେ କରି ଧେନୁ ପ୍ରଭୁ ପଛେ ବାଯେ ବେଣୁ ।
ଗୋରଜ ଅଙ୍ଗେ ପଡ଼ଣ ଶୋଭି ଦଶେ ତନୁ ॥
ଆତଙ୍ଗ ନାଶନ ବାନା ଦୂବ କର ଦାରୁ ।
ମୁରଲୀର ସ୍ୱରେ ସୁଧା ବରଷେ ଅଧରୁ ॥

କଟୀତଟେ ପୀତପଟ ଝଟଝଟ ରାଜେ ।
ଅମ୍ବରତନେ ଜଡ଼ିତ ନୂପୁର ବିରାଜେ ॥
ଦେଖ ସଖି ବୃନ୍ଦାବନେ କୁଞ୍ଜ ତରୁଲତା ।
ଓଲଟି ଯମୁନା ବହେ ବହୁଛି ବିଧାତା ॥
କହେ ସାଲବେଗ ହୀନ ମୁଁ ତ ମୂଢ଼ମତି ।
ଶ୍ରୀକୃଷ୍ଣ ଚରଣ ବିନୁ ନାହିଁ ଅନ୍ୟ ଗତି ॥ *

---

* ପ୍ରସ୍ତୁତ ପଦ୍ୟଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ । କବିଙ୍କର 'କୁଞ୍ଜେ ଗମେ ବନୋଦିଆ' ଶୀର୍ଷକ ଭଜନର କେତୋଟି ପଦ—

"ଆତଙ୍କ ନାଶନ ନାନା ବିପତ୍ତି ଧ୍ୱଂସିଆ / ମୁରଲୀର ସୁଧାରସ ବରଷେ ଅଧରୁ / ଓଲଟି ବହେ ଯମୁନା ବହୁଛି ବିଧାତା ।" ଏହି ଭଜନରେ ମଧ୍ୟ ଦେଖାଯାଏ; କିନ୍ତୁ ପ୍ରସ୍ତୁତ ଭଜନର କଟୀତଟେ, ପୀତପଟ, ଝଟଝଟ ଯମକ ଅତ୍ୟନ୍ତ ହୃଦୟଗ୍ରାହୀ ।

## ୩୭

କେଣେ ଘେନିଯାଉଛ ଜଗନ୍ନାଥଙ୍କୁ,
ଆମ୍ଭେ ଦର୍ଶନ କରିବୁ କାହାକୁ (୧) ?
ଖୁଣ୍ଟିଆ ଡାକ ଦେଲେ ପହଣ୍ଡି ବିଜେ ହେଲେ
ବିଜୟକର ପ୍ରଭୁ ଗ୍ରୀପକୁ, ଆମ୍ଭେ ଦର୍ଶନ.........॥୧॥
କୁଳବଧୂଙ୍କ ରଡ଼ି ପଣ୍ଡାଏ ଗଡ଼ାଗଡ଼ି
ବିଧାତା ବାମ ହେଲା ଓଡ଼ିଶାକୁ, ଆମ୍ଭେ.........॥୨॥
ବଡ଼ଦେଉଳୁ ବାହାରି ଶଗଡ଼ରେ ବିଜେ କରି
ରେଣୁ ଯେ ପଡ଼ୁଥିବ ଶ୍ରୀମୁଖକୁ,
କହଇ ସାଲବେଗ ନିର୍ମାଲ୍ୟ କାହୁଁ ହେବ
ଟିକ ଟିକ ଆମ୍ଭ ଜୀବନକୁ, ଆମ୍ଭେ.. ......॥୩॥

---

(୧) ବାହାରର ଶତ୍ରୁଙ୍କ ଆକ୍ରମଣ, ବିଶେଷତଃ ବିଜାତିମାନଙ୍କ ଶ୍ରୀମନ୍ଦିର ଆକ୍ରମଣ ସମୟରେ ପଣ୍ଡାମାନେ ଅନନ୍ୟୋପାୟ ହୋଇ ଯୋଡ଼ ଡଙ୍ଗାରେ ମଙ୍ଗଳା ଘାଟ ମାର୍ଗରେ ଚିଲିକାର ମଧ୍ୟବର୍ତ୍ତୀ କୌଣସି ପାହାଡ଼ ବା ଅନ୍ୟ କୌଣସି ଗୁପ୍ତ ସ୍ଥାନକୁ ଶ୍ରୀଜଗନ୍ନାଥ ଆଦି ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ନେଇଯିବାର ଐତିହାସିକ ପ୍ରମାଣ ରହିଛି । ଏହିପରି ଗୋଟିଏ ପ୍ରବଳ ଯବନ ଆକ୍ରମଣ ସମୟରେ ପଣ୍ଡାମାନେ ଶ୍ରୀଜଗନ୍ନାଥଙ୍କୁ ଶଗଡ଼ରେ ବିଜେ କରାଇ ଅନ୍ୟତ୍ର

ନେଇଯିବାର ଉପକ୍ରମ କରୁଥିବା ସମୟରେ କବି ଭକ୍ତକବି ସେଠାରେ ଉପସ୍ଥିତ ରହି ସେହି ଦୁଃଖେଦ ମୁହୂର୍ତ୍ତିର କାରୁଣ୍ୟପୂର୍ଣ୍ଣ ଦୃଶ୍ୟ ଅବଲୋକନ କରିବା ପରେ ପଦ୍ୟଟି ଗାଇଛନ୍ତି । ସେତେବେଳେ ପୁରୀ ନଗରର ଉପକଣ୍ଠରେ ଶତ୍ରୁ ଆକ୍ରମଣ, ନାରୀଧର୍ଷଣ, ଶ୍ରୀମନ୍ଦିର ସମ୍ବନ୍ଧରେ କେତେକ ପଣ୍ଡାଙ୍କଠାରୁ ଗୁପ୍ତ ତଥ୍ୟ ଜାଣିବା ଲାଗି ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଶତ୍ରୁ ପକ୍ଷରୁ ଚାଲିଥିଲା, ଯାହାର ସୂଚନା ପଦ୍ୟରୁ ମିଳୁଛି ।

## ୩୭

କୋକିଳ, କାନ୍ତ ବିଦେଶେ ମୋର ରେ !
ଦହିଆ ଜରଜର ତନୁ ଅଧୀର, ରେ କୋକିଳ !

ଯେଉଁ ଦେଶେ କାନ୍ତ ରହିଲେ ଯାଇ,
ସେ ଦେଶେ ବରଷା ଋତୁ କି ନାହିଁ, ରେ କୋକିଳ !

ଯେଉଁ ଦେଶେ କାନ୍ତ ରହିଲେ ଯାଇ,
ସେ ଦେଶେ ଆଉ କି ରସିକ ନାହିଁ, ରେ କୋକିଳ !

ବଣଜନ୍ତୁ ତୁ ତ ବଣରେ ଥାଉ,
ରାଧ ନ ପାହୁଣ୍ଡୁ କି ରାବ ଦେଉ, ରେ କୋକିଳ !

ଏ ନବ ଯୌବନ ବସନ ଭାର,
କେତେ ମୁଁ ସହିବ ଅବଳାନାରୀ, ରେ କୋକିଳ !

ସତେ ସଦାଶିବ କରିବେ ପୂର୍ଣ୍ଣି,
ବିଦେଶୁ ଆସିବେ ମୋ ପ୍ରାଣମଣି, ରେ କୋକିଳ !

କହେ ସାଲବେଗ ଯବନ ଜାତି,
ନିକଟେ ଆସିବେ ମୋ ପ୍ରାଣପତି, ରେ କୋକିଳ !*

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟସ୍ଥ ପୋଥି O. L. /1740ରୁ ସଂଗୃହୀତ । ପ୍ରେମପାଗଳିନୀ ଶ୍ରୀରାଧା କୋକିଳ ଆଗରେ ନିଜ ମନୋବେଦନା ଜଣାଇ ଆଶାନ୍ୱିତ ହୃଦୟରେ ଶ୍ରୀକୃଷ୍ଣଙ୍କ ଆଗମନକୁ ଚାହିଁରହିଛନ୍ତି ।

୩୮

ଖାସା ଘୋଡ଼ା ନାଲ୍ ପାହାଡ଼ା
ଶିରମେଁ ପଗଡ଼ି ।
ସକଲ୍ ଛୁଡ଼ି ସାଲବେଗ
ଭୂମିରେ ଗଡ଼ାଗଡ଼ି ॥
ହରି ହରି ବୋଲରେ
ଗୋବିନ୍ଦ ଭଜ ଭାଇ ।
ଦୁର୍ଲଭ ମନୁଷ୍ୟ ଦେହ
ବ୍ୟର୍ଥକୁ ଯାଇ ॥
ଢାଲ୍ ବାନ୍ଧେ ତରୁଆର୍ ବାନ୍ଧେ
ଆବର ବାନ୍ଧେ ସୋଠା ।
ଯେମନ କୁଲେ ଜନ୍ମ ସାଚଲ୍
କାଢ଼ କଇଲ୍ ଖୋଟା ॥
ବାପ ତ ମୋଗଲ୍ ବେଟା
ମା'ଆ ତ ବ୍ରାହ୍ମଣୀ ।
ଏମନ୍ କୁଲେ ଜନ୍ମ ଯା ହଲ
ହିନ୍ଦୁ ନ ଛୁଏ ପାନି ॥
ପିତା ହଲ ଜନ୍ମ ମୋରେ
ମାତା ହଲ କ୍ଷୀର ।
କହେ ସାଲବେଗ ହୀନ
ଜନମ ଫକୀର ॥ *

*ପ୍ରସ୍ତୁତ ପଦ୍ୟଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି O.L./୪୨୩ରୁ ସଂଗୃହୀତ । ଏହି ପଦ୍ୟର କିୟଦଂଶ 'ଏକା ତୋ ଭକତ ଜୀବନ' ପଦ୍ୟରେ ରହିଛି ।

୩୯

ଗୋପୀମାନେ, ଫେରିଆସିବୁ ବୃନ୍ଦାବନେ !
ନଜାଣେ କି ଅଛି କରମେ ଗୋ !
କଂସ ଦେଇଛି ଲେଖ, ମୁଦ ଫେରିଣ ଦେଖ,
ଯିବୁ ସେ ମାମୁଁଙ୍କ ଦର୍ଶନେ ଗୋ !

ଆମ୍ଭେ ତ ନୋହୁ ପର, ଦଇବ କଲା ଅନ୍ତର,
ଦାରୁଣ ହୋଇଲା ଅଙ୍କୁର ଗୋ !
ହୃଦରେ କାଳୀ ବସା, ତହିଁକି କାହା ଭରସା ?
ପଦ୍ମ ତ ନେବୁ ଶତେ ଭାର ଗୋ !
ମାଳୀ ପିଣ୍ଡାରେ ହରି, ବସନ ଜୂର କରି,
କୁବୁଜା ଲେପଇ ଚନ୍ଦନେ ଗୋ !
ମାଲ ମାହୁନ୍ତ ମାରି, ଗଜ ଦନ୍ତ ଉପାଡ଼ି,
ହସ୍ତୀକି ହସ୍ତୀ ମରାମରି ଗୋ !
କହେ ସାଲବେଗ ହୀନ, ଯେହ୍ନ ମୋ ନିବେଦନ,
ମୁହିଁ ତ ଜାତିରେ ଯବନ ଗୋ !!*

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟର ପୋଥି O.L./1740ରୁ ସଂଗୃହୀତ ।

## ୪୦

ଚାଲ ସଖି ଆମ୍ଭେ ଦର୍ଶନ କରିବା
ନୀଳଗିରି କାଳିଆକୁ
କେଉଁ ସୁରପତି ବେଶ କରିଅଛୁ
ଗିରିବର ଡୋଳଆକୁ (୧) ।
ଯେ ଯେ ଶ୍ରୀମୁଖ ତୋରି,
ଶିରେ ସୁନାସୁତା କେରି କେରି ।।ଧ।।
ଶ୍ୱେତପଦ୍ମ ଆଖି ଦେଖିଲେ ଗୋ ସଖି,
ଚିତ୍ତ କି ବାହୁଡ଼େ ଆଉ
କର୍ଣ୍ଣରେ କୁଣ୍ଡଳ ଦିଶେ ଝଲଝଲ,
କଉସ୍ତୁଭ ଦାଉ ଦାଉ ।
ଯେ ଯେ ହୁଆ ବୃପାଳ,
ମିଶାମିଶି ବାରିନିଧି-ଫଳ (୨) ।।୨।।
ଶଙ୍ଖ ଚକ୍ର ଗଦା ପଦ୍ମ ମହାପ୍ରଭୁ
ଧରିଛନ୍ତି ଆଣ୍ଠି କରି,
ଦୁଃସହ ଦୁର୍ଗତି ଗ୍ରହପୀଡ଼ାମାନେ
ଆଉ କି ପଶିବେ ଡରି ।

ସେ ଯେ ଦୟାସାଗର,
ତାଙ୍କ ପଦ୍ମପାଦେ ଲକ୍ଷ୍ୟ କର ।।୩।।

ଶ୍ରୀପୁରୁଷୋତ୍ତମ ରହଣି କରିବା
ଖାଇବା ଛଡ଼ା ତୁଳସୀ
କହେ ସାଲବେଗ ସିଂହଦ୍ୱାରଠାରେ
ହୋଇଥିବା କ୍ଷେତ୍ରବାସୀ ।
ସେ ଯେ ଆରତତ୍ରାଣ, କାଳଗଜକୁ ସିଂହ ପ୍ରମାଣ ।
ଗୁଲ ଗୁଲ ପଶିବା ଶରଣ (୩) ।।୪।।

---

(୧) ଗିରିବରତୋଳଆ—ଗୋବର୍ଦ୍ଧନଧାରଣକାରୀ । ଇନ୍ଦ୍ର-ବିବାଦରୁ ଗୋପକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣ ଗୋବର୍ଦ୍ଧନଗିରି ଧାରଣ କରିଥିଲେ ।

(୨) ବାରିନିଧି-ଫଳ—ମୁକ୍ତା ନାମକ ମୂଲ୍ୟବାନ୍ ରତ୍ନ ।

(୩) ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./536ରୁ ସଂଗୃହୀତ ।

## ୪୧

ଜଗନ୍ନାଥ ହେ, କିଛି ମାଗୁନାହିଁ ମୁଁ ତୋତେ ।

ମାଗୁନାହିଁ ଧନ ମାଗୁନାହିଁ ଜନ (୧)
ମାଗୁଛି ଶରଧା ବାଲିରୁ ହାତେ ।।

ଆନ ଦରଶନ ନ ଲୋଡ଼େ ନୟନ
ଏକା ତୁମ୍ଭ ଦେଖା ବିନା ।
ଶୁଣିବାକୁ କାନ ନ ଇଚ୍ଛଇ ଆନ
ତୁମ୍ଭ ଚରିତେ କାମନା ।।

ଜିହ୍ୱା ନ ବାଞ୍ଛଇ ଗ୍ରାମ୍ୟ ଗୀତ ଗାଇ-
ବାକୁ ରଜନୀ ଦିବସ ।
ତୁମ୍ଭ ନାମାବଳୀ କେବଳ ସମ୍ବଳ
ହୋଇଥାଉ ପୀତବାସ ।।

ନାସା ମୋର ତୃପ୍ତି ନ ଲଭଇ ଆନ
ସୁବାସ ଦ୍ରବ୍ୟ ଆଘ୍ରାଣେ ।
ତବ ଚୂଡ଼ାମାଳ ତୁଳସୀ କୁସୁମ
ଚନ୍ଦନ କର୍ପୂର ଘ୍ରାଣେ ॥

ମୋ ହସ୍ତ ଅଙ୍ଗୁଳି ରାମ ବନମାଳୀ
ଜପୁଥାଉ ହରେକୃଷ୍ଣ (୨) ।
କହେ ସାଲବେଗ କାତରେ ଯବନ
ତୋ ପାର୍ଥେ ଯାଉ ଏ ପ୍ରାଣ (୩) ॥

---

(୧) ଧନ ମାଗୁନାହିଁ ଜନ ମାଗୁନାହିଁ—ବନମାଳୀ ପଦ୍ୟାବଳୀ ପାଠ ।
(୨) ହରେକୃଷ୍ଣ ଜପୁଥାଉ—ବନମାଳୀ ପଦ୍ୟାବଳୀ ପାଠ ।
(୩) ଏଠାରେ ବନମାଳୀଙ୍କ ନାମରେ ଭଣିତା ହୋଇଥିବାରୁ ବନମାଳୀ ପଦ୍ୟାବଳୀର ପାଠଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ । ଏହି ଭଣିତାଟି କେବଳ ଲୋକ-ମୁଖରେ ପ୍ରଖ୍ୟାତ । ଏ ସମ୍ବନ୍ଧରେ ଆଲୋଚନା ଦ୍ରଷ୍ଟବ୍ୟ ।

## ୧୭

ଜଗବନ୍ଧୁ ହେ ଗୋସାଇଁ !
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ॥

ଦ୍ୱାଦଶ ପଞ୍ଚାଶ କୋଶ ଦଗ ଦିଶୁନାହିଁ (୧) ।
ମୋହ ଝିବା ସାଏ ନନ୍ଦଘୋଷେ ଥିବ ରହି ॥୧॥

ରଥ ଗୁଣପାଶେ ଲମ୍ବେ ମୁକୁତାର ଝରା ।
ଝଲଝଲ ଦିଶୁଥାଇ ପ୍ରଭୁ ଚକାଡୋଳା ॥୨॥

ବାଇଶି ପାବଛ ତଳେ ବକାହୁଏ ଭକ୍ତ ।
ଦର୍ଶନ ଭେଟିକି ଥାଉ କୈବଲ୍ୟ ମୁକତ ॥୩॥

ଆଗେ ଚଳେ ବଳଭଦ୍ର ମଧ୍ୟେ ସୁନ୍ଦରମୁହିଁରେ
ଆସୁଛନ୍ତି କାଳିଆ ପଛେ ଗହଣ ଲଗାଇରେ ॥୪॥

କହେ ସାଲବେଗ ହୀନ ଜାତିରେ ଯବନ ।
ଏହି ମତେ ଅଜ୍ଞ ହେବ ଶିର ବୃନ୍ଦାବନ ହେ (୨) ॥୫॥

(୧) 'ଦଗ ଦିଶୁନାହିଁ' ବଦଳରେ 'ଗ୍ଳଲି ନ ପାରଇ' ବୋଲି କେତେକ ପାଠରେ ରହିଛି । ଉଭୟ ପାଠ ଅଯୌକ୍ତିକ ବୋଲି ମନେହୁଏ ନାହିଁ ।

(୨) ଭକ୍ତକବି ସାଲବେଗ ଅତ୍ୟନ୍ତ କୃଷ୍ଣଭକ୍ତ ଥିବାରୁ ପ୍ରଭୁଙ୍କ ଲୀଳାସ୍ଥଳୀ ବୃନ୍ଦାବନଧାମ ପରିଦର୍ଶନରେ ସେ ପଦଯାତ୍ରା କରିଥିଲେ । ତାଙ୍କର ଧାରଣା ଥିଲା ଯେ, ସେ ଗୁଣ୍ଡିଚାଯାତ୍ରା ବେଳକୁ ଶ୍ରୀକ୍ଷେତ୍ରକୁ ଫେରିଆସିବେ; କିନ୍ତୁ ପଦଯାତ୍ରା କରି ବୃନ୍ଦାବନରୁ ଶ୍ରୀକ୍ଷେତ୍ରକୁ ଆସିବା ମାର୍ଗରେ ଅନେକ ବିଳମ୍ବ ହୋଇଯାଇଥିଲା । ତେଣୁ ସେ ରଥଯାତ୍ରା ବେଳକୁ ପୁରୀରେ ଉପସ୍ଥିତ ହୋଇପାରିଲେନାହିଁ ।

କଥିତ ଅଛି, ମାର୍ଗ ମଧ୍ୟରେ ରହି ଭକ୍ତ ସାଲବେଗ କାତର କଣ୍ଠରେ ପ୍ରସ୍ତୁତ ପଦ୍ୟଟି ଗାନକରିଥିଲେ । ତେଣୁ ବଲଗଣ୍ଡି ଠାରେ ଶ୍ରୀଜଗନ୍ନାଥଙ୍କ ରଥ ଦୀର୍ଘଦିନ ଧରି ଅଟକି ରହିଥିଲା ଏବଂ ଭକ୍ତ ସାଲବେଗ ପୁରୀରେ ପହଞ୍ଚିବା ପରେ ରଥ ଚଳିଥିଲା । ପ୍ରସ୍ତୁତ ପଦ୍ୟଟି ଓ: ସ୍ଵ: ସଂ: ପୋଥି Cy/356ରୁ ସଂଗୃହୀତ ।

## ୪୩

ଜୟ ଜୟ ଦେବୀ ମଙ୍ଗଳା । *
ରୂପ ଲାବଣ୍ୟ ଅତି ଚତୁର୍ଭୁଜ ମୂରତି;
ସେ ତ ଅଙ୍ଗ ବରନ କାଲା ।
ପଙ୍କଜ ଚରନ ପଙ୍କଜ ଆସନ,
ଯେକ କରେ ଚନ୍ଦ୍ର ଛଡ଼ ଦଶ କଳା ॥
ଯେକ କରେ କମଲ ଯେକ କରେ ମୃନାଲ,
ଯେକ କରେ ଜାତ ଜପାମାଳା ।
କହେ ସାଲବେଗ ହୀନ ଯେହି ମୋର ନିବେଦନ
ବେଗେ ଭେଟାଅ ରସିକ ନନ୍ଦବାଲା ॥

* ପ୍ରସ୍ତୁତ ଦେବୀଭଜନଟି ଶ୍ରୀନିବାସ ରଥଙ୍କ ସଂଗ୍ରହରୁ ଗୃହୀତ । ଏହି ମଙ୍ଗଳାଙ୍କ ଭଜନଟି ସାଲବେଗଙ୍କର ଏକ ସ୍ଵତନ୍ତ୍ର ପରିକଳ୍ପନା । ସେ ବାଲ୍ୟକାଳରୁ ଭିନ୍ନ ସଂସ୍କୃତିରେ ପ୍ରତିପାଳିତ ହୋଇଥିଲେ । ଯୌବନରେ 'ବାଳମୁକୁନ୍ଦ'ଙ୍କ ଅନୁଗ୍ରହରୁ ରୋଗମୁକ୍ତ ହେବା ପରେ ସେ ଶ୍ରୀକୃଷ୍ଣଙ୍କୁ ନିଜର ଇଷ୍ଟଦେବ ବୋଲି ମନେକରି ତାଙ୍କର ଲୀଳାବର୍ଣ୍ଣନାରେ ଅନେକ ଭଜନ ରଚନା କଲେ । ତତ୍ପରେ ସେ ଶ୍ରୀକ୍ଷେତ୍ର ଧାମରେ ରହି ଶ୍ରୀଜଗନ୍ନାଥ ଓ

ଶ୍ରୀକୃଷ୍ଣଙ୍କର ଅଭେଦ କଳ୍ପନା କରି ଅନେକ ଭଜନ ପ୍ରଣୟନ କଲେ । କିନ୍ତୁ ଦେବୀ ମଙ୍ଗଳାଙ୍କ ଭଜନରେ ମଧ୍ୟ ତାଙ୍କର ହେନ୍ଥ ବ୍ୟାକୁଳତା ପରିଲକ୍ଷିତ ହୁଏ । ସେ ନିଜର ଗତମୁକ୍ତ କାମ୍ୟ ଜୀବନକୁ ପବିତ୍ର କରିବା କାମନାରେ ମଙ୍ଗଳାଙ୍କୁ ଭଜନ କରିନାହାନ୍ତି । ତାଙ୍କର ଇଷ୍ଟଦେବ ଶ୍ରୀ ନନ୍ଦବଳାଙ୍କୁ ଶୀଘ୍ର ପାଇବା ପାଇଁ ସେ ମଙ୍ଗଳଦାୟିନୀ ମଙ୍ଗଳାଙ୍କୁ ସ୍ତୁତି କରିଛନ୍ତି । ତାଙ୍କର ଆରାଧ୍ୟା ଦେବୀ ମଙ୍ଗଳା ଚତୁର୍ଭୁଜା ଏବଂ ସେ ଚନ୍ଦ୍ରକଳା, କମଳା, ମୃଣାଳ ଓ ଜପମାଳାଧାରିଣୀ । ଖୁବ୍ ସମ୍ଭବତଃ କାକଟପୁରର ମଙ୍ଗଳାଙ୍କ ନିକଟକୁ ଯାଇ ସେ ଏହି ଭଜନଟି ରଚନା କରିଥିଲେ । ମୂଳପାଠରେ 'ଣ' ସ୍ଥାନରେ 'ନ' ଓ 'ଳ' ପରିବର୍ତ୍ତେ 'ଲ' ଥିବାର ଦେଖାଯାଏ ।

## ୪୪

ଜୟ ଜୟ ରାଧେ ଗୋପାଲ ଗୋପାଙ୍ଗନାରେ !
ଶିର୍ ମୋର ମୁକୁଟ ନଟ
ଶୋହେ କୋଟି ପୀତପଟ ।
କିଙ୍କିଣୀ ଅଧିକ ଶୋହନାରେ ।୧।
ଭାଲେ କେଶର ତିଲକ,
କାନେ କୁଣ୍ଡଲ ଝଲକ,
ଅଧରପର ମୁରଲୀ ସୁଖ ପାଓନାରେ ।୨।
ଯମୁନାତଟ ରଙ୍ଗିନୀ,
ସକଲ ରମଣୀମଣି,
ରୂପ ନବ ଦାମିନୀଗଞ୍ଜନାରେ ।୩।
(୧) ଝନନ ଝନନ ରବବର,
ଉଘଟ ଭେଦ ମନ୍ତ୍ରବର,
ସାତସ୍ୱର ତାଲ ବସ ମୂର୍ଚ୍ଛନାରେ ।୪।
ଥିଗିନ ଗିନ ଧିଗ୍‌ଧିକଟ, (୨)
ତଗ୍ ତଗ୍‌ଧେନାଂ ଉନ୍ମତଗଟ,
ସାଲବେଗ ପୂରଲ ମନକାମନାରେ (୩) ।୫।

---

(୧) 'ଘନ୍ନନନନଘ ରବବର' ପାଠଭେଦ; କିନ୍ତୁ ଏପରି ପାଠରେ କୌଣସି ପ୍ରକାର ଅର୍ଥ ପ୍ରତୀତ ହେଉନାହିଁ ।

(୨) 'ଧିଦ୍‌ଧିକଟ' ପାଠଭେଦ; କିନ୍ତୁ ଧିଗ୍‌ଧିକଟ୍ ସଙ୍ଗତ ପାଠ ହେବ ।

(୩) ପ୍ରସ୍ତୁତ ଗୀତଟି ବଙ୍ଗୀୟ ସାହିତ୍ୟ ପରିଷଦଦ୍ୱାରା ପ୍ରକାଶିତ ଓ ସତୀଶଚନ୍ଦ୍ର ରାୟଙ୍କଦ୍ୱାରା ସମ୍ପାଦିତ 'ପଦକଳ୍ପତରୁ' ପୁସ୍ତକର ଚତୁର୍ଥ ଖଣ୍ଡରୁ ସଂଗୃହୀତ ହୋଇଛି ।

## ୪୫

ଜାଣୁ ଜାଣୁ ଶୁଣୁ ଶୁଣୁ ନ ଜାଣୁରେ ଅଜଣା,
ଆପେ ମଲେ ଯୁଗ ବୁଡ଼େ ପର ପାଇଁ କାନ୍ଦଣା ।୧।
ଝିଅ ବୋଲ ବନ୍ଧୁ ବୋଲ ସମ୍ପତ୍ତିରେ ସାଥିରେ,
ନିଦାନ କାଳକୁ ଏକା ଗୋବିନ୍ଦ ସାରଥିରେ ।୨।
ମାଟିଘଟ ପଞ୍ଜୁରିକି ସୁବର୍ଣ୍ଣର ଶୁଆରେ,
ଅଠାକାଠି ଲଗାଇଛୁ ଭବବିନୋଦିଆରେ ।୩।
ଘାଇଯାକ ତ ମୁକୁଳା ବଢ଼ ଜମ୍ପା ବାନ୍ଧୁରେ,
ଆପେ ମରିଯିବୁ ପୁଭାଠାରେ କମ୍ପା ବାନ୍ଧୁରେ ।୪।
ଆପଣାର ଭୂମି ବାଡ଼ି ନହର ପଡ଼ିଆରେ,
ଆପନେ ଚଳିତ ଯିବୁ ଦେହେ ତ ଲଡ଼ିଆରେ ।୫।
ଧନ ଗଲା ଦୁଃଖ-ସୁଖେ ରାତ୍ର ଗଲା ନିଦରେ,
ଭଜି ତ ନ ପାରେ କୃଷ୍ଣ ଚରଣାରବିନ୍ଦରେ ।୬।
କହେ ସାଲବେଗ ହୀନ ମେଘ ଘଡ଼ଘଡ଼ିରେ,
ଜୀବ ଯିବାବେଳେ ପିଣ୍ଡ ଦେଉଥାଇ ରଡ଼ିରେ ।୭। *

* ପ୍ରସ୍ତୁତ ପଦ୍ୟର କେତୋଟି ପଦ ସହିତ ସାଲବେଗଙ୍କ ନାମରେ ଭଣିତ ଅନ୍ୟ ଗୋଟିଏ ଭଜନର ପଦସାମ୍ୟ ରହିଛି । ଏହି ବ୍ରହ୍ମଜ୍ଞାନମୂଳକ ଭଜନରେ କବି ଆତ୍ମାର ସଦ୍‌ଗତି ନିମିତ୍ତ 'ଗୋବିନ୍ଦ'ଙ୍କ ନାମ ଭଜନ ଲାଗି ଭକ୍ତବୃନ୍ଦଙ୍କୁ ଅନୁରୋଧ କରୁଛନ୍ତି ।

## ୪୬

ଜୀବନରେ ଥିବ ଯେବେ ଯିବି ବୃନ୍ଦାବନ, (୧)
ଦର୍ଶନ କରିବି ଯାଇ ଶ୍ରୀମଧୁସୂଦନ ।।
ରାଧାକୁଣ୍ଡେ ଶ୍ୟାମକୁଣ୍ଡେ କରିବି ସ୍ନାହାନ, (୨)
ପରିକ୍ରମା କରୁଥିବି ଗିରି-ଗୋବର୍ଦ୍ଧନ ।।
ଆନନ୍ଦେ ଯମୁନା ଜଳ କରିବି ମୁଁ ପାନ,
ମୁଁ ନାକ ଭଜିବି ଯହୁଁ ମୁକତି ଭାଜନ ।।
ରାହାସର ଧୂଳି ଅଙ୍ଗେ କରିବି ଲେପନ, (୩)
କୁଞ୍ଜେ କୁଞ୍ଜେ ତରୁମୂଳେ କରିବି ଶୟନ ।।

ରାଧାକୃଷ୍ଣ ବେନି ଭିନ୍ନ ନୋହେ କୁଞ୍ଜବନ,
କହେ ସାଲବେଗ ଧ୍ୟାନ ଜାଡରେ ସବନ (୪) ॥

---

(୨) 'ଜୀବନ ନ ଥିବ ଯେବେ' (ପୋଥିପାଠ) ପଦଟି ଆଦୌ ଯୁକ୍ତିଯୁକ୍ତ ବୋଲି ମନେହେଉନାହିଁ । କାରଣ ଜୀବନକାଳମଧ୍ୟରେ ବୃନ୍ଦାବନ ଯିବାପାଇଁ ଭକ୍ତକବି ସାଲବେଗଙ୍କର ଆନ୍ତରିକ ଇଚ୍ଛା ହେବା ସ୍ୱାଭାବିକ । କମ୍ବଦନ୍ତୀ ଅନୁସାରେ ଭକ୍ତକବି ସାଲବେଗ ଥରେ କଠିନ ରୋଗାକ୍ରାନ୍ତ ହୋଇ ଶ୍ରୀକୃଷ୍ଣଙ୍କ ଅଲୌକିକସାମାନ୍ୟ ମୂର୍ତ୍ତି ଦେଖି ରୋଗମୁକ୍ତ ହୋଇଥିଲେ । ତେଣୁ ବୃନ୍ଦାବନ ଯାଇ ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡରେ ସ୍ନାନ କରିବା ତଥା ଯମୁନାଜଳ ପାନ କରିବା ଅଥବା ରାସସ୍ଥଳୀର ଧୂଳିରେ ଗଡ଼ି ନିଜ କଳେବରକୁ ପବିତ୍ର କରିବା ଭକ୍ତକବିଙ୍କର ଆନ୍ତରିକ କାମନା ହୋଇଥିବ । ତେଣୁ କବି ସମ୍ପୂର୍ଣ୍ଣ ଆରୋଗ୍ୟ ହେବା ପୂର୍ବରୁ ଏ ପ୍ରକାର କାମନା କରିଥିବେ । ତେଣୁ ଏଠାରେ "ଜୀବନରେ ଥିବି ଯେବେ ଯିବି ବୃନ୍ଦାବନ" ପାଠ ଯୁକ୍ତିସଙ୍ଗତ ବୋଲି ମନେହୁଏ । (୨) କେତେକ ପାଠରେ 'ସ୍ନାହାନ' ଥିବାର ଦେଖାଯାଏ । (୩)'କରି ବିଲେପନ' କେତୋଟି ପାଠରେ ଦେଖାଯାଏ; ମାତ୍ର ସମୁଦାୟ ଗୀତଟିରେ କବି ଗୋଟିଏ ହେଲେ କଠିନ ଶବ୍ଦ ବ୍ୟବହାର କରିନାହାନ୍ତି ଏବଂ ପର ପାଦରେ ମଧ୍ୟ 'ଶୟନ'ର ପ୍ରୟୋଗ କରିଛନ୍ତି । ତେଣୁ ଏଠାରେ 'କରି ବିଲେପନ' ସ୍ଥାନରେ, 'କରିବି ଲେପନ' ଅଧିକ ସଙ୍ଗତ । (୪) ଏହି ପଦ୍ୟଟିର ପାଠାନ୍ତର ଦେଖାଯାଏ : ୧ । ଦର୍ଶନ କରିବି ଯାଇ ମଦନମୋହନ / ୨। କର ଅଞ୍ଜୁଳିରେ କରି ଯମୁନା ସ୍ନାହାନ / ୩ । ମୁନିଙ୍କ ଦୁର୍ଲଭ ଯେହୁ ମୁଁ ନିଜ ଶ୍ରାର୍ଜନ / ୪ । ତେବେ ସେ ସଫଳ ହେବ ମୋହର ଜୀବନ / ୫ । ଦିଷ୍ଟରେ ସୁଫଳ ହେବ ମୋହର ନୟନ ।

## ୪୭

ତରୁ ତଳେ କେ ବଂଶୀ ବଜାଇଲା,
କି ଆଗୋ ମିତ !
ବାଂଶୁରୀ ବଜାଇ ମୋ ଚିତ୍ତ ମୋହିଲା ଲୋ !
ସେ ବଂଶୀଧ୍ୱନି ଶୁଣି,
ପାଷାଣ ହୋଏ ପାଣି,
ଶୁଷ୍କ ତରୁ ପଲ୍ଲବିତ ହୋଇଲା ଲୋ !
ସେ ବଂଶୀ ଶୁଣି କର୍ଣ୍ଣେ,
ନିଦ୍ରା ନାହିଁ ମୋ ନୟନେ,
ସେ ବଂଶୀ ରାଧା ରାଧା ବାଇଲା ଲୋ !

ସେ ବଂଶୀଧ୍ୱନି ଶୁଣି,
ଯମୁନା ବହେ ଉଜାଣି,
ଜଳ ଡେଇଁ ମୀନ କୂଳେ ରହିଲି ଲୋ !
କହେ ସାଲବେଗ ହୀନ,
ଜାତିରେ ଅଟେ ଯବନ,
ରାଧାକୃଷ୍ଣଙ୍କର ଭେଟ ନୋହିଲା ଲୋ !*

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1740ରୁ ସଂଗୃହୀତ ହୋଇଛି । ସାଲବେଗଙ୍କ ରଚନାରେ ବଂଶୀ ଗୀତ ପ୍ରକରଣଟି ଅତ୍ୟନ୍ତ ରସାଣିତ ହୋଇପାରିଛି । କବି ଶ୍ରୀକୃଷ୍ଣଙ୍କର ବଂଶୀଧ୍ୱନିରେ ଏପରି ଗଦ୍‌ଗଦ୍ ହୋଇଉଠିଛନ୍ତି ଯେ, ସେ ନିଜକୁ ରାଧାଭାବରେ ପ୍ରଭୁଙ୍କ ପାଦପଦ୍ମରେ ଅର୍ପଣ କରିଦେଇଛନ୍ତି । ତେଣୁ ଗୋଟିଏ ପ୍ରକାର ଭାବଧାରାକୁ ଭିନ୍ନ ଭିନ୍ନ ଢାଞ୍ଚରେ ପ୍ରକାଶ କରି ସାଲବେଗ ଭକ୍ତିର ମଞ୍ଜୁଲତା ପ୍ରଦର୍ଶନ କରିଛନ୍ତି ।

## ୪୮

ତୁମ୍ଭ ପତିତପାବନ ନାମ ଭେଲା ହୋ ଚକାଡୋଳା !*
ତୁମ୍ଭେ ଆଉଁ ଆଉଁ ମୋ ବୁଡ଼ିଲି ଭେଲା ହୋ ଚକାଡୋଳା !

ଯା'ର ଗୃହବର୍ଣ୍ଣ କ୍ଷୀରି ପିଠା ଅନ୍ନ,
ଏକର ହସ୍ତରୁ ଆରକ ନେଲି ହୋ ।

ଦିନେ ମୋ ମନ ସପନ ଗଲି,
ଗରୁଡ଼ ପଛରେ ରହିଥିଲି ହୋ···॥

କହେ ସାଲବେଗ ମୋ ମନ ମୋହିଲେ,
ଲୁଚିଯାଉ ପାଦପଦ୍ମକୁ (୧) ।

ମନ ତୁ ରହୁଁ କି ନାରେ,
ବଳିୟାର ଭୁଜ ବଳଦେବଙ୍କୁ ॥

ଗରୁଡ଼ ପଛରେ ରହି ଦେଖୁଥିବୁ,
ହରି ବଳରାମ ସୋହଦରାଙ୍କୁ (୨) ।

ତାଳୁରେ ତାଙ୍କର ନିମୁଣ୍ଡି ଚୁଲ,,
ଭଲ ଶୋହିଅଛୁ ବିମ୍ବାଧରୁକୁ (୩) ॥

* ପ୍ରସ୍ତୁତ ପଦ୍ୟଟି ଡଃ କୃଷ୍ଣଚରଣ ସାହୁଙ୍କ ପୁସ୍ତକ 'ଶ୍ରୀଜଗନ୍ନାଥଲୀଳାମୃତ'ରୁ ସଂଗୃହୀତ ।

(୧) 'ପାଦପଦ୍ମ' ମୂଳପାଠ; କିନ୍ତୁ 'ପାଦପଦ୍ମ'କୁ ହେଲେ ଯଥପାତ ହେଉଛି ।

(୨) ସୋହଦରା=ସୁଭଦ୍ରା ।

(୩) 'ବିମ୍ବାଧରୁ' ମୂଳପାଠ; କିନ୍ତୁ ବିମ୍ବାଧରକୁ ପାଠକଲେ ଅର୍ଥସଙ୍ଗତ ଏବଂ ଯଥପାତ ହେବ ।

## ୪୯

ଦୀନବନ୍ଧୁ ହେ ଗୋସାଇଁ !
ତୁମ ପାଦପଦ୍ମ ବିନୁ ଅନ୍ୟ ଗତି ନାହିଁ ।*
ଗଜରାଜ ପାଣି (୧) ଖାଉ ଧରିଲା କୁମ୍ଭୀର,
ଆତଙ୍କେ ଡାକିଲା ଗଜ ରଖ ଚକ୍ରଧର ॥
କୁରୁପତି ସଭାତଳେ ଦିନେ ଚାହିଁଲେ ଦ୍ରୌପଦୀ,
ମାନ ଉଦ୍ଧାରଣ ପ୍ରଭୁ ଅଟ ଦାଶରଥି (୨) ॥
ମୃଗୁଣୀ ଯେ ସ୍ତୁତି କଲା ଆତଙ୍ଗ କାଳରେ,
ଆତଙ୍କନାଶନ ପ୍ରଭୁ ରଖିଲ ସେଠାରେ ॥
ହିରଣ୍ୟ ଯେ ଗର୍ବ କଲା ନଖେ ବିଦାରିଲ,
ପ୍ରହଲାଦ ଭକ୍ତ ଯେବେ ସ୍ୱର୍ଗେ ଇନ୍ଦ୍ର କଲ ॥
କହେ ସାଲବେଗ ହୀନ ମୂଢ଼ ମୁଁ ଅଜାତି, (୩)
ରାଧାକୃଷ୍ଣ ପାଦ ବିନୁ ନାହିଁ ଅନ୍ୟ ଗତି ॥

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./453/Cy/30ରୁ ସଂଗୃହୀତ ।

(୧) ପାଣି ପିଇବା ଶୁଦ୍ଧ ପ୍ରୟୋଗ; କିନ୍ତୁ ଓଡ଼ିଶାର କେତେକ ଅଞ୍ଚଳରେ ଜଳ ଖାଇବା, ପାଣି ଖାଇବା ପ୍ରୟୋଗ ରହିଛି । ବିପନ୍ନ କୁମ୍ଭୀରକୁ ସାହାଯ୍ୟ କରି ତାକୁ ଗଭୀର ଜଳରେ ଟାଣିଆସିବା ସମୟରେ ସେ ଗଜରାଜ ଉପରେ ଆକ୍ରମଣ କରନ୍ତେ, ପ୍ରଭୁ ଚକ୍ରଦ୍ୱାରା କୁମ୍ଭୀରକୁ ନାଶ କରିଥିଲେ; କିନ୍ତୁ ଏଠାରେ ଜଳପାନକାଙ୍କ୍ଷୀ ଗଜରାଜକୁ କୁମ୍ଭୀର ଆକ୍ରମଣ କରିଥିଲା ବୋଲି ଉଲ୍ଲେଖ ରହିଛି । (୨) 'ଦାଶରଥି' ପଦ ସାର୍ଥକ ପ୍ରୟୋଗ; କାରଣ ଦଶରଥଙ୍କ ପୁତ୍ର ଭାବରେ ରାମଚନ୍ଦ୍ର ଅହଲ୍ୟା, ସୀତା, ତାରା ପ୍ରଭୃତି ନାରୀମାନଙ୍କ ମାନ

ଉଦ୍ଧାର କରିଥିଲେ । ତେଣୁ ଦ୍ରୌପଦୀଙ୍କ ମାନ-ଉଦ୍ଧାରକାରୀ ରୂପେ ଦାଶରଥି ଶବ୍ଦ ବାସ୍ତବିକ ଅର୍ଥପୂର୍ଣ୍ଣ । (୩) ଗୋଟିଏ ପାଠରେ 'ମୂଢ ମୋର ଜାତି' ବୋଲି ରହିଛି; କିନ୍ତୁ ସାଲବେଗ ଲାଲବେଗ୍ ନାମକ ଯବନ ସେନାପତିଙ୍କ ପୁତ୍ର ଥିବାର ପ୍ରମାଣ ରହିଛି ଏବଂ କବି ମଧ୍ୟ ତାଙ୍କର ଅଧିକାଂଶ ଗୀତରେ 'ଜାତିରେ ଯବନ', 'ବାପ ମୋ ମୋଗଲ' ଇତ୍ୟାଦି ଲେଖିଛନ୍ତି । ତେଣୁ ଏଠାରେ 'ମୂଢ଼ ମୁଁ ଅଜାତି' ହେବା ଯୁକ୍ତିଯୁକ୍ତ ।

## ୫୦

ଦୀନବନ୍ଧୁ ହେ, ଭକତ ଦୁଃଖରେ ଦୁଃଖୀ ।
ରୁଧିର ନଦୀ ସାତତାଳ ଭିତରୁ,
ଭରଦ୍ୱଆ ପକ୍ଷୀ ରଖି ॥

ସମୁଦ୍ରତଟରେ ପକ୍ଷୀ ବସାକଲା,
ଡିମ୍ବ ନେଲା ରତ୍ନାକର,
ସାତଦିନ ଡିମ୍ବ ଜଳରେ ବୁଡ଼ିଲା
ଉଦ୍ଧରିଲ ଚକ୍ରଧର ॥

ଶରରେ ସାଗର ବାନ୍ଧେ ଧନଞ୍ଜୟ,
ମୀନରୂପେ ଜଳେ ରହି,
ଗିରି ସେନ ହନୁ ଝମ୍ପକ ଗ୍ଳାନ୍ତେ,
ଅଧରୁ ରୁଧିର ବହି ॥

ଅଧାରେକ ସେନ ଗରୁଡ଼ ଉଠିଲା,
ଭାର ନ ସହିଲା ମହୀ,
ଯୋଜନ ଯାଏ ଭୁଜ ବିସ୍ତାରିଲ,
ପକ୍ଷୀ ବିଶ୍ରମିଲା ତହିଁ ॥

ହସ୍ତିନାକୁ ତୁମେ ଦୂତପଣେ ଗଲ
ପଡ଼ା ମାଗିବା ନିମନ୍ତେ,
ବେଢ଼ି କଉରବେ ଯେତେ ଶାସ୍ତି ଦେଲେ
ସହିଲ ଭକତ ହିତେ ॥

ନନ୍ଦ-ନନ୍ଦନ ବଂଶୀ-ବଦନ
ଦୁଃଖୀ ଲୋକଙ୍କର ସାଇଁ,

କହେ ସାଲବେଗ ଜାତିରେ ଯବନ,
ପ୍ରଭୁପଣ ଲୁଚଯାଇ ॥
ଦୀନବନ୍ଧୁ ହେ !*

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1789ରୁ ସଂଗୃହୀତ ।

## ୫୧

ଦୀନବନ୍ଧୁ ହୋ, ତୁମ୍ଭେ ଡାକିଲେ ନ ଶୁଣ କାହିଁକି !
କୃପାସିନ୍ଧୁ ହୋ, ତୁମ୍ଭେ ଡାକିଲେ ନ ଶୁଣ କାହିଁକି !!
ଆହେ, ଦ୍ରୌପଦୀ ଆତଙ୍କ ବିବସନ କାଳେ
ବସ୍ତ୍ର ଦେଲ ପଠିଆଇ କି ।
ଲକ୍ଷେ ଯୋଜନରେ ଗଜ ଡାକ ଦେଲା
କର୍ଣ୍ଣେ ଡେରିଥିଲ ତହିଁକି ॥ ୧ ॥
ଆହେ, ଅନୁଡ଼ଶାଳରେ କ୍ଷୀର ଦେବାବେଳେ
ମାରିପକାଇଲ ଧାଇଁକି ।
ଗର୍ଭର ଭିତରେ ଚଉଦ ବ୍ରହ୍ମାଣ୍ଡ
ଦେଖାଇଲ ନିଜ ଆଈକି ॥ ୨ ॥
ଆହେ, କାଳିନ୍ଦୀରେ ପଶି ପୁଷ୍ପ ତୋଳୁ ତୋଳୁ
ମର୍ଦ୍ଦିଲ କାଳୀୟ ଅହିକି ।
ଗୋପପୁରେ ପଶି ଘାଟ ସାଧୁଥିଲ
ଗୋପ ଗଉଡ଼ୁଣୀ ଦହିକି ॥ ୩ ॥
ଆହେ, ମଧୁପୁରେ ପଶି ଗଜ ମାଲ ନାଶି
ମାଇଲ ମାତାର ଭାଇକି ।
କହେ ସାଲବେଗ ଜାତିରେ ଯବନ
ତକାନସ୍ଥନକୁ ଧାଇଁକି ॥ ୪ ॥
ଦୀନବନ୍ଧୁ ହୋ……*

* କବି ସାଲବେଗ ଏଠାରେ ପ୍ରଭୁଙ୍କର ମହିମା ଯେଉଁ ଯେଉଁ ଘଟଣାରେ ବିଶେଷ ଭାବରେ ପ୍ରଖ୍ୟାତ ହୋଇଛି, ସେହି ଘଟଣାବଳୀର ଉଲ୍ଲେଖ କରିଛନ୍ତି । କବି ସାଲବେଗ କେବଳ ରାମାବତାରର ବୈଶିଷ୍ଟ୍ୟ ବ୍ୟତୀତ ଅନ୍ୟ ତିନି ଯୁଗର ବିଶେଷ ଘଟଣାଗୁଡ଼ିକ ଏଠାରେ ଉଲ୍ଲେଖ କରିଛନ୍ତି ।

## ୫୨

ଦୂତ ହେ, କହିବ କୃଷ୍ଣଙ୍କୁ ! (୧)
କାହାଁଇଁ ନିର୍ଦ୍ଦୟା କରି ତେଜିଲେ ଆମ୍ଭଙ୍କୁ ।।
ଯାଇ ଫୁଲ୍ କେତ କେତ ମଲ୍ଲୀ ଫୁଲ୍ ଗନ୍ଧ ।
କୃଷ୍ଣ ଗଲେ ମଧୁପୁର ରାଧା ନବଯୁବା ।।୧।।
ନାନା ବନ୍ଧେ ବାନ୍ଧେ ଜୁଡ଼ା ସେବନ୍ତି ପାଖୁଡ଼ା ।
ଗୁଞ୍ଜି ଗୁଞ୍ଜିମାଳ ସଖୀ ଗୋପୀଘରବୁଡ଼ା ।।୨।।
କଂସରାଜା କେଡ଼େ ମନ୍ଦ ଅକ୍ରୂର ପେଷିଲା (୨) ।
ଚନ୍ଦରଥ ସଜକରି ବେଳଭାଇ ନେଲା (୩) ।।୩।।
କହେ ସାଲବେଗ ହୀନ ଜାତିରେ ଯବନ ।
ରାଧାକୃଷ୍ଣ ବିନୁ ଆନେ ନ ରସଇ ମନ (୪) ।।୪।।

---

(୧) ପ୍ରସ୍ତୁତ ଗୀତଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./740ରୁ ସଂଗୃହୀତ ହୋଇଅଛି । (୨) ପ୍ରସ୍ତୁତ ପଦଟି 'ଦୂତୀ ଗୋ କହିବୁ ବ୍ରହ୍ମାଙ୍କୁ' ଶୀର୍ଷକ ଭଜନର ଚତୁର୍ଥ ପଦରେ ରହିଛି । ଉକ୍ତ ପଦରେ—କଂସ ରାଜା ବଡ଼ ମନ୍ଦ ଅକ୍ରୂର ପେଷିଛି/ଚନ୍ଦରଥ ସାଜଣି ସେ ନେବାକୁ ବସିଛି—ପାଠ ରହିଛି । ପ୍ରସ୍ତୁତ ଗୀତର ତୃତୀୟ ପଦରେ ଯାହା ବର୍ଣ୍ଣନା ରହିଛି, ତାହା ଯୁକ୍ତିସଙ୍ଗତ । କାରଣ ମଥୁରାର ଦୂତ ଅର୍ଥାତ୍ ଉଦ୍ଧବଙ୍କ ଆଗରେ ଗୋପୀମାନଙ୍କ ଉକ୍ତିରେ ତୃତୀୟ ପଦର ଅର୍ଥ ଯେପରି ସଙ୍ଗତ ମନେହେଉଅଛି 'ଦୂତୀ ଗୋ କହିବୁ ବ୍ରହ୍ମାଙ୍କୁ' ଶୀର୍ଷକ ଗୀତରେ ସେପରି ଅର୍ଥବୋଧକ ହେଉନାହିଁ । (୩) ଏଠାରେ ଚନ୍ଦ୍ରରଥ, ଅର୍ଥାତ୍ ନାନା ପ୍ରକାର ସାଜସଜ୍ଜାରେ ସଜ୍ଜିତ ରଥ ବୋଲି ବର୍ଣ୍ଣନା କରାଯାଇଛି । (୪) ଏଠାରେ 'ନ ସରଇ ଧନ' ହେବା ଅଧିକ ସମୀଚୀନ ।

## ୫୩

ଦୂତୀ ଗୋ, କହିବୁ ବ୍ରହ୍ମାଙ୍କୁ,
ବଂଶୀ ଆଣି ଦେଲେ ବ୍ରହ୍ମା ମୋ ପ୍ରାଣ ନେବାକୁ (୧) ।।
* ନନ୍ଦସୁତ ଲାଗି ଏବେ ତେଜିଲୁ ଗୋକୁଳ,
† ମୁରଲୀ ହେଲା ଆସିଣ ଅଧିହିଁ ପ୍ରବଳ ।।
ଦୂତୀ ଗୋ…… ……।। ୧ ।।

ଯମୁନାକୁ ଯିବାବେଳେ ଜଗିଥାଇ ପଥ,
ହାବୁଡ଼େ ପଡ଼ନ୍ତେ ଦୂଖ ପାଉଇ ମହତ ॥୨॥
(୨) ଜୁଇ ଲଗାଇଣ ଆମ୍ଭେ ଯିବୁ ମଧୁପୁରୀ,
କୃଷ୍ଣନାମେ କଂସ ଆଗେ କରିବୁ ଗୁହାରି ॥୩॥
କଂସ ରାଜା ବଡ଼ ମନ୍ଦ ଅକ୍ରୁର ପେଷିଛି ।
ଚିତ୍ରରଥ ସାଜିଣ ସେ ନେବାକୁ ବସିଛି (୩) ॥୪॥
କହେ ସାଲବେଗ ହୀନ ମୁହିଁ ମୂଢ଼ମତି ।
ଶ୍ରୀରଙ୍ଗାଚରଣ ବିନୁ ନାହିଁ ଅନ୍ୟ ଗତି ॥୫॥

---

✳'ନନ୍ଦସୁତ ଲାଗି-ସ୍ନେହେ ଭାଙ୍ଗିଲା ଗୋକୁଳ' ପାଠାନ୍ତର ଦେଖାଯାଏ ।

† 'ବୈଂଶୀ କଲା ଆଜି ନାଶି ଅତହିଁ ପ୍ରବଳ' ।

(୧) ଶ୍ରୀରାଧାଙ୍କୁ ଉଚ୍ଚାଟ କରାଇବା ଲାଗି ବ୍ରହ୍ମା ଶ୍ରୀକୃଷ୍ଣଙ୍କୁ ମୁରଲୀ ପ୍ରଦାନ କରିଥିବାର କିମ୍ବଦନ୍ତୀକୁ କବି କର୍ଣ୍ଣଦାସ ଆଦି ପ୍ରାଚୀନ କବିମାନେ ନିଜ ନିଜ ପୁସ୍ତକରେ ଗ୍ରହଣ କରିଛନ୍ତି ।

(୨) ଜୁଇ—ଚିତାଗ୍ନି । ଶ୍ରୀକୃଷ୍ଣଙ୍କ ହଟହଟା ସହ୍ୟନପାରି ଶ୍ରୀରାଧା ଚିତାଗ୍ନି ଜାଳି ଆତ୍ମାହୁତି ଦେବେ ବୋଲି ଅଭିମାନପୂର୍ଣ୍ଣ ଧମକ ଦେଇଛନ୍ତି । 'ଗୋପସୀମା ତେଜି ଆମ୍ଭେ ଯିବୁ ମଧୁପୁରୀ' ପାଠ O.L./740 ପୋଥିରେ ରହିଛି ।

(୩) ଚିତ୍ରରଥ—ଖୁବ୍ ସମ୍ଭବତଃ ଚିତ୍ରଗୁପ୍ତ ଅର୍ଥାତ୍ ଯମର ଦୂତ ଅର୍ଥରେ ପ୍ରୟୋଗ କରାଯାଇଛି । ଅକ୍ରୁର ଶ୍ରୀକୃଷ୍ଣଙ୍କୁ ମଥୁରା ନେବାପାଇଁ ଗୋପପୁର ଆସିଥିଲେ । ତେଣୁ ଶ୍ରୀରାଧା ଅକ୍ରୁରଙ୍କୁ ଚିତ୍ରଗୁପ୍ତ ସହିତ ତୁଳନା କରିଛନ୍ତି । ଏହି ପଦ୍ୟଟି O.L./740 ପୋଥିରେ ନାହିଁ ।



ଦୂତିଗୋ, ବଂଶୀ କାହୁଁ ଆଣିଲେ,
ନନ୍ଦେଇ ନନ୍ଦନ ମୋ ପ୍ରାଣ ନେଲେ ॥
ଛାର ଲତାକାଠ ବାଉଁଶ ଖଣ୍ଡେ,
ପ୍ରମାଦ କଲାଣି ଏ ଗୋପଦାଣ୍ଡେ ॥
କୃଷ୍ଣହସ୍ତୁ ବଂଶୀ କେ ଦିଅନ୍ତା ମୋତେ ।
ପକାଇ ଦିଅନ୍ତି ଯମୁନା ପଥେ ॥

ଦୂତୀ ପ୍ରବେଶ ହରି ସନ୍ନିଧାନେ
କହେ ସାଲବେଗ ସେ ପାଦ ଧ୍ୟାନେ ।।*

* ପ୍ରସ୍ତୁତ ରଚନାଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ । ଏଠାରେ ବିରହିଣୀ ଶ୍ରୀମତୀ ଠାକୁରାଣୀ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କୁ ପାଇବା ଲାଗି ବ୍ୟଗ୍ରତାର ସହିତ ଦୂତୀକୁ ତାଙ୍କଠାକୁ ପଠାଇ ଦୂତୀ ହସ୍ତରେ ନିଜର ଦୁଃଖ ଜଣାଇଛନ୍ତି ।

## ୫୭

ଦୂତୀ ଗୋ···ହେଲା ଏଡ଼େ ପ୍ରମାଦ,
ମରମେ ଭେଦୁଛି ମୁରଲୀ ନାଦ ।।
ଦିନେ ନିଶିରେ ମୋ ପୁରକୁ ଗଲା,
ପଲଙ୍କ ଉପରେ ଯାଇ ବସିଲା ।।
ସେହି ଦିନୁ ଲାଜ ଭୟ ମୋ ଚଢେ (୧) ।
ନନ୍ଦନନ୍ଦନକୁ ବୋଇଲି ଗତେ ।।
ସେହି ଦିନୁ କାହ୍ନୁ କରିଛି ମାନ,
ମୁରଲୀ ବଜାଏ ଶ୍ରୀ ବୃନ୍ଦାବନ ।।
କାହ୍ନୁ ଆଣିଅଛି ମୋହନ ବେଣୁ,
କ୍ଷଣେ କ୍ଷଣେ ଚେତା ହଜାଏ ମନୁ (୨) ।।
କହେ ସାଲବେଗ ମୁଁ ମୂଢ଼ମତି,
ରାଧାଭାବେ ନିତ୍ୟ ରହୁ ମୋ ମତି (୩) ।।

(୧) ପ୍ରସ୍ତୁତ ପଦ୍ୟଟି ଭକ୍ତକବି ସାଲବେଗଙ୍କର ପ୍ରଭୁଙ୍କ ପାଦପଦ୍ମରେ ରାଧାଭାବରେ ଏକ କରୁଣ ନିବେଦନ । ଶ୍ରୀରାଧାଙ୍କ ଶୟନମନ୍ଦିରରୁ ନିରାଶ ହୋଇ ଫେରିବା ପରେ ନବୀନ କିଶୋର ରସିକଶେଖର କାହ୍ନୁଙ୍କର ଅଭିମାନ ଭଞ୍ଜନ ଲାଗି ଦୂତୀ ଆଗରେ ଶ୍ରୀମତୀଙ୍କ ବିରହର ପ୍ରତ୍ୟକ୍ଷ ସାକ୍ଷୀରୂପେ ସାଲବେଗ ଏହା ରଚନା କରିଛନ୍ତି ।

(୨) 'ସେହିଦିନୁ ଲାଜ ଭୟ କଲି ମୋହି ଚଢେ' ମୂଳପାଠ; କିନ୍ତୁ ଏପରି ଭାବରେ ପାଠକଲେ ଛନ୍ଦଭଙ୍ଗ ଦୋଷ ହେଉଛି; ତେଣୁ 'ସେହିଦିନୁ ଲାଜ ଭୟ ମୋ ଚଢେ' ପାଠ ଏଠାରେ ପ୍ରଦତ୍ତ ହେଲା ।

(୩) 'କ୍ଷଣକ୍ଷଣକେ ·····'ବ୍ୟତୀତ ମୂଳପାଠରେ ଅନ୍ୟ ଅକ୍ଷରଗୁଡ଼ିକ ନଷ୍ଟ ହୋଇଯାଇଛି । ତେଣୁ ପାଦ ପୂରଣ ଦୃଷ୍ଟିରୁ 'କ୍ଷଣେ କ୍ଷଣେ ଚେତା ହଜାଏ ମନୁ' ପାଠ ଏଠାରେ ପ୍ରଦତ୍ତ ହୋଇଛି । ପଦ୍ୟଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ହୋଇଛି ।

## ୪୮

ଦେଖିଲି ଆଜ ଗୋ, ନୀପମୂଳେ ଦେବରାଜ,
ଅଲପ ଅନାଇଁ ତାଙ୍କୁ ହେଲି ଲାଜଲାଜ ॥
ନବୀନଘନ ପରାଏ ଦିଶେ ତାଙ୍କ ତେଜ ।
ହରିଲେ (୧) ବିବେକ ମୋର ନ ରହିଲା ହେଜ (୨) ॥
ତାଙ୍କୁ ନ ଦେଖିଲେ ଦଣ୍ଡେ,
ପ୍ରାଣ ମୋ' ନରହେ ପିଣ୍ଡେ,
ଅତନୁ ମରମେ ପଶି କରୁଛୁ ଦହଜ (୩) ॥
ଶିରେ ଶିଖିପୁଚ୍ଛ ତାର ଲମ୍ବିଥାଇ ବେଣୀ,
ଚାହିଁଲେ ସତୀ-ବରତ ତେଜିବେ ରମଣୀ ॥
ନାଚନ୍ତି ନୟନେ ମୋର ଦିବାନିଶି ସେହି,
କିରୂପେ ବଞ୍ଚିବି ହୀନ ସାଲବେଗ କହି ॥*

---

(୧) 'ହାରିଲେ' ମୂଳପାଠ, କିନ୍ତୁ 'ହରିଲେ' ହେବା ସମୀଚୀନ ।
(୨) ହେଜ—ଜ୍ଞାନ, ଗ୍ରାମ୍ୟ ପ୍ରୟୋଗ ।
(୩) 'ଦହଜ', ଗ୍ରାମ୍ୟ ପ୍ରୟୋଗ; 'ଦହଗଞ୍ଜ' ଶବ୍ଦ କାବ୍ୟିକ ପ୍ରୟୋଗ—ହନ୍ତସନ୍ତ ହେବା ।
* ପ୍ରସ୍ତୁତ ପଦ୍ୟଟି ବାଲେଶ୍ୱର ଜିଲ୍ଲାର ଭଦ୍ରକ ଅଞ୍ଚଳରୁ ଜଣେ ଗାୟକଙ୍କଠାରୁ ସଂଗୃହୀତ ।

## ୪୯

ଧନ ମୋର କେତେ ସ୍ନେହ ଲଗାଇଛୁ ।
ଘଡ଼ିକେ ଘଡ଼ିକେ ମୋର ପରାଣ ଦହୁଛୁ ॥
କେ ଯାଇ କହିବ ଶ୍ୟାମବନ୍ଧୁକୁ (୧) ବଚନ ।
ଆଲିଙ୍ଗନ କରି ତାକୁ ଦେବି ମୁଁ ଚୁମ୍ବନ ॥
କେ ଯାଇ କହିବ ଶ୍ୟାମବନ୍ଧୁକୁ (୨) ବାରତା ।
ଗଳାରୁ ମୁଁ କାଢ଼ିଦେବି ହାର ମୋ ମୁକୁତା (୩) ॥
ପ୍ରାଣବନ୍ଧୁକୁ କହିବ ଦେଶୁ ହେଲେ ଦୂର ।
ପରାଣବନ୍ଧୁଙ୍କଠାରୁ ହେଲି ମୁଁ ଅନ୍ତର (୪) ॥

କହେ ମୂଢ଼ ସାଲବେଗ ଅତି ମତିହୀନ ।
ଶ୍ରୀରାଧାକୃଷ୍ଣଙ୍କ (୫) ପାଦେ ରହୁ ମୋର ମନ ॥ *

---

(୧) 'ଶ୍ୟାମବନ୍ଧୁ ବଚନ' ପୋଥିପାଠ । (୨) 'ଶ୍ୟାମବନ୍ଧୁ ବାରତା' ପୋଥିପାଠ । (୩) 'ଗଳାରୁ କାଢ଼ି ଦେବି ହାରମୁକୁତା' ପୋଥିପାଠ । (୪) 'ପ୍ରାଣବନ୍ଧୁ ଠାରୁ ହେଲି ଅନ୍ତର' ପୋଥିପାଠ । (୫) 'ଶ୍ରୀରାଧାକୃଷ୍ଣର······' ପୋଥିପାଠ ।

* ପ୍ରସ୍ତୁତ ପଦ୍ୟଟି ରାଜ୍ୟସଂଗ୍ରହାଳୟ ପୋଥି OrH/81ରୁ ସଂଗୃହୀତ ।

## ୬୦

ଧନ୍ୟ ଧନ୍ୟ ନୀଳଗିରିବାସୀ,
ଭାଗ୍ୟ ଥିଲେ ସାଧୁସଙ୍ଗେ ମିଶି । *
ପେଟ ପୂରେଇଣ କୈବଲ୍ୟ ପାବନ୍ତି, ମୁଖେ ବୋଲୁଥାନ୍ତି ଏକାଦଶୀ, ନୀଳଗିରି !
ଯହିଁ ବିଜେ କରିଛନ୍ତି ରାମହରି ॥
ପ୍ରଭୁ ବଡ଼ଦାଣ୍ଡ ଦେଖି ହେଲି ତୋଷ
ରେଣୁ ଦେନି ମୁଖେ କଲି ଗ୍ରାସ ।
ସିଂହଦ୍ୱାରଠାରେ କୈବଲ୍ୟ ପାବନ୍ତେ ଟଙ୍କ ତୋରଣିରେ ମନତୋଷ ॥
ସିଂହଦ୍ୱାରେ ବାଜେ ବେତ ବାଡ଼ି
ବାନନ୍ତେ ପାତକ ଯାଏ ଛାଡ଼ି ।
ଶ୍ରୀଜଗନ୍ନାଥଙ୍କ ଦରଶନ ନମନ୍ତେ ସନ୍ଥଜନମାନେ ଠେଲାଠେଲି ॥
ପ୍ରଭୁ ବାଉଣି ପାବନ୍ତି ଗଲି ସୁଖେ
କୈବଲ୍ୟ ପସରା ବେନି ପାଖେ ।
ବ୍ରାହ୍ମଣ ଚଣ୍ଡାଳ ଏକମେଳ ହୋଇ କୈବଲ୍ୟ ପାବନ୍ତି ମୁଖେ ମୁଖେ ॥
ଏଥୁ ଅନନ୍ତରେ ଗଲି ଖରେ
ମୁକତି ମଣ୍ଡପ ଯହିଁଠାରେ !
କଳପବଟକୁ ପ୍ରଦକ୍ଷିଣ କରି ଆଲିଙ୍ଗନ କଲି ପ୍ରେମଭରେ ॥
ରୋହିଣୀ କୁଣ୍ଡ ପାଦୁକା ରଜ
ସିଂହ ମାଡ଼ି ବସିଅଛି ଗଜ ।
ତା ତଳୁଁ ଅବା ମୁଁ କେତେ ବଡ଼ ହେବି କାକ ପକ୍ଷୀ ହେଲା ଚତୁର୍ଭୁଜ ॥
ଓଡ଼ିଆ ଜଗବନ୍ଧୁଙ୍କ ରାଣୀ
ସୁବର୍ଣ୍ଣ ଥାଳୀରେ ପରଷଣି । **

ଶ୍ରୀଜଗନ୍ନାଥଙ୍କ ଦ୍ରଶନ ନିମନ୍ତେ ସନ୍ଥଜନମାନେ ଠେଲାଠେଲି ॥
କହେ ସାଲବେଗ ମୂଢ଼ମତି
ରଙ୍ଗା ଚରଣରେ ଥାଉ ମତି ।
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ ଦୟାକର ମୋତେ ଲକ୍ଷ୍ମୀପତି ॥

---

* ପ୍ରସ୍ତୁତ ପଦ୍ୟଟି ଡ଼ଃ କୃଷ୍ଣଚରଣ ସାହୁଙ୍କ ସମ୍ପାଦିତ 'ଶ୍ରୀଜଗନ୍ନାଥଲୀଳାମୃତ'ରୁ ସଂଗୃହୀତ । ଏହି ପଦ୍ୟଟି 'ପ୍ରବେଶ ହୋଇଲି ବଡ଼ଦାଣ୍ଡ'ର ଅନୁରୂପ । ମାତ୍ର ଏଥିରେ ଅଳ୍ପ କେତେକ ପାଠଭେଦ ରହିଛି ।

**ଏହି ପଦଟି ଏଠାରେ ଆଦୌ ସଙ୍ଗତ ନୁହେ । ଖୁବ୍ ସମ୍ଭବତଃ 'ସୁବର୍ଣ୍ଣଥାଳୀରେ ହେଡ଼ା ପରସିଲେ ମୁକୁନ୍ଦଦେବଙ୍କ ରାଣୀ' ପାଦଟିକୁ କୌଣସି ଗାୟକ ଏଠାରେ ଯୋଡ଼ି ଦେଇଛନ୍ତି । କିନ୍ତୁ ତା'ପର ପାଦଟି 'ଶ୍ରୀଜଗନ୍ନାଥଙ୍କ ଦ୍ରଶନ ନିମନ୍ତେ' ମଧ୍ୟ ଏଠାରେ ରହିବା ଆଦୌ ଯୁକ୍ତିସଙ୍ଗତ ନୁହେ ।

## ୭୧

ନନ୍ଦକୁମାର ଛାଡ଼, ପଣତ ଲୁଗା ମୋର (୧) ॥*
ମୋର (୨) ଯୁବା ବୟସ, ତୁମେ ବାଳୁତ ଶିଶୁ
କାହୁଁ ଶିଖିଲ ଏତେ ରସ ॥
ଆଜ ମଥୁରା ହାଟ ବୋଲି ଜଗିଛ ବାଟ,
ଦଇବ ଯୋଗେ ହେଲା ଭେଟ ॥
ବେଳ ହେଲା ଉଛୁର ଲାଗୁଛି ମୋତେ ଡର,
ଆଉ ନ କର ହରବର ॥
ମୁହିଁ ଅବଳା ନାରୀ, ସ୍ନେହ କଥାକୁ ଡରି,
ଆସୁ ନଥିଲି ଭୟ କରି ॥
ରାଧା ବାକ୍ୟେ ଗୋବିନ୍ଦ ମନ ବଡ଼ ଆନନ୍ଦ
ଦଇବ ଯୋଗେ ହେଲା ମନ୍ଦ (୩) ॥
କହେ ସାଲବେଗ ହୀନ କୃଷ୍ଣଚରଣେ ମନ,
ମୁଁ ମୂଢ଼ ଜାତିରେ ଯବନ (୪) ॥

---

* ପ୍ରସ୍ତୁତ କବିତାଟି ଶ୍ରୀନିବାସ ରଥଙ୍କଠାରୁ ପ୍ରାପ୍ତ ।

(୧) ଫେର—ଲୁଗାକାନି ବା ପଣତ । (୨) 'ମୁଁ ତ ଯୁବା ବୟସ' ମୂଳପାଠ; କିନ୍ତୁ 'ମୋର ଯୁବା ବୟସ' ଶୁଦ୍ଧ ପାଠ । (୩) 'ଦଇବ ଯୋଗେ ହେଲା ବଡ଼ ମନ୍ଦ' ମୂଳପାଠ; କିନ୍ତୁ ଏସ୍ଥାନରେ ଛନ୍ଦଭଙ୍ଗ ହେଉଛି । (୪) ମଥୁରାକୁ ଯିବାବେଳେ ଶ୍ରୀକୃଷ୍ଣ ରାଧିକାଙ୍କ ପଣତକାନି ଧରି ଜଞ୍ଜାଳ କରୁଥିବାରୁ ଠାକୁରାଣୀଙ୍କର ଅଭିଯୋଗ ଭକ୍ତକବିଙ୍କ ହୃଦୟକୁ ସ୍ପର୍ଶ କରିଛି ।

## ୭୨

ନ ଯା' ତୁ ବନବାସ କରି ରେ, କୋଦଣ୍ଡଧାରୀ
ବନବାସ କରିଗଲେ ଭ୍ରୁଥ ନେବ ଶିରିରେ ॥
ଭ୍ରୁଥ ପଛେ ରାଜା ହେଉ ନଗରରେ ବସି ।
ଭିକ୍ଷାପାନେ ମାଗି ଖା' ତୁ ନ ଯା ବନବାସରେ ॥
ପାଟ ପୀତାମ୍ବର କାହ୍ନୁ (୧) ନ ବୁଟଇ ତୋତେ ।
ପତ୍ରକୁଡ଼ିଆରେ ଦିନ ବଞ୍ଚିବୁ କେମନ୍ତେରେ ॥
ଶିବଧନୁ ଭାଙ୍ଗି ତୋତେ କରାଇଲି ବିଭା ।
ତା' ମୁଖ (୨) ତୋ ମୁଖ କାହ୍ନୁ ପାଇନାହିଁ ଶୋଭାରେ ॥
ନଈ ବାଙ୍କ ବାଙ୍କରେ ପୋଖରୀ ସମତୁଲ (୩) ।
ତୁ ଭାରି ଭ୍ରମରୀ ଅଟୁ ଦ୍ରିଷ୍ଟି ଚମ୍ପାଫୁଲ ରେ ॥
କହେ ସାଲବେଗ ହୀନ ଜାତିରେ ଯବନ ।
ତୋହ ଶ୍ରୀଚରଣ ବିନୁ ଗତି ନାହିଁ ଆନରେ ॥*

---

(୧) ରାମ ଓ କୃଷ୍ଣଙ୍କ ମଧ୍ୟରେ ଅଭେଦ କଳ୍ପନା କରି ସାଲବେଗ ଏଠାରେ ରାମଙ୍କୁ 'କାହ୍ନୁ' ବୋଲି ସମ୍ବୋଧନ କରିଛନ୍ତି ।

(୨) ତା' ମୁଖ, ଅର୍ଥାତ୍ ସୀତାଙ୍କ ମୁଖ ।

(୩) ଏ' ପଦଟି ଏଠାରେ ଅସ୍ୱାଭାବିକ ପରି ଜଣାଯାଉଛି; ମାତ୍ର କବି ଏଠାରେ ଶ୍ରୀରାମଙ୍କ ଧୈର୍ଯ୍ୟଶୀଳତା ଓ ସୀତାଙ୍କ ସହନଶୀଳତାକୁ ଲକ୍ଷ୍ୟ କରି ପଦଟି ସନ୍ନିବେଶିତ କରିଛନ୍ତି ।

* ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1740ରୁ ସଂଗୃହୀତ ।

## ୭୩

ନବଘନ (୧) କାଳିଆ;*
ତୋର ଲାଗି ମୋର ଜାତି ଗେଲ ।
ତୋର ଲାଗି ମୋର ଜାତି ଗେଲ,
ପତି ଗେଲ, କୁଳ ଗେଲ ।

ଲାଜ (୨) ଲୟା ଗେଲ,
ଲେମ୍ବୁମୂଳେ କୃଷ୍ଣ ଛିଲ (୩),
ଏକଟା ଲେମ୍ବୁ ଖୁଜିଆ ଗେଲ,
ଫେଙ୍କାୟା ଗେଲ ।
ଗଲେ (୪) ଲେମ୍ବୁର ଗାଛ ତଲେ
ରୂପତ ଲାଲା ହଲ ।

ରାଧା ଦୂତୀ ଜଲକେ (୫) ଗେଲ,
କଦମ ତଲେ କୃଷ୍ଣ ଛିଲ (୬),
ସାଲବେଗ କହିଆ ନାଗର ମୋହନ ମୁରଲୀ ବାୟ୍ୟାଁ ଗେଲ ।

---

* ପ୍ରସ୍ତୁତ ପଦ୍ୟଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ।

(୧) 'ଅବଘନ' ମୂଳପାଠ । (୨) 'ଲପଲୟା ଗେଲ' ମୂଳପାଠ'; କିନ୍ତୁ 'ଲାଜ ଲୟାଗେଲ' ପାଠ ସମୀଚୀନ ବୋଲି ମନେହୁଏ । (୩) 'ଥିଲ' ମୂଳପାଠ; କିନ୍ତୁ ବଙ୍ଗଳା କିମ୍ବା 'ଛିଲ' ସମୀଚୀନ ପାଠ ବୋଲି ମନେହୁଏ । (୪) 'ଗଲେ ଲେମ୍ବୁର' ବଦଳରେ 'ଆଗୋ ଲେମ୍ବୁ ଗାଛ ତଲେ' ପାଠ ହେଲେ ଅର୍ଥ ସୁସ୍ପଷ୍ଟ ହୁଅନ୍ତା । (୫) 'ଜଲକୁ' ମୂଳପାଠ । (୬) 'କୃଷ୍ଣ ଥିଲ' ମୂଳପାଠ ।

## ୭୪

ନବୀନ-ଘନ-ବରନ ପ୍ରଭୁ ଚକାଆଖି ।*
ମୋର ହୃଦ ବେଦନାକୁ ତୁମ୍ଭେ ସିନା ସାକ୍ଷୀ ।
ଡାହାଣେ ଶ୍ରୀବଳଭଦ୍ର ମଧ୍ୟରେ ବହେଣୀ (୧) ।
ବସିଛନ୍ତି ଜଗନ୍ନାଥ ଶଙ୍ଖ ଚକ୍ର ଘେନି ॥

ଦେହ ତ ବହୁଳ ପ୍ରଭୁ କେତେ ଭୋଗ ଖାଉ ।
ଚନ୍ଦନ ରଥ ସାଜ ଗାଜ (୨) ବଡ଼ଦାଣ୍ଡେ ଯାଉ ॥

ତୁଳସୀ ଚଉରାଠାରେ ବିକାଯାଏ ଭାତ (୩) ।
ଦର୍ଶନ ଦେଖିକି ଆଉ କୈବଲ୍ୟ ମୁକତ ॥

କହେ ସାଲବେଗ ହୀନ ଜାତିରେ ଯବନ (୪) ।
ତୁମ ଶ୍ରୀଚରଣ ବିନୁ ଗତି (୫) ନାହିଁ ଆନ ॥

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1740 ରୁ ସଂଗୃହୀତ ।
(୧) ବହେଣୀ—ଭଗିନୀ, ଭଉଣୀ । (୨) ଗାଜ—ଗ୍ରାମ୍ୟଜ ଶବ୍ଦ, ଆଡ଼ମ୍ବର ଅର୍ଥରେ । (୩) ଖୁବ୍ ସମ୍ଭବତଃ ସାଲବେଗଙ୍କ ସମୟରେ ବିମଳାଙ୍କ ବାମ ପଟେ ଥିବା 'ତୁଳସୀଚଉରା' ନିକଟରେ ମହାପ୍ରସାଦ ବିକ୍ରି ହେଉଥିଲା । (୪) 'ଦମନ' ପୋଥିପାଠ (୫) 'ଅନ୍ୟ ନାହିଁ ଆନ' ପୋଥିପାଠ ।

## ୭୫

ନବଘନା, ବାରେ ଏଣିକି ଅନା ।*
ତୁ ମୋର ବାନ୍ଧବୀ ମୁଁ ତୋର କଣା ॥
ହରିଣନୟନୀ କୁଟିଳକେଶୀ,
ସ୍ନେହାଁ ବାରେ ମୋତେ ନବବୟସୀ ॥
ନିତି ପୂଜୁଥାଇ ହରହରଙ୍କୁ,
ନ ପାଇ ପାଇଛୁ (୧) ନାଗରବରଙ୍କୁ ॥
ତୋ ପରି ସୁନ୍ଦରୀ ନ ଦେଖି ଜଣେ,
ମରମ ବନ୍ଧୁଛୁ କଟାକ୍ଷବାଣେ ॥
କହେ ସାଲବେଗ ଜାତି ଯବନ,
ବାରେ ଦୟା କର ନାଗରିରତନ ॥

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1740ରୁ ସଂଗୃହୀତ । ଏଠାରେ ଶ୍ରୀରାଧାଙ୍କ ପ୍ରତି ବିରହୀ ଶ୍ରୀକୃଷ୍ଣଙ୍କର ଆକୁଳ ନିବେଦନସୂଚକ ପଦ୍ୟଟି କବି ସାଲବେଗଙ୍କ ଲେଖନୀରୁ ନିସୃତ ହୋଇଛି ।

(୧) ନ ପାଇ ପାଇଛୁ—ଅର୍ଥାତ୍ ପାଇବାର ଆଶା ନ ଥିଲେ ମଧ୍ୟ ପାଇଛୁ ଅର୍ଥରେ ଏଠାରେ ପ୍ରୟୋଗ କରାଯାଇଛି ।

**୬୬**

ନବୀନ ନଟବର ମୂରତି ।
କୃଷ୍ଣଙ୍କୁ ଦେଖି ମୋ ବଳିଲା ମତି ॥
କଦମ୍ବ ମୂଳରେ ହୋଇଛୁ ଛିଡ଼ା ।
ଅଧରେ ମୁରଲୀ ପାଇଛୁ ଶୋଭା ॥
କାଳିଆ (୧) ଅଙ୍ଗରେ ଝୋପି ଚନ୍ଦନ ।
କାଳାମେଘେ ଯେହ୍ନେ ପୂର୍ଣ୍ଣିମୀ ଜହ୍ନ ॥
ଶ୍ରୀକୃଷ୍ଣ ପଦ୍ମରେ ରତ୍ନ କଟାଉ ।
ବାଙ୍କ ଚୂଳି କି ଦିଶେ ଦାଉ ଦାଉ ॥
କଟୀତଟେ ଶୋହେ ପୀତବସନ ।
ନବଘନ କୋଳେ ବିଜୁଳି ଯେସନ ॥
କହେ ସାଲବେଗ ଜାତିରେ ହୀନ ।
ରାଧାକୃଷ୍ଣ ପାଦେ ରହୁ ମୋ ମନ ॥*

---

(୧) 'କାଳୀୟ ଅଙ୍ଗ' କେତେକ ପାଠରେ ଦେଖାଯାଏ; କିନ୍ତୁ 'କାଳୀୟ' ଶବ୍ଦ ସାଧାରଣତଃ କାଳୀସର୍ପ ଅର୍ଥରେ ବ୍ୟବହୃତ ହୋଇଥାଏ ।

* ଭକ୍ତକବି ସାଲବେଗ ଶ୍ରୀକୃଷ୍ଣଙ୍କ ନଟବର ମୂରତି ଧ୍ୟାନ କରି ତଲ୍ଲୀନ ହୋଇ-ପଡ଼ିଛନ୍ତି । କବିଙ୍କର 'ତାଦାତ୍ମ୍ୟ' ଭାବନା ମନ ମଧ୍ୟରେ ଉଦ୍ରେକ ହୋଇଥିବାରୁ ସେ ନିଜର ଅସ୍ତିତ୍ୱ ଭୁଲିଯାଇଛନ୍ତି । 'ମୁରଲୀଧାରୀ'ଙ୍କ 'କାଳିଆ ଅଙ୍ଗରେ ଝୋପି ଚନ୍ଦନ', 'ପାଦର ରତ୍ନ-କଟାଉ', 'ବାଙ୍କ ଚୂଳି' ଓ 'ପୀତବସନ' ଭକ୍ତ ସାଲବେଗଙ୍କର ଆଖିକୁ ଝଲସାଇ ଦେଇଛୁ । ସେ ଭାବୁକ କଳ୍ପନାବଳରେ ଗୋପପୁରେ ଥାଇ ଶ୍ରୀକୃଷ୍ଣଙ୍କର ସେହି ବାଲଗୋପାଲ ମୂରତିରେ ତଲ୍ଲୀନ ହୋଇପଡ଼ିଛନ୍ତି । ସ୍ଥାନ-କାଳର ବ୍ୟବଧାନ ପ୍ରତି ସେ ଆଦୌ ସଜାଗ ନୁହନ୍ତି । ତେଣୁ ତାଙ୍କ କବିତାରେ ଏପରି ପ୍ରାଣପୂର୍ଣ୍ଣ ପଦାବଳୀ ସ୍ଫୁରିଉଠିଛି ଏବଂ ଉପମାନ ଉପମେୟର ସାମଞ୍ଜସ୍ୟ ଏପରି ରହିଛି ଯେ, ପ୍ରତ୍ୟେକ ପାଠକଙ୍କ ହୃଦୟରେ 'ବାଲଗୋପାଳ'-ଙ୍କର ମୂର୍ତ୍ତି ଅଙ୍କିତ ହୋଇଉଠୁଛି ।

**୬୭**

ନାଗରୀ ନାଗରୀ ନାଗରୀ !
କତ ପ୍ରେମେର ଆଗରୀ, ନବନାଗରୀ (୧) !

କନକ କେତକୀ ଚମ୍ପା ତଡ଼ିତବରଣା ।
ଇନ୍ଦୀବର (୨) ନୀଲମଣି ଜଲଦବସନା ।।
ମୃଗଜ ପଙ୍କଜ ମୀନ ଖଞ୍ଜନନୟନା ।
କାମଧେନୁ ଭ୍ରମର ପଙ୍କ୍ତି ଭୁରୁ ଭୁଜଙ୍ଗିନୀ ।।
ନାସା ତିଲଫୁଲ ଖଗ ଚମ୍ପାକଲୀ ଜିତା ।
ଜାମ୍ବୀ ଜଲ ବନ୍ଧୁକ ବେଣୀ ଝାଁପି ଝଲଙ୍କିତା ।।
ଭାଲେ ସେ ସିନ୍ଦୂର ବିନ୍ଦୁ ଶୋଭେ କେଶ ଶୋଭା ।
ଜିନି ଇନ୍ଦୀବର (୩) ବାନ୍ଧୁ ତମାଲେର ଆଭା ।।
ଭାଲେ ବିରାଜିତ ଉରେ ମୋତିମସ୍ତୁ ହାରା (୪) ।
ହଂସ ବକଶ୍ରେଣୀ ଗଙ୍ଗାଜଲ ଦୁଗ୍ଧ ଧାରା ।।
କହେ ସାଲବେଗ ହୀନ ଜଗତପାମର ।
ରସେର କଲିକା ରାଧା କାହ୍ନୁ ସେ ଭ୍ରମର ।।*

---

(୧) 'କତ ପ୍ରେମେର ଆଗରୀ ନାଗରୀ ଓ ଗାଗରୀ ରସନାଗରୀ' ପାଠଭେଦ । (୨) 'ଚମ୍ପକଲୀ' ପାଠଭେଦ । (୩) 'ଇନ୍ଦୀବର ବାନ୍ଧୁ ଜିନି' ପାଠଭେଦ । (୪) 'ଭାଲେ ବିରାଜିତ ବର ଉରେ ମୋତିହାରା' ପାଠଭେଦ; କିନ୍ତୁ ଏହି ପାଠଟି ଅଧିକ ସଙ୍ଗତ ବୋଲି ମନେହୁଏ ।

*ଏହି ଗୀତଟି ସନ ୧୩୩୪ ସାଲରେ ବଙ୍ଗୀୟ ସାହିତ୍ୟ ପରିଷଦଦ୍ୱାରା ପ୍ରକାଶିତ ଓ ସତୀଶଚନ୍ଦ୍ର ରାୟଙ୍କଦ୍ୱାରା ସମ୍ପାଦିତ 'ପଦକଳ୍ପତରୁ' ପୁସ୍ତକର ଚତୁର୍ଥ ଖଣ୍ଡରୁ ସଂଗୃହୀତ ।

## ୭୮

ନିରାଶ ନ କର ରାଧେ,
ଅଲପ ଅନାଇ ଯାଅ ଏଣିକି (୧) ।।
ସାନ ସାନ କାଳେ ଗୋପସୁତ ମେଳେ
ତୁହି ମୋତେ ରାଧେ ବରି ନାହୁଁ କି ?
ତୋ ମନେ ନଥିଲେ ପାସୋରି ତା ଗଲେ
ପଚ୍ଛୁରି ତୋ ସଙ୍ଗ ସହଚରୀ କି ।୧।
ସେ କଥାକୁ ଛାଡ଼ି ଏବେ ହେଲି ବଡ଼
ଚତୁରୀ ନାଗରୀ ଶିଖିଲୁ କିକି ।

ଏବେ ତ କହ୍ନାଇଁ ମଉନେ ରହୁଛ
କେତେ ଫୁଟି ଫୁଲ ବାସିଲଣି କି ।୨।
ମୁଖରେ ତାମ୍ବୁଳ ନୟନେ କଜ୍ଜ୍ୱଳ
କୁଚେ ପତ୍ରାବଳୀ ଘେନିଲଣି କି ?
ଅଞ୍ଚଳ ଫିଟାଇ ରସିକପଣକୁ
କାମଭଣ୍ଡାରକୁ ଲୁଟିଲଣି କି ।୩।
ଶ୍ରୀକୃଷ୍ଣ ବଚନେ ରାଧିକା ମଉନ
ହସି କଥା କହୁ ଜାଣିଲଣି କି ?
କହେ ସାଲବେଗ ରାଧିକା ବୋଲନ୍ତି
ସବୁକାଳେ ସବୁ କଥା ଥିବ କି ।୪।*

---

(୧) ଏହି ଗୀତଟି O.L./740 ପୋଥିରୁ ସଂଗୃହୀତ ।

* ଭକ୍ତକବି ଏଠାରେ ରସିକଶେଖର ଶ୍ରୀକୃଷ୍ଣ ଓ ରସବତୀ ଶ୍ରୀମତୀଙ୍କ ମଧ୍ୟରେ ହାସ-ପରିହାସ ଉଲ୍ଲେଖ କରି ଆବାଲ୍ୟରୁ ଶ୍ରୀମତୀଙ୍କ ସହିତ ତାଙ୍କର ଆନ୍ତରିକତା ଥିବାର ସୂଚନା ଦେଇଛନ୍ତି । ବିଶେଷତଃ ଶ୍ରୀରାଧା ପରକୀୟା ଏବଂ ସେ ଚନ୍ଦ୍ରସେଣୀଙ୍କ ପତ୍ନୀ ବୋଲି ଏହି ଗୀତରୁ ସୂଚିତ ହୁଏନାହିଁ; ବରଂ ପୂର୍ବର ସଂସ୍କାର ବା ବରଦାନ ଫଳରେ ଶ୍ରୀରାଧା-କୃଷ୍ଣଙ୍କ ମିଳନ ଲୌକିକ ମିଳନ ପରି ସ୍ୱାଭାବିକ ହୋଇଛି ।

## ୭୯

ପର୍ବତ ଶିଖରେ ଘର ବାନ୍ଧିଥିଲି ତଳକୁ ଲମ୍ବିଛି ଡାଳ
ସଂସାର ମଧ୍ୟରେ ଭ୍ରମିଯାଉଥିଲି ନରଜନ୍ମ ନାରଖାର
ଲୋ ଶାରୀ !
ଭଜ ରାମକୃଷ୍ଣ ହରି !
ମାରି ନେବଟି ଘେନି ଯିବଟି
ଧରିନେବଟି ଦୁଷ୍ଟ ମଞ୍ଜାର,
ଲୋ ଶାରୀ !
ସହସ୍ରେ କାଠିରେ ପଞ୍ଜୁରି ଗଢ଼ିଲି ସୂଚୀମୁନ କଲି ଦ୍ୱାର
ଶୁଆ ଶାରୀ କରି ଯୋଡ଼ିଏ ପୋଷିଲି ନେଇ ପଞ୍ଜୁରି ଭିତର
ଲୋ ଶାରୀ !

ସୁବର୍ଣ୍ଣ ଥାଳୀରେ ଅମୃତ ପୂରାଇ ତୋତେ ପ୍ରତିପାଳୁଥିଲୁ
ପକ୍ଷୀ ଘର ଜନ୍ତୁ ଅବିଶ୍ୱାସରେ କାହାକୁ ନ କହି ଗଲୁ
ଲୋ ଶାରି !

ଯହୁଁ ଦିନେ ଭୁଲେ ବଣର ଭିତରେ କେହି ନ ଭଜନ୍ତୁ ତୋତେ
ନଳୁଆ ତଳରୁ ନଳ ଗୁଞ୍ଜୁଥିଲା ମାରନେବ ସେହି ତୋତେ
ଲୋ ଶାରି !

ଗଲା ତୋର ଅଙ୍ଗ ଥଣ୍ଟ ତ ସୁରଙ୍ଗ ଦାନ୍ତ ତ ଡାଳିମ୍ବ ମଞ୍ଜି
କହେ ସାଲବେଗ ଏ ଗୀତେ ଭଣିଲେ ସୁନାକୁ କେ କଲା ବନ୍ଦୀ
ଲୋ ଶାରି !*

---

* ସଂସାର ମଧ୍ୟରେ ସର୍ବାପେକ୍ଷା ଉନ୍ନତ ନରଜନ୍ମ ପାଇ ମନୁଷ୍ୟ ଅଜ୍ଞାନତାବଶତଃ ଜୀବନକୁ ନାରଖାର କରିଦିଏ । ମନୁଷ୍ୟ ଯଦି 'ରାମକୃଷ୍ଣ'ଙ୍କ ନାମ ଭଜନ ନ କରେ, ତା'ହେଲେ ଦୁଷ୍ଟ ମାର୍ଜାର ପକ୍ଷୀମାନଙ୍କୁ ଅତର୍କିତ ଆକ୍ରମଣ କରିବା ପରି କାଳ ଅକାଳରେ ତାକୁ କବଳିତ କରିଦିଏ । ବନ୍ଧୁ ଅସ୍ଥି-ପଞ୍ଜରାବିଶିଷ୍ଟ ଏହି ନଶ୍ୱର ଶରୀରରେ ଜୀବାତ୍ମା ଓ ପରମାତ୍ମା ଶୁଆ ଶାରି ରୂପେ ବାସକରନ୍ତି । ଜୀବାତ୍ମା ଅର୍ଥାତ୍ ଜୀବର ରକ୍ଷଣାବେକ୍ଷଣ ଲାଗି ମନୁଷ୍ୟ ନାନାପ୍ରକାର ଆୟୋଜନ କରେ; କିନ୍ତୁ ସେ ହଠାତ୍ ଦିନେ ସମସ୍ତ ଯତ୍ନକୁ ଏଡ଼ାଇ କାଳକବଳିତ ହୋଇପଡ଼େ ତା'ଫଳରେ ଶରୀରର ସମସ୍ତ ସୌନ୍ଦର୍ଯ୍ୟ ନଷ୍ଟ ହୋଇଯାଏ; ଏହା ଧ୍ରୁବ ସତ୍ୟ ହୋଇଥିଲେ ମଧ୍ୟ ମଣିଷ ଏହାର ସାରବତ୍ତା ଅନୁଭବ କରେ ନାହିଁ ।

## ୭୦

ପାଦ ଛୁଞ୍ଚିବୁରେ ନାହିଁ,
ଛୁଞ୍ଚିଲେ ଶ୍ରୀକୃଷ୍ଣ ନାମ ଆଉ ପାଇବୁ କାହିଁ । ପଦ ।

ପୋଖରୀର ଘରପାଖେ ଲଗାଇଲି ଚମ୍ପା ।
ଡାଳଭାଙ୍ଗି ପୁଷ୍ପ ତୋଳେ ଚତୁର ରାଧିକା । ୧ ।

ଏକ ହସ୍ତେ ପାନବଟା ଆନ ହସ୍ତେ ଝରି ।
ଧୀରେ ଧୀରେ ପଥ ଚାଲେ ରାଧିକା ସୁନ୍ଦରୀ । ୨ ।

ପିତା ତ ମୋଗଲ ବେଟା ମାତା ଯେ ବ୍ରାହ୍ମଣୀ,
ହୀନକୁଳେ ଜନ୍ମ ହେଲି ହିନ୍ଦୁ ନ ଖାଏ ପାଣି (୧) ।୩।

ପିତା ଦେଲେ ଜୀବଦାନ ମାତା ଦେଲେ କ୍ଷୀର ।
କହେ ସାଲବେଗ ହୀନ ଜାତିରେ ଫକୀର (୨) ।୪।

(୧) ପ୍ରସ୍ତୁତ ପଦ୍ୟଟି ଅନ୍ୟ ଗୋଟିଏ ଭଜନରେ ରହିଛି । କବି ସାଲବେଗ ହିନ୍ଦୁ ହେବାକୁ ଅତ୍ୟନ୍ତ ବ୍ୟାକୁଳ ଥିବାର ଏଥିରୁ ସୂଚନା ମିଳୁଛି; କିନ୍ତୁ ସେ କାଳର ଜାତିଆଣ ପ୍ରଥା ଅନୁସାରେ ସେ ମୋଗଲ ଲାଲବେଗ ବୀର୍ଯ୍ୟରେ ଜାତ ହୋଇଥିବାରୁ, ପୁରୀର ଧର୍ମଧ୍ୱଜୀ ପଣ୍ଡାମାନେ ତାଙ୍କର ଆଚାର-ବ୍ୟବହାର ଓ ଭକ୍ତିଭାବନା ସତ୍ତ୍ୱେ ତାଙ୍କ ହାତରୁ ଜଳ ସ୍ପର୍ଶ କରୁନଥିଲେ । ତେଣୁ ସାଲବେଗଙ୍କ ପ୍ରାଣରେ ଗଭୀର ଆଘାତ ଲାଗିଥିଲା । ବିଶେଷତଃ ଶ୍ରୀମନ୍ଦିର ଭିତରକୁ ଯାଇ ଆରାଧ୍ୟଦେବ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାର ଅଭିଲାଷ ତାଙ୍କ ହୃଦରେ ରହିଥିଲା । ସେଥିରୁ ବଞ୍ଚିତ ହୋଇଥିବାରୁ ତାଙ୍କର ଭକ୍ତହୃଦୟ ଗଭୀର ଦୁଃଖରେ ଅଭିଭୂତ ହୋଇପଡ଼ିଥିଲା । ତଥାପି ସେ ନିଜ ପକ୍ଷରୁ ସଫେଇ ଦେଇ କହୁଛନ୍ତି—'ମାତା ମୋ ବ୍ରାହ୍ମଣୀ' ଓ 'ମାତା ଦେଲେ କ୍ଷୀର' ।

(୨) ପ୍ରସ୍ତୁତ ଗୀତଟି O. L./536 ସଂଖ୍ୟକ ରାଜ୍ୟ ସଂଗ୍ରହାଳୟସ୍ଥ ପୋଥିରୁ ସଂଗୃହୀତ ହୋଇଛି ।

## ୭୧

ପୁଷ୍ପ ବିମାନେ ଗୋବିନ୍ଦ,
ଚଉପାଶେ ବେଢ଼ିଛନ୍ତି ଅପଛରୀ ବୃନ୍ଦ ॥
ସୁବର୍ଣ୍ଣର ନାବଗୋଟି ରୂପା କେରୁଆଲ ।
ନାବମଙ୍ଗେ ବିଜେ କଲେ ମଦନ ଗୋପାଳ ॥
ବୈଶାଖ ଶୁକ୍ଳ ଅକ୍ଷିତୃତୀୟାର ଦିନ ।
ଚନ୍ଦନଯାତ୍ରାକୁ ବିଜେ ମଦନମୋହନ ॥
ଶଙ୍ଖ ବାଜେ ଘଣ୍ଟା ବାଜେ ବିବିଧ ମହୁରୀ ।
ହିତପାଇଁ କରିଥିଲେ ନରେନ୍ଦ୍ର ପୋଖରୀ ॥
କହେ ସାଲବେଗ ହୀନ ଜାତିରେ ଯବନ ।
ଶ୍ରୀରଙ୍ଗାଚରଣେ ମୋର ରହିଥାଉ ଧ୍ୟାନ ॥ *

*ପ୍ରସ୍ତୁତ ପଦ୍ୟଟି ଡ. କୃଷ୍ଣଚରଣ ସାହୁଙ୍କ ଦ୍ୱାରା ସମ୍ପାଦିତ 'ଶ୍ରୀଜଗନ୍ନାଥ ଲୀଳାମୃତ'ରୁ ସଂଗୃହୀତ ।

# ୭୨

ପ୍ରବେଶ ହୋଇଲ ବଡ଼ଦାଣ୍ଡ,
ଚରଣଧୂଳିରେ ପୂରିଲା ତୁଣ୍ଡ,
ଦାଣ୍ଡରେ ବସିଛୁ କୈବଲ୍ୟ ପସରା ଝଙ୍କଡୋରିଣୀରେ ମନ ତୋଷ,
ଆହେ ଗିମହରି,
ପ୍ରଭୁ ବଡେ କରଅଛ ନୀଳଗିରି,
ପ୍ରଭୁ ଦର୍ଶନ ମାତ୍ରକେ ଯିବ ତରି ।୧।

ଧନ୍ୟ ପୁରୁଷୋତ୍ତମ କ୍ଷେତ୍ରବାସୀ,
ଭାଗ୍ୟ ଥିଲେ ସାଧୁ ସଙ୍ଗେ ମିଶି ।
ଗ୍ରାସ ପୂରାଇଣ କୈବଲ୍ୟ ପାଆନ୍ତି ମିଛେ ବୋଲୁଛନ୍ତି ଏକାଦଶୀ,
ଆହେ······ ···।୨।

ସିଂହଦ୍ୱାରଠାରେ ବେତବାଡ଼ି
ବାଜିଲେ ପାତକ ଯାଏ ଛାଡ଼ି ।
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ସାଧୁଜନମାନେ ଠେଲାଠେଲି,
ଆହେ ·········।୩।

ବାଇଶି ପାବଛୁ ଗଲି ସୁଖେ,
କୈବଲ୍ୟ ବସିଛୁ ବେଢ଼ାପାଖେ ।
ବ୍ରାହ୍ମଣ ଚଣ୍ଡାଳ କ୍ଷତ୍ରୀ ଆଦିବର କୈବଲ୍ୟ ଦିଅନ୍ତି ମୁଖେ ମୁଖେ,
ଆହେ······ ···।୪।

ରୋହିଣୀ କୁଣ୍ଡର ପାଦରଜ,
ସିଂହ ମାଡ଼ି ବସିଅଛୁ ଗଜ ।
ସତେ କି ଜୀବନ ସାଫଲ୍ୟ ଲଭିବ କାକ ପଡ଼ି ହେଲା ଚତୁର୍ଭୁଜ,
ଆହେ······ ······।୫।

ଗରୁଡ଼ ପାଖରେ ରହି ଦେଖ,
କି ଶୋଭା ପାଉଛୁ ପଦ୍ମମୁଖ ।
ହୀରା ନୀଳା ମୋତି ମାଣିକ୍ୟ ଜଳନ୍ତି ହୃଦେ ଲମ୍ବି ଅଛୁ ବ୍ୟାଘ୍ରନଖ,
ଆହେ ·········।୬।

କହେ ସାଲବେଗ ମୂଢ଼ମତି,
ତ୍ରାହି କରିବେ ଶ୍ରୀ ଲକ୍ଷ୍ମୀପତି ।
ଶ୍ରୀରଙ୍ଗାଚରଣେ ପଶୁଛି ଶରଣ ତ୍ରାହିକର ଶାଳଗ୍ରାମ ମୂର୍ତ୍ତି ।।
ଆହେ ... ।୭।*

* O.L./536 ରାଜ୍ୟ ସଂଗ୍ରହାଳୟସ୍ଥ ପୋଥିରୁ ସଂଗୃହୀତ । ପ୍ରସ୍ତୁତ ପଦ୍ୟ ଭାବଧାରାରେ ଲିଖିତ ସାଲବେଗଙ୍କର ଆଉ ଗୋଟିଏ ପଦ୍ୟ ରହିଛି; ମାତ୍ର ଅଳ୍ପ କେତେକ ସ୍ଥାନରେ ପାଠଭେଦ ରହିଛି ।

## ୭୩

ଫୁଲ ତୋଳ ହୋ ନାଗର !*
ଫୁଲ ଭଳେ ହୋ ନାଗର !
ଫୁଲ ଗୋଟି ଫୁଟିଅଛି ଗୋବିନ୍ଦ ଛାମୁର ।।
ପାଣି ଦେଲେ ଫୁଲ ମରଇ,
ପାଣି ଦେଲେ ଫୁଲ ତରଇ ।
ଏମନ୍ତ ବିଷମ ଫୁଲ ମଳେ ବାସ କରଇ ।।
ଫୁଲଗୋଟି ଫୁଟିଅଛି ନାମ ତା ସେବତୀ,
ବେଳ ଜାଣି ଫୁଲ ତୋଳଇ ଚତୁର ଯୁବତୀ ।।
ଫୁଲଗୋଟି ଫୁଟିଅଛି ଉଗର ତୁଣ୍ଡେ,
ଏମନ୍ତ ବିଷମ ଫୁଲ ନ ଲାଗଇ ମୁଣ୍ଡେ ।।
ଫୁଲଗୋଟି ଫୁଟିଅଛି ନାମ ତାର ମଲ୍ଲୀ,
ଏମନ୍ତ ବିଷମ ଫୁଲ ନ ପୁଛଇ ମାଳୀ ।।
ଫୁଲଗୋଟି ଫୁଟିଅଛି ନାମ ତାର ଗେଣ୍ଡୁ,
ପ୍ରଭୁଙ୍କ ଛାମୁରେ ଫୁଲ ନଟ୍ୟେ ନେଇ ମଣ୍ଡୁ ।।
କହେ ସାଲବେଗ ହୀନ ଫୁଲ ରସବାଣୀ ।
ପଣ୍ଡିତଙ୍କୁ ଯୁଗେ ଯୁଗେ, ମୂରୁଖ ନ ଜାଣି ।।

* ପଦ୍ୟଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ । ଏଠାରେ କବି ଫୁଲ ଅର୍ଥାତ୍ ଜୀବାତ୍ମାର ଆବିର୍ଭାବ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ଜୀବ ଶରୀରରେ ଫୁଲରୂପେ ଶୋଭା ପାଉଛି । ଜ୍ଞାନୀବ୍ୟକ୍ତିମାନେ କେବଳ ଫୁଲର ସଦ୍‌ବ୍ୟବହାର ଅର୍ଥାତ୍ ପୃଥିବୀରେ ଜୀବର

କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ ଥାନ୍ତି । ଈଶ୍ବର ଯେଉଁ ଉଦ୍ଦେଶ୍ୟରେ ଜୀବାତ୍ମାକୁ ଶରୀର ମଧ୍ୟରେ ପ୍ରବେଶ କରାଇଛନ୍ତି, ତା'ର ଗହନ ତତ୍ତ୍ବ ମୂର୍ଖଲୋକମାନେ ଅବଗତ ହୋଇ ପାରନ୍ତି ନାହିଁ । ଭକ୍ତ ସାଲବେଗ ଜୀବନର ରହସ୍ୟ ସମ୍ବନ୍ଧରେ ଅର୍ଥାତ୍ ନଶ୍ବର ଶରୀରର କର୍ତ୍ତବ୍ୟ ସମ୍ବନ୍ଧରେ ଅବଗତ ହୋଇଛନ୍ତି ।

## ୭୪

ବହନ ଯିବି, କାଳିଆ (୧) ବଦନ ଦେଖିବି
ସିଂହ ଦୁଆରପାଳ,
ଯେବେ କରିବ ଗୋଳ,
ପେଲି ପଶିବି ନ ଘୁଞ୍ଚିବି !
ବାଇଶି ପାବଚ୍ଛ ଧୂଳି,
ମୋ ଅଙ୍ଗେ ହେବ ବୋଳି ।
କୈବଲ୍ୟ କା ବୋଲେ (୨) ମାଗିବି !
ଧନ୍ୟ କଳପ ବଟ,
ଧନ୍ୟ କଳା ଗ୍ରମ୍ବେଟ ।
ଗରୁଡ଼ ପଛରେ ଭେଟିବି (୩) !
ଜଗମୋହନ ଘରେ,
ସାଧୁଙ୍କ ସଙ୍ଗତରେ (୪) ।
ତୋ ନାମ ହୃଦରେ ଜପିବି !
କହେ ସାଲବେଗ ହୀନ,
ଜାତରେ ମୁଁ ଯବନ,
ଚରଣେ ଶରଣ ପଶିବି (୫) ।।*

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟସ୍ଥ ପୋଥି O.L./1740 ରୁ ସଂଗୃହୀତ । ପଦ୍ୟଟିର ଭାବଧାରାରୁ ଜଣାଯାଏ ଯେ, ସାଲବେଗଙ୍କୁ ଶ୍ରୀମନ୍ଦିର ଭିତରକୁ ଯିବାଲାଗି ଅନୁମତି ମିଳି ନ ଥିଲା; ତେଣୁ ତାଙ୍କ ମନରେ 'ଧସାଇପଶିବା' ଲାଗି ଆଗ୍ରହ ଜାତ ହୋଇଥିଲା ।

(୧) 'ପଙ୍କଜଡୋଳା'—ପାଠାନ୍ତର । (୨) 'କୈବଲ୍ୟ କବଳେ ଭୁଞ୍ଜିବି'—ପାଠାନ୍ତର । ୩) ଏ ପାଦଟି ବଦଳରେ 'ଯୋଡ଼ା ବେତ ରୂପ ଦେଖିବି' ପାଠାନ୍ତର ରହିଛି । (୪) 'ପଶିବି ମୁଁ ବଧିରେ'—ପାଠଭେଦ ରହିଛି । (୫) 'ପ୍ରଭୁଙ୍କୁ ଦର୍ଶନ କରିବି'—ପାଠଭେଦ ।

## ୭୫

ବାଘ ମାଉଲରେ, ନିକୁଞ୍ଜ-ବନରେ ।
ବିରହୀ ହୋଇଛୁ ବାଘ ନ ପାଇ ଅଧାରେ ଗୋ ॥
ଯେ ଯାଇ ଯମୁନା ଜଳେ ଜାଉ ତାର ନାହିଁ ।
କାଖ କରି ନେଇ ବାଘ ନିକୁଞ୍ଜେ ପଶଇ ଗୋ ॥
ବାଘଗୋଟି ଛୁଆଳିଆ ବାଟ ଜଗିଥାଇ ଗୋ ।
ଗୋପସ୍ତ୍ରିଙ୍କି ଦେଖିଲେ ସେ ଢେଉଁଣ ପଶଇ ଗୋ ॥
ବାଘ ନଖ ଚନ୍ଦ୍ର ଜ୍ୟୋତି ବିକଟ କରି ଆଁ ଗୋ ।
ଯେ ପିବ ଯମୁନା ଜଳ ବଦାଇବ ହୁଆ ଗୋ ॥
ଅଧର ସୁନ୍ଦର ବାଘ ଦେହ ଯାକ କଳା ଗୋ ।
କପୋଳେ ଚନ୍ଦନ ବିନ୍ଦୁ ଆଖି ଚକାଡୋଳା ଗୋ ॥
କାହୁଁ ଏ ଅଇଲା ବାଘ ଦେଖିଲତ ନାହିଁ ଗୋ ।
କହେ ସାଲବେଗ ବାଘ ନାମଟି କହ୍ନାଇ ଗୋ ॥*

---

* ପ୍ରସ୍ତୁତ ପଦ୍ୟଟି ବଡ଼ମ୍ବା ରାଜବାଟୀରୁ ସଂଗୃହୀତ ପୋଥିରେ ମିଳେ । ଶ୍ରୀରାଧାଙ୍କ ସାନ୍ନିଧ୍ୟ ଲଭ ପାଇଁ ଶ୍ରୀକୃଷ୍ଣ କାଟରା, ଶଙ୍ଖାରି, ନାବିକ, ମାଲୁଣୀ, ନାପିତୁଣୀ ପ୍ରଭୃତି ବେଶ ଧରିଥିଲେ । ସେହି ବାଘବେଶରେ ସେ ମଧ୍ୟ ଗୋପକାମିନୀଙ୍କୁ ମୋହିତ କରିଥିଲେ ।

## ୭୬

ବାଛୁ କେ ନାମ ଦେଲା ଦଇତ୍ୟାରି, ଦୟାନିଧି !*
ଦଇତ୍ୟାରି ଦୟାନିଧି ଦୟାଳୁ ରାମହରି,
ନିର୍ଦ୍ଦୟ କର୍ମୀ ହେଲ ନରବଧୀ ।୧।

ଭଜିଣ ଯେ ପଦାମ୍ବୁଜ,
ଶୀଘ୍ରେ ତରିଗଲା ଗଜ,
କାହୁଁ ସ୍ଫୁରିଲା ତାର ବଳବୁଦ୍ଧି ।୨।

ଚିନ୍ତିଲା ପ୍ରହଲ୍ଲାଦ,
ଭକ୍ତ ପାଇଁ ବିଷାଦ,
ସ୍ତମ୍ଭରୁ ବାହାରି ତା ପିତା ବଧି ।୩।

ଗୋପେ ରକ୍ଷି ଗୋକୁଳ,
ଗିଳିଲ ଦାବାନଳ,
କଲ ଗୋପୀଙ୍କ କାମନା ସିଦ୍ଧି ।୪।
କହେ ସାଲବେଗ ହୀନ,
ଏ ଅଟେ ମୋ ନିବେଦନ,
ସେ ପାଦେ ଚିତ୍ତ ରହୁ ନିରବଧି ।୫।**

---

* ପଦ୍ୟଟି ଜଗନ୍ନାଥ ପୁସ୍ତକାଳୟ, କଟକଦ୍ୱାରା ପ୍ରକାଶିତ 'ଭଜନ ସର୍ବସାର' ପୁସ୍ତକରୁ ସଂଗୃହୀତ ।

** ଭକ୍ତକବି ଏଠାରେ ପ୍ରଭୁଙ୍କୁ ଦୈତ୍ୟାରି, ଦୟାନିଧି ଓ ଦୟାଳୁ ଆଦି ଗୁଣରେ ବିଭୂଷିତ କରିବା ସଙ୍ଗେ ସଙ୍ଗେ ଭିନ୍ନ ଭିନ୍ନ ଅବତାରରେ ପତିତମାନଙ୍କୁ ଉଦ୍ଧାର କରିଥିବା ଓ ଆଦର୍ଶ ଭକ୍ତର ମନୋବାଞ୍ଛା ପୂରଣ କରିଥିବାର କେତୋଟି ଦୃଷ୍ଟାନ୍ତ ଦେଇଛନ୍ତି । ନିଜକୁ ଭକ୍ତ ଅଥବା ପତିତ ଯେଉଁ ଦୃଷ୍ଟିରେ ଦେଖିଲେ ମଧ୍ୟ ସେ ପ୍ରଭୁଙ୍କ କରୁଣାର ଅଧିକାରୀ ବୋଲି ମନେକରି ପାଦପଦ୍ମରେ ଆଶ୍ରୟ ଲଭି ନିବେଦନ କରିଛନ୍ତି ।

## ୭୭

ବାଟ ଛାଡ଼ ସୁଘଟ ନାଗର,
ଯମୁନାକୁ ମୁହିଁ ଯିବି ପାଣିକି ।
ବାଟ ପାଇଁ ଯେବେ ଲଟ ଲଗାଇଛ
ପ୍ରତିବନ୍ଧା ଦେବି ମଥାମଣିକି ।।
ମଥାରେ ମହୁକ ପଥରେ ଗମନ,
ବାଟ ଓଗାଳୁଛ କାହିଁପାଇଁ କି ?
ଶାଶୁ ଗାଳିଦେବ ନଣନ୍ଦ ଚଳିବ
ବୋଲିବେ ମୋ ବନ୍ଧୁ ଦୋଷରୁଣୀ କି ।।
ମୁହିଁ ବୃଷଭାନୁ ନୃପତିର ସୁତା
ତୋହ୍ନ ପରି ମୋତେ ମଣିଅଛୁ କି ?
ଧରୁଛୁ ଅଞ୍ଚଳ କରୁଛୁ କଞ୍ଚାଳ
ଡର ନାହିଁ ପର ଭୁଆସୁଣୀକି ।।

ଏହି ଗୋପପୁରେ କଂସ ରାଜା ଡରେ
ସେ କଥା ତୋହର ମନେ ନାହିଁ କି ?
ଆରେ ଗିରଚୋରା କେତେ କରୁ ତରା
ତୋର ଯୋଗୁ ନାଶ ଯିବ ମୁହିଁ କି ?
ରାଧାବାଣୀ ଶୁଣି ବୋଲେ ବେଣୁପାଣି
ନିଷ୍ଠୁର ବଚନ କହୁ ଏଡ଼ିକି ।
କହେ ସାଲବେଗ ଶୁଣ ଠାକୁରାଣୀ
ନିରାଶ ନକର କମ୍ବୁପାଣିଙ୍କି ।।*

---

* ରଚନାଟି ଶ୍ରୀନିବାସ ରଥଙ୍କଠାରେ ସଂରକ୍ଷିତ କୁଜଙ୍ଗ ଅଞ୍ଚଳର ଖଣ୍ଡିଏ ତାଳ-ପତ୍ରରେ ରହିଛି; କିନ୍ତୁ ଏହି ରଚନାର ପ୍ରାୟ ଅବିକଳ ଗୋଟିଏ ଗୀତ 'ବନମାଳୀ ପଦ୍ୟାବଳୀ'ରେ ସଂଗୃହୀତ ହୋଇଛି । ଖୁବ୍ ସମ୍ଭବତଃ ପରବର୍ତ୍ତୀ କବି ବନମାଳୀ ସାଲବେଗଙ୍କ ରଚନାଟିକୁ ସାମାନ୍ୟ ପରିବର୍ତ୍ତନ କରି ନିଜ ରଚନାରେ ଗ୍ରହଣ କରିଛନ୍ତି କିମ୍ବା 'ବନମାଳୀ ପଦ୍ୟାବଳୀ'ର ସଙ୍କଳକଙ୍କ ପ୍ରମାଦ ଯୋଗୁଁ ଏପରି ଘଟିଛି । ସାଲବେଗଙ୍କ କବିତା ଲୋକସମାଜରେ ଅପ୍ରଚଳିତ ହୋଇଯିବାରୁ କୌଣସି ଭକ୍ତ-ଗାୟକ ଭଣିତାରେ ବନମାଳୀଙ୍କ ନାମ ଲଗାଇ ଗାନ କରିଥିବା ଅସମ୍ଭବ ନୁହେଁ ।

## ୭୮

ବେଶ (୧) ହୋଇ ଚାଲଇ ବୃଷଭାନୁନନ୍ଦିନୀ,
ଗଜଦନ୍ତ ପଲଙ୍କେ ବସି ଗଜଗାମିନୀ ।।
ଯମୁନାରୁ ନୀର ମୁଁ ଆସୁଥିଲି ଘେନି (୨)
ସନ୍ଧ୍ୟାବେଳେ ନଇଲେ କମ୍ପାଇ ବେଣୁପାଣି ।
କେଉଁ ନାଗରୀବର ରଖିଲା କାହା ପୁର
କେଡ଼େ ଦଣ୍ଡ ଦେଲେ ସେ ମୁରଲୀପାଣି ।।
କପଟ ନିନ୍ଦା କଲେ ଦୂରଦେଶେ ରହିଲେ
ବନ୍ଦୀ ରଖିଲା ତାଙ୍କୁ କେଉଁ କାମିନୀ ।
ବୋଲେ ସାଲବେଗ ହୀନ (୩) ଜାତିରେ ଯବନ
ରାଧାକୃଷ୍ଣପାଦେ ଏ ରସେ ଭଣି ।।*

---

(୧) ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ Or MS/143 ପୋଥିରୁ ସଂଗୃହୀତ ।

(୨) 'ଆଣୁଥିଲି ଘେନି' ମୂଳପାଠ; କିନ୍ତୁ 'ଆଯୁଥିଲି ଘେନି' ହେବା ସମୀଚୀନ ।
(୩) 'ସ୍ୱନ' ଶବ୍ଦଟି ମୂଳପାଠରେ ନାହିଁ ।
* ଶ୍ରୀକୃଷ୍ଣଙ୍କ ମଥୁରାଗମନପରେ ବିରହିଣୀ ଶ୍ରୀରାଧାଙ୍କର ଏହା ପ୍ରଳାପପୂର୍ଣ୍ଣ ଅନୁଚିନ୍ତା ।

## ୭୯

ବାଏ୍ (୧) ସଖିଗଣ ବିବିଧ ବାଜଣ (୨)
ବାଏ୍ ଅତି ଅନୁପମରେ ।
ମୃଦଙ୍ଗ ଟଙ୍ଗ (୩) ଉପାଙ୍ଗ ସୁମଧୁର
ସପ୍ତସ୍ୱର ତାନ ଗ୍ରାମରେ ।।
କୋଇ ନାଚତ ତାଲ ବଜାୟତ
ନାଚତ ଶ୍ୟାମା ଶ୍ୟାମରେ ।
ଆନନ୍ଦେ ତରଙ୍ଗିତ ବହୁତ ଯମୁନା
ଏ ରୂପ ସଖି ସୁଖଧାମରେ ।।
ନବନାଗର କାହ୍ନ ରାଧା ନବତରୁଣୀ
ନବଜଲଧର କଏ୍ ଶୋଭିତ ଦାମିନୀ ।
ମୋହିତ ନାରଦ ସୁର ନର ମୁନି
ମୋହିତ ବ୍ରହ୍ମା ଶଙ୍କରେ ।
ଗୁନ୍ଦ କରଣ ହି ବିକଶି କୁମୁଦିନୀ
ଶୋଭିତ ଶ୍ୟାମ-ସରୋବରରେ ।।
ହଂସ ସାରସ ରବ କି ତାଣ୍ଡବ
ଡାହୁକ ଶବଦ ମନୋହରେ ।
ସାଲବେଗ ପ୍ରିୟ ନିରଖି ଲବନୀ (୪)
ବରଣୀ ନୋହି କବୁ ହୋୟରେ ।।*

---

(୧) ବାଏ୍—ବଜାଏ । (୨) ବାଜଣ—ବାଦ୍ୟ (୩) ଟଙ୍ଗ—ଖୁବ୍ ସମ୍ଭବତଃ ଖୁଙ୍ଗ୍ ନାମକ ବାଦ୍ୟବିଶେଷ । କବି ଏଠାରେ 'ଇ' ଅକ୍ଷରର ଯମକ ଦେଖାଇବାକୁ ଖୁଙ୍ଗ୍ ଶବ୍ଦ ସ୍ଥାନରେ ଟଙ୍ଗ ପ୍ରୟୋଗ କରିଛନ୍ତି । (୪) ଲବନୀ—ଲାବଣ୍ୟ, ସୌନ୍ଦର୍ଯ୍ୟ ।

* କଲିକାଟା ବଙ୍ଗୀୟ ସାହିତ୍ୟ ପରିଷଦଦ୍ୱାରା ପ୍ରକାଶିତ, ଆଲୋଚକ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କଦ୍ୱାରା ସମ୍ପାଦିତ 'ବୈଷ୍ଣବ ପଦ୍ୟାବଳୀ' ପୃଷ୍ଠା ୧୦୭୭ରୁ ଉଦ୍ଧୃତ । ଶ୍ରୀ ପଦ୍ମଚରଣ ପଣ୍ଡାଙ୍କ ଆନୁକୂଲ୍ୟରେ ସଂଗୃହୀତ ।

୮୦

ବିମ୍ବାଧର !
ତୋ ରୂପକୁ ଗ୍ରନ୍ଥ ନୁହେଁ ସରି, ରେ ବିମ୍ବାଧର !
କାଲି ଦେଖିଥିଲି ସ୍ନାନବେଳେ
ତନୁ (୧) ଜରଜର କାମଶରେ ।
ଝୀନବାସ ଫୁଟି କୁଚ ଦିଶୁଥିଲା ମୂର୍ଚ୍ଛାଗତ (୨) ଗଲି ସେତେବେଳେ ।।
କାଳିକ ଯାକ (୩) ମୁଁ ଡରି ଡରି,
ସେବା କରିଥିଲି ଅନୁସରି,
ଅନେକ ବିନୟ କରିଣ କହୁଛି ବେକକୁ ଆଣିମ ଗ୍ରୁପସରି ।।
ଗ୍ରନ୍ଥନୀ ଗ୍ରନ୍ଥ ଯେ ପଡ଼ିଥିଲା,
ଝୀନ ବାସଆଡ଼େ ଜଡ଼ିଗଲା,
ସୁବର୍ଣ୍ଣ କୁମ୍ଭରେ ଅମୃତ ପୂରାଇ ଢାଙ୍କି ଦେଲା ପ୍ରାୟେ ଦିଶୁଥିଲା ।।
କହେ ସାଲବେଗ କାଢ଼ି ଧ୍ୟାନ (୪),
ଏହୁ କଥା (୫) ମୋର ନିବେଦନ,
କାଲି ଦର୍ଶନରେ କ୍ଷଣେକ ମାତ୍ରକେ ତକା ଚରଣରେ ରହୁ ମନ ।। *

---

(୧) 'ତନୁ ଜ୍ୱର ଜ୍ୱର'—ପୋଥିପାଠ । (୨) 'ମୂର୍ଚ୍ଛାଗତ'—ପୋଥିପାଠ । (୩) 'କାଳିକ ଯାକଇ'—ପୋଥିପାଠ । (୪) 'କାଢ଼ରେ ଧ୍ୟାନ'—ପୋଥିପାଠ । (୫) 'ଏକଥା'—ପୋଥିପାଠ । * ଶ୍ରୀନିବାସ ରଥଙ୍କ ସଂଗ୍ରହରୁ ଗୃହୀତ ।

୮୧

ବୃନ୍ଦାବନେ ବଂଶୀ କେ ବଜାଇଲା, ଗୋ ମିତ !
ଏକା ରାଧା ରାଧା ନାମ ଗାଇଲା ଗୋ !
ଛୁଡ଼ିଲା ସେ ଛନ୍ଦ (୧) ଗଣ୍ଠି   ନୀବିବନ୍ଧ ଗଲା ଫିଟି
ବସନ ପିନ୍ଧନ୍ତେ ଭର ନୋହିଲା, ଗୋ ମିତ !
ପାଷାଣ ହୋଇଲା ପାଣି   ଯମୁନା ବହେ ଉଜାଣି
ଝରି ଝରି ମକରନ୍ଦ ବହିଲା, ଗୋ ମିତ !
ମୁନିଙ୍କ ଆସନ (୨) ଟଳି   ରସରେ ପଡ଼ିଲେ ମିଳି
ବ୍ୟାଘ୍ର ପଛେ କୁରଙ୍ଗୀ ଗୋଡ଼ାଇଲା, ଗୋ ମିତ !

ଶୁଷ୍କ ତରୁମାନେ ଥିଲେ ଧ୍ୱନି ଶୁଣି ପଲ୍ଲବିଲେ
ପବନ ଅକାତ ଚଉ ମୋହିଲା, ଗୋ ମିତ !
କହେ ସାଲବେଗ ହୀନ ଏହି ମୋର ନିବେଦନ
ରାଧାକୃଷ୍ଣ ପାଦେ ଚଉ ରହିଲା, ଗୋ ମିତ !*

(୧) ଛୁଦ୍ର—କ୍ଷୁଦ୍ର ଅର୍ଥରେ ବ୍ୟବହୃତ । ସ୍ତ୍ରୀମାନେ, ବିଶେଷତଃ ଓଡ଼ିଆଣୀମାନେ ଲୁଗା ପିନ୍ଧିଲାବେଳେ ଗୋଟିଏ ଗଣ୍ଠି ଦେଇ ପିନ୍ଧିଥାଆନ୍ତି, ଅନ୍ୟଥା ଲୁଗା ବେଳେବେଳେ ଖସିଯିବାର ସମ୍ଭାବନା ରହିଛି । ସେହି ଗଣ୍ଠିକୁ ସଂସ୍କୃତ ସାହିତ୍ୟରେ 'ନୀବିବନ୍ଧ' କୁହାଯାଏ ଏବଂ ସଂସ୍କୃତ ସାହିତ୍ୟରେ ନାୟିକାର ନୀବିବନ୍ଧର ବର୍ଣ୍ଣନା ଅନେକ ଥିବାର ଦେଖାଯାଏ ।

(୨) 'ଆଶ୍ରମ' କେତେକ ପାଠରେ ଦେଖାଯାଏ; କିନ୍ତୁ ଆଶ୍ରମ ଟଳିବା ଅପେକ୍ଷା 'ଆସନ ଟଳିବା' ପ୍ରୟୋଗ ଅଧିକ ଯୁକ୍ତିସଙ୍ଗତ ଏବଂ 'ଆସନ ଟଳିବା' ଅର୍ଥାତ୍ ଧ୍ୟାନ ଭଙ୍ଗ ହେବା ଓଡ଼ିଆରେ ଗୋଟିଏ ପ୍ରବଚନ ।

* ପ୍ରସ୍ତୁତ ଗୀତଟିର ଛାୟାରୂପ ଅନ୍ୟ ଗୋଟିଏ ପରବର୍ତ୍ତୀ ଗୀତରେ ପଡ଼ିଥିବାର ଦେଖାଯାଏ ।

## ୮୨

ବୃନ୍ଦାବନେ ବଂଶୀ କେ ବଜାଇଲା, ଗୋ ମିତ !
ଅଚଳିତ ଦେହ ଆମ୍ଭର ହୋଇଲା ।

ପାଷାଣ ହୋଇଲା ପାଣି ଯମୁନା ବହେ ଉଜାଣି
ପବନ ଅକାତ ହୋଇ ରହିଲା ।
ଶୁଷ୍କ ତରୁମାନେ ଥିଲେ ଧ୍ୱନି ଶୁଣି ପଲ୍ଲବିଲେ
ବ୍ୟାଘ୍ର ପଛେ କୁରଙ୍ଗୀ ଗୋଡ଼ାଇଲା, ଗୋ ମିତ ! ୧ ।
ମୁନିଙ୍କ ଆସନ (୧) ଟଳି ରସ ନ ପଡ଼ିଲା ଗଳି
ଝରଝର ମକରନ୍ଦ ବହିଲା ।
ଶୁନ୍ୟେ ବାଜେ କ୍ଷୁଦ୍ର ଘଣ୍ଟି ନୀବିବନ୍ଧ ଗଲା ଫିଟି
ବସନ ପିନ୍ଧିତେ ତର ନୋହିଲା, ଗୋ ମିତ ।୨।
ପୁଷ୍ପ ଚୁମ୍ବିଲେ ଭ୍ରମର ନିଶ୍ଚଳ କରି ମନ୍ଦର
ଧେନୁ ମୁଖେ ତୃଣ ଗୁପି ରହିଲା ।
ବାଉଁଶ ଖଣ୍ଡିଏ ବାଛି କାହିଁ ସେ ସଜାଡ଼ିଅଛି
ଏକାଇ (୨) ରାଧା ରାଧା ରାଇଲା, ଗୋ ମିତ ।୩।

କହେ ସାଲବେଗ ହୀନ ଜାତିରେ ମୁହିଁ ଯବନ (୩)
କୃଷ୍ଣଚରଣେ ଚିତ୍ତ ରହିଲା ଗୋ ମିତ ।୪। *

(୧) ଆସନ ଟଳିବା ପ୍ରୟୋଗ ଅନ୍ୟତ୍ର ଦେଖାଯାଏ; କିନ୍ତୁ ଏଠାରେ 'ଟାଳି'ର ପ୍ରୟୋଗ କରାଯାଇଛି । ଅବଶ୍ୟ 'ରସ ନ ପଡ଼ିଲା ଗଳି' ଓ 'ଟଗରଟିର ମକରନ୍ଦ ବହିଲା' ଦୁଇଟିଯାକ ପରସ୍ପରବିରୋଧୀ ପରିକଳ୍ପନା ।

(୨) ଏକଇ—ଏକାଧାରରେ; ଅର୍ଥାତ୍ ଏକଲୟରେ ।

(୩) 'ଯବନ' ପାଠ ସ୍ଥାନରେ 'ଦମନ' ପାଠ ଅନ୍ୟତ୍ର ଦେଖାଯାଏ ।

* ପ୍ରସ୍ତୁତ ଗୀତର ଆଂଶିକ ବ୍ୟବଧାନରେ ଆଉ ଗୋଟିଏ ଗୀତ ସାଲବେଗଙ୍କର ରହିଛି; କିନ୍ତୁ ଏହି ଗୀତରେ ତୃତୀୟ ପଦଟି ସମ୍ପୂର୍ଣ୍ଣ ନୂତନ ପରିକଳ୍ପନା ।

୮୩

ବୋଲ ମୁଖେ ହରି ରାଧେ
(୧) କୃଷ୍ଣ କୃଷ୍ଣ ରାମ ରାମ ।
ଭଜନ୍ତି ମୁନିଜନ
ବ୍ରହ୍ମା ଆଦି ସୁରଗଣ (୨) ॥
ଯୁଗେ ଯୁଗେ ଯେ ଚରଣ
ଦୁଃଖ ଦାରିଦ୍ର୍ୟ ଭଞ୍ଜନ ।
ଭବ ସଙ୍କଟ ତାରଣ
ଭକ୍ତଜନ ଉଦ୍ଧାରଣ (୩) ॥
ଜଳଧି (୪) ଶେଷଶୟନ
ପୂର୍ଣ୍ଣବ୍ରହ୍ମ ନାରାୟଣ ।
ଆଶ କରିଅଛି ମନ (୫)
ସେ ପଦ୍ମପାଦ ଶରଣ ॥
ମୂଢ଼ ସାଲବେଗ ହୀନ ॥*

(୧) 'କୃଷ୍ଣ ରାମ' ମୂଳପାଠ । (୨) 'ବ୍ରହ୍ମା ଆଦି ମୁନିଗଣେ' ମୂଳପାଠ; କିନ୍ତୁ ପ୍ରଥମ ଚରଣରେ ମୁନିଜନ ଥିବାରୁ ଏଠାରେ 'ସୁରଗଣ' ପାଠ ସମୀଚୀନ । (୩) 'ଭକ୍ତ'...ବ୍ୟତୀତ ଆଉ ଅକ୍ଷର ମୂଳପାଠରେ ନଥିବାରୁ 'ଭକ୍ତ ଜନ ଉଦ୍ଧାରଣ' ସଂଯୋଗ କରାଯାଇଛି ।

(୪) ଏହି ପାଦଟି ମୂଳପାଠରେ ନାହିଁ । ଅର୍ଥସଙ୍ଗତ ଦୃଷ୍ଟିରୁ ଏହି ପାଦଟି ଯୋଗ-କରାଯାଇଛି । (୬) 'ଅଣ କରିଅଛି ମନେ ହେ' ମୂଳପାଠରେ ରହିଛି ।

* ପ୍ରସ୍ତୁତ ଭଜନଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ହୋଇଛି । ସଂଗ୍ରାହକ ଶ୍ରୀ ରଥ ଏହି ଭଜନଟିକୁ କଟକ ଜିଲାର କୁଜଙ୍ଗ ଅଞ୍ଚଳରୁ ସଂଗ୍ରହ କରିଥିବାର ଜଣାଯାଏ । ସାଲବେଗଙ୍କ ଭଜନ ଓଡ଼ିଶାର ସର୍ବତ୍ର ଉପଲବ୍ଧ ହେଉଥିବାର ଏହା ପ୍ରକୃଷ୍ଟ ପ୍ରମାଣ । ଏହି ଭଜନଟି ଭକ୍ତକବିଙ୍କ ନାମସ୍ମରଣ ରୂପକ ଭଜନ ଏବଂ ତାଙ୍କର ପରିଣତ ବୟସର ରଚନା ବୋଲି ମନେହୁଏ ।

## ୮୪

ବୃନ୍ଦାବନେ ରାହାସ ଲୀଳା,
ଦେଖି ମୋ ଚିତ୍ତ ହୋଇଲା ଭୋଳା ।।

ବେଣୁ ବୀଣା ତାଳ ମୃଦଙ୍ଗ ଶବଦେ
ରାହାସ ଉତ୍ସବ (୧) ସୁବେଶ ଦିଶା ।
(୨) ଗାୟନ ବାୟନ ଶୁଭେ ଶଙ୍ଖଧ୍ୱନି,
ବୃନ୍ଦାବନେ ପଶି ହୋଇଲି ଭୋଳା ।।

ଷୋଳସସ୍ର ବୃନ୍ଦ (୩) ମଧ୍ୟରେ ଗୋବିନ୍ଦ,
ମଦନମୋହନ ବେଶ ଚତୁରା ।
ବାମରେ ରାଧିକା ଦକ୍ଷିଣେ ଦୂତିକା
ମଧ୍ୟରେ ନାଚନ୍ତି ନନ୍ଦର ବଳା ।।

ନାନା କୁସୁମରେ ଚୂଳ ବାନ୍ଧିଅଛି
ଟଗର ତଗରଟ କୁନ୍ଦ ଦିଶା ।
ମନମଥ ବେଶ କହି ନ ହୋଇ, (୪)
ଗୁହିଁବା ଛଟକେ ସତିଲ ପରା ।।

ବଂଶୀଧ୍ୱନି ଶୁଣି ଯମୁନା ଉଜାଣି,
ପାଷାଣ ତରଳି ବହିପଡ଼ିଲା ।
କୁଳସ୍ତ୍ରୀ ସର୍ବ କୁଳଲଜ୍ଜା ଉପେକ୍ଷିଲେ
ତୃଣ ଛାଡ଼ି ମୃଗ ଧାଇଁ ଆଇଲା ।।

ବାଙ୍କେ ବାଙ୍କେ ଗୁନ୍ଥି (୫) ମୂରଲୀ ବଜାଇ
ନବୀନ ଗୋପୀଙ୍କ ଚଉଦ୍ୱେରୀ ।
କହେ ସାଲବେଗ ମୂଢ଼ ଅଜ୍ଞାନ
ବୃନ୍ଦାବନ ଭେଗ୍ୟ ନୋହିଲା ପରି ॥*

(୧) 'ବେଶ'—ପୋଥିପାଠ; ତା'ଫଳରେ ଛନ୍ଦ ରହୁନାହିଁ । (୩) ଷୋଳ ସହସ୍ର ଗୋପୀବୃନ୍ଦ ଅର୍ଥରେ କେବଳ ଛନ୍ଦଭଙ୍ଗ ନହେବା ପାଇଁ କବି 'ଷୋଳସସ୍ର ବୃନ୍ଦ' ବୋଲି ଉଲ୍ଲେଖ କରିଛନ୍ତି । (୪) 'ମଲ୍ଲୀପରି' ପୋଥିପାଠ; ଯା' ଫଳରେ ଅର୍ଥ ସୁସ୍ପଷ୍ଟ ହେଉନାହିଁ । (୫)'ହୋଇ' ପୋଥିପାଠ; ମାତ୍ର 'ଗୁନ୍ଥି' ହେଲେ ଅର୍ଥଚମତ୍କାରିତା ସୁସ୍ପଷ୍ଟ ହୁଏ ।

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L/1789ରୁ ସଂଗୃହୀତ ।

## ୮୫

ବଂଶୀ କଲା ପ୍ରମାଦ ଗୋ, ମୁରଲୀନାଦ (୧) ॥
କେ ଜାଣୁ କଲା ତାକୁ କେ ଆଣିଲା ଗୋପକୁ,
ଶଲ ହେଲା କୁଳକୁ, ଆମ୍ଭମାନଙ୍କୁ ଗୋ ।୧।
କଦମ୍ବ ମୂଳେ ରହି, ରଙ୍ଗେ ମୁରଲୀ ବାଇ,
ଚିତ୍ତ ନେଲା ଶ୍ୟାମରାଇ ବଂଶୀ ବଜାଇ ଗୋ ।୨।
ମୁରଲୀ ହେଲା ଶଲ (୨), ଲଜ୍ଜାରୁ ମୁକୁଳ ଭଲ (୩),
କିଛି ନ ବୋଲ ଗୁଲ, ଆଉ ନ ବୋଲ ଗୋ ।୩।
ଜଳ ଭିତରେ ପଶି, ଗୁନ୍ଥିଲେ ଶୁକ୍ଳକେଶୀ,
ମନକୁ ନେଲେ ତୋଷି, ସେ ଅଳପ ହସି ଗୋ ।୪।
ଦୂତୀ ବୋଲଇ ସହି, ଯିବି ମୁଁ ତୁମ୍ଭ ପାଇଁ
ଆଣିମି (୪) କୃଷ୍ଣ ଯାଇ ହୋଇ ବିନୋଦୀ ଗୋ ।୫।
ଶୀଘ୍ରେ ଚଳିଲେ ଦୂତୀ, ମିଳିଲେ କୃଷ୍ଣ କତି,
ସାଲବେଗର ମତି, ରହୁ କୀରତି ଗୋ ।୬।

(୧) ପ୍ରସ୍ତୁତ ଗୀତଟି ରାଜ୍ୟ ସଂଗ୍ରହାଳୟ ପୋଥି O. L /740ରୁ ସଂଗୃହୀତ । (୨) ଶଲ—'ଶଲ୍ୟ' ଶବ୍ଦର ଦେଶଜ ପ୍ରୟୋଗ । (୩) ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନି ଶୁଣି ଗୋପୀମାନେ ଉଚ୍ଛନ୍ନ ହୋଇ ବୃନ୍ଦାବନକୁ ଧାଇଁବାରେ ସେମାନେ ପରିବାରବର୍ଗଙ୍କଦ୍ୱାରା ଲଜ୍ଜିତା

ହେଉଥିଲେ । ସେହି ଲଜ୍ଜାଜନକ ପରିସ୍ଥିତି ଅପେକ୍ଷା ମୃତ୍ୟୁ ଅଧିକ ଶ୍ରେୟସ୍କର ବୋଲି ଶ୍ରୀରାଧା ଦୂତୀ ଆଗରେ ନିବେଦନ କରିଛନ୍ତି । (୪) 'କୃଷ୍ଣଚନ୍ଦ୍ରଙ୍କୁ କାହି ବିଜେ କରାଇ' ବୋଲି ଅନ୍ୟାନ୍ୟ ପାଠ ରହିଛି ।

## ୮୭

ବଂଶୀ ଗୋ, କୃଷ୍ଣ କାହୁଁ ଆଣିଲେ !
ନନ୍ଦର ନନ୍ଦନ ମୋ ପ୍ରାଣ ନେଲେ ! ବଂଶୀ ଗୋ···

ଆଗୋ, କେତେ ମ୍ନିବାସିଣି ନାହାନ୍ତି ଗ୍ରାମ,
କେମନ୍ତେ ଜାଣିଲେ ମୋହର ନାମ !
ମୁଁହି କୁଳବଧୂ ଅବଳା ନାରୀ,
ବଂଶୀ ହିନା ମୋର ହେଲା ଭଗାରି ! ବଂଶୀ ଗୋ ।୧।

ଆଗୋ, ଆଜ ମୁଁ ସ୍ୱପନେ ଦେଖିଲି ଜଣି,
ବିଜେ କଲେ ଆସି ଶ୍ରୀବ୍ରହ୍ମରାଣି ।
ପଲଙ୍କୁ ତୋଳି ଧଇଲେ କୋଳର,
ମୁଁହି ଚମକି ପଡ଼ିଲି ଉପର, ବଂଶୀ ଗୋ ·· ।୨।

ଆଗୋ, କଦମ୍ବ ମୂଳରେ ବସି କହ୍ନାଇ,
ଭୋଜନେ ଡାକେ ଆସ ଆସ ସହି !
ଶୟନ କାଳେ ବଂଶୀ କଲି ଡକା,
ଜଣିରେ ଡାକଇ ଆହ ରାଧିକା, ବଂଶୀ ଗୋ···।୩।

ଆଗୋ, ଗୋକୁଳମଣ୍ଡନ ମୋ-ପ୍ରାଣଧନ,
ତାଙ୍କ ବିନା କି ଧରିବି ଜୀବନ !
କେଉଁ ଉପାୟେ ଗୋ ତାହାଙ୍କୁ ପାଇ,
କି ବୁଦ୍ଧି କରିବି କହ ଗୋ ସହି, ବଂଶୀ ଗୋ···।୪।

ଆଗୋ, ସୁନ୍ଦରପଣେ ମନ ମୋହିଲା ହରି,
ଦେବଦେବାନ୍ତ ନାମ ଯାହାରି ।
ଗୋକୁଳକୁଳକୁ ଉଦେ ଚନ୍ଦ୍ରମା,
କହେ ସାଲବେଗ ବଂଶୀ ଗାରିମା, ବଂଶୀ ଗୋ···।୫।*

---

* ପ୍ରସ୍ତୁତ ଗୀତଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥିଭଣ୍ଡାରରେ ସଂରକ୍ଷିତ O.L./1116 ନମ୍ବର ପୋଥିରୁ ବହୁ ଅଭ୍ୟାସରେ ସଂଗ୍ରହ କରାଯାଇଛି । କାରଣ ପୋଥିଟିର ଅବସ୍ଥା ଅତ୍ୟନ୍ତ ଜୀର୍ଣ୍ଣଶୀର୍ଣ୍ଣ ।

ଏଠାରେ ଭକ୍ତକବି ଶ୍ରୀକୃଷ୍ଣଙ୍କୁ ପାଇବା ଲାଗି ଶ୍ରୀରାଧାଙ୍କ ବ୍ୟାକୁଳତା ମାଧ୍ୟମରେ ନିଜର ଭକ୍ତିଭାବନା ପ୍ରଦର୍ଶନ କରିଛନ୍ତି । ଶେଷ ପଦରେ ପ୍ରଥମ ଦୁଇ ପାଦର ଛନ୍ଦଭଙ୍ଗ ହେଉଛି । ଉକ୍ତ ଦୁଇ ପାଦ ସ୍ଥାନରେ—"ସୁନ୍ଦରପଣରେ ମୋହିଲ ହରି, ଦେବାନ୍ତକରିପୁ ନାମ ଯାହାର ॥" ହେଲେ କୌଣସିମତେ ଅର୍ଥ ସଙ୍ଗତ ହେବ ଏବଂ ଛନ୍ଦନିୟମ ସୁରକ୍ଷିତ ହେବ ।

## ୮୭

ବଇଁଶୀ ଗୋ କୃଷ୍ଣ କାହ୍ନୁ ଅଣିଲେ ।*
ମୋହନ ମୁରଲୀ ମୋ ପ୍ରାଣ ନେଲେ ॥
ଯେତିକ ମୁରଲୀ ତେତିକ ଛାଣ ।
ଆଉ ପବେ (୧) ଥିଲେ ଯେନନ୍ତା ପ୍ରାଣ ॥
ନିଶାକାଳେ ବଇଁଶୀ କଲଣି ଡକା ।
ବଇଁଶୀ ବୋଲୁଅଛି ଆସ ରାଧିକା ॥
(୨) ଅଙ୍ଗି ଅଙ୍ଗି ଗଲି ଦୂତୀ ସଙ୍ଗତେ ।
କି କି କରି ବଇଁଶୀ କହିଲା ମୋତେ ॥
କୃଷ୍ଣ ହାତୁ ବଇଁଶୀ କେ ଦେନ୍ତା (୩) ମୋତେ ।
ଭସାଇ ଦିଅନ୍ତି ଯମୁନା ସ୍ରୋତେ ॥
କଦମ୍ବମୂଳରେ ଉଦେ ଚନ୍ଦ୍ରମା (୪) ।
କହେ ସାଲବେଗ ବଇଁଶୀ ଗାରିମା ॥

---

* ପ୍ରସ୍ତୁତ ରଚନାଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ । ଏହାର ପ୍ରଥମ ପାଦ ସହିତ ଅନ୍ୟ ଗୋଟିଏ କବିତାର ପ୍ରଥମ ପାଦ ସମାନ ଏବଂ 'ନିଶାକାଳେ ବଇଁଶୀ କଲଣି ଡକା, ବଇଁଶୀ ବୋଲୁଅଛି ଅସ ରାଧିକା' ପ୍ରଭୃତି ପଦ ସହିତ ଅନ୍ୟ ଗୋଟିଏ କବିତାର ଭାବସାମ୍ୟ ରହିଛି ।

(୧) ପବେ—ଗୋଟିଏ ଆଙ୍ଗୁଳିର ଏକତୃତୀୟାଂଶ । (୨) 'ଅଚି ଅଚି'—ମୂଳପାଠ, କିନ୍ତୁ ଏପରି ପାଠ ଫଳରେ କୌଣସି ଅର୍ଥ ହେଉନାହିଁ; ତେଣୁ 'ଅଙ୍ଗି ଅଙ୍ଗି' ଅର୍ଥାତ୍ ଅନିଚ୍ଛାସତ୍ତ୍ୱେ ବାଧ ହୋଇ ହେବା ସମୀଚୀନ । (୩) ଦେନ୍ତା—'ଦିଅନ୍ତା'ର କାବ୍ୟିକ ପ୍ରୟୋଗ । ଅନ୍ୟ ଗୋଟିଏ କବିତାରେ କବି 'ଦେନ୍ତି' 'ନେନ୍ତି' ପ୍ରୟୋଗ କରିଛନ୍ତି । ୪) ଅନ୍ୟ ଗୋଟିଏ କବିତାରେ କବି 'ଗୋକୁଳକୁଳକୁ ଉଦେ ଚନ୍ଦ୍ରମା, କହେ ସାଲବେଗ ବଂଶୀ ଗାରିମା' ରଚନା କରିଛନ୍ତି ।

## ୮୮

ଭଲ ସୁନ୍ଦର ଗୋପୀନାଥ କି !
ଆଲୋ ମିତ !
ଗଳାକୁ ରତ୍ନହାର ଯଶୋଦା ଦେଇଛନ୍ତି,
ଅଧରେ ମୁରଲୀ ଶୋଭିତ କି !

ନବଗୁଞ୍ଜର ଫଳ, ଗୁନ୍ଥି କରିଛି ମାଳ;
ଶ୍ରବଣେ ମର୍କତକୁଣ୍ଡଳ କି !
କଳାପୁରୁଷ ବୋଲି, ଡାକେ ପୀରତି କଲି,
ଏବେ ବଳାଲ ମୋର ଚିତ୍ତ କି !

କହେ ସାଲବେଗ ହୀନ, ଏହି ମୋର ନିବେଦନ
କୃଷ୍ଣଚରଣେ ରହୁ ମତି କି ! *

---

ଶ୍ରୀକୃଷ୍ଣଙ୍କ ବାଳସୁଲଭ ବେଶ ଦେଖି ଶ୍ରୀରାଧା କିମ୍ବା ଚନ୍ଦ୍ରାବଳୀ ସଖୀ ଆଗରେ ନିଜ ଚିତ୍ତଚାଞ୍ଚଲ୍ୟର କାହାଣୀ କହିବା ସଙ୍ଗେ ସଙ୍ଗେ 'କଳାପୁରୁଷ' ପ୍ରତି ତାଙ୍କର ଆକର୍ଷଣରେ ମହତ୍ତ୍ୱ ପ୍ରକାଶ କରିଛନ୍ତି । କିନ୍ତୁ ଏଠାରେ 'ଏବେ ବଳାଲ ମୋର ଚିତ୍ତ କି' ସଙ୍ଗତ ହେଉନାହିଁ; 'ବଳାଲ' ପରିବର୍ତ୍ତେ 'ଜଳାଲ' ହେଲେ ଅର୍ଥ ସଙ୍ଗତ ହେବ ।

* ଶ୍ରୀନିବାସ ରଥଙ୍କ ସଂଗ୍ରହରୁ ଗୃହୀତ ।

## ୮୯

ଭଲ ସେ ନବଘନ କାଳିଆ !*

ତ୍ରିଭଙ୍ଗୀ ଛନ୍ଦେ ଉଭା,
କରେ ମୁରଲୀ ଶୋଭା,
ଚୂଡ଼ାଟି ବାନ୍ଧିଅଛି ଟାଳିଆ (୧) ॥

ହସି ହସି ସେ ଆସି,
ମୋ ମନ ନେଲେ ତୋଷି,
ନାଗର ନନ୍ଦଦୁଲାଳିଆ (୨) ॥

ହୀନ ସାଲବେଗ ଭଣି,
ରଙ୍ଗେ କରଇ ଧ୍ୱନି,
ବଂଶୀ ଡାକଇ ରାଧା ବୋଲିଆ (୩) ॥

---

* ଏହି ଗୀତଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ । ପ୍ରସ୍ତୁତ ଗୀତରେ ବ୍ରଜବୋଲି 'ଦୁଲରଆ' ଓ ବଙ୍ଗଳା 'ବୋଲିଅ' ଦେଖିବାକୁ ମିଳେ । ସାଲବେଗ ବଙ୍ଗଳା, ହିନ୍ଦୀ ଓ ଓଡ଼ିଆ ଭାଷାରେ ପ୍ରବୀଣ ଥିବାର ପ୍ରମାଣ ରହିଛି । ବିଶେଷତଃ ତାଙ୍କ ନାମ ଭଣିତ ଥିବା ବ୍ରଜବୋଲି ଓ ବଙ୍ଗଳା ଗୀତ ମିଳୁଥିବାରୁ ତାଙ୍କ କବିତାରେ ଉଭୟ ଭାଷାର ପ୍ରଭାବ ରହିବା ଆଦୌ ଅସ୍ୱାଭାବିକ ନୁହେଁ ।

ଆଉ ମଧ୍ୟ ତାଙ୍କ କବିତାରେ ଯେପରି ପ୍ରାଚୀନ ଓଡ଼ିଆ ଶବ୍ଦ ଓ କ୍ରିୟା ପଦର ବ୍ୟବହାର ହୋଇଛି, ସେଥିରୁ ତାଙ୍କର ଭାଷା ଉପରେ ପୂର୍ଣ୍ଣ ଦଖଲ ଥିବାର ଧାରଣା କରହୁଏ । ପ୍ରସ୍ତୁତ ଗୀତରେ 'ଜୁଡ଼ାଟି ବାନ୍ଧିଅଛୁ ଟାଲିଆ' ପାଦଟି ଅତ୍ୟନ୍ତ ମନୋରମ ।

(୧) ଏହି ପାଦଟି ବଙ୍ଗଳା ଭଜନରେ 'ମୁଡ଼ାଟା ବେନ୍ଧେଛେ ବାମେ ଟାଲିଆ' ପ୍ରତିବର୍ତ୍ତିତ ହୋଇଛି । (୨) 'ଦୁଲରିଅ' ପ୍ରୟୋଗ ବ୍ରଜଭାଷାର ପ୍ରଭାବ । (୩) 'ବୋଲିଅ' ପଦ ବ୍ରଜଭାଷାରୁ ଗୃହୀତ ।

## ୯୦

ମୁକୁଟ ମନୋହର
ଉରମାଲ୍ ମନୋହର,
ଅଙ୍ଗ ପୀତାମ୍ବର ରାଜତେ ॥"*

କର୍ଣ୍ଣ କୁଣ୍ଡଳ,
ଅଧିକ ଝଲମଲ,
କେଶରି ତିଲକ ବିରାଜିତେ ॥

ତଡ଼ିତ ନବଘନ,
ନିନ୍ଦିତ ବରନ
ଲଜ୍ଜିତ କୋଟି ଅନଙ୍ଗ (୧) ରେ,

ବିବିଧ କଉତୁକେ
ବର୍ଣ୍ଣିତ ସାଲବେଗ
ନିରେଖି ପୁଲକିତ ଅଙ୍ଗରେ ॥

---

* ପ୍ରସ୍ତୁତ ପଦ୍ୟଟି ଡକ୍ଟର ବଂଶୀଧର ମହାନ୍ତିଙ୍କ ଲିଖିତ 'ଭକ୍ତକବି ସାଲବେଗ' ଶୀର୍ଷକ ପ୍ରବନ୍ଧ (ଝଙ୍କାର ୯ମ ବର୍ଷ, ୧୨ଶ ସଂଖ୍ୟା)ରୁ ସଂଗୃହୀତ । ଏହି ଗୀତଟି ସମ୍ପୂର୍ଣ୍ଣ ବ୍ରଜବୋଲି କବିତା ଢଙ୍ଗରେ ଲେଖାଯାଇଛି । କବି ଉତ୍ତର ଭାରତୀୟ ଭକ୍ତମାନଙ୍କଠାରୁ ବ୍ରଜବୋଲି ଶିକ୍ଷା କରି ସେମାନଙ୍କ ପରିତୃପ୍ତି ତଥା ନିଜର ବହୁ ଭାଷାରେ ଦକ୍ଷତା ପ୍ରମାଣ କରାଇବା ଉଦ୍ଦେଶ୍ୟରେ ଭଜନଟି ରଚନା କରିଥିବେ ।

(୧) ତଡ଼ିତ୍ତୃମୁକ୍ତ ନବଘନ ଯେପରି ଶୋଭାପାଏ, ଠିକ୍ ସେହିପରି ବିବିଧ ରତ୍ନାଦି ଅଳଙ୍କାରଯୁକ୍ତ ଶ୍ରୀକୃଷ୍ଣ କୋଟି ଅନଙ୍ଗ ଶୋଭା ଧାରଣ କରିଛନ୍ତି ।

## ୯୧

ମୁଁ ତୋତେ କି ବୋଇଲି କି
ତୁ ବସିଅଛୁ ରୁଷି ।*
ଚନ୍ଦ୍ରମାବଦନ ଟେକ ଗୃହୁଁ କି ନା ହସି ॥
ବୋଲେ ନନ୍ଦରାଣୀ ତୋର ପରିମୁଣ୍ଡା (୧) ଯାଇ ରେ ।
କମଳନୟନରୁ ନୀର ସ୍ରବାଉ(୨) କାହିଁ ରେ ॥
ଆସ ଆସ ବାବୁ ମୋର ପ୍ରାଣ ପ୍ରାଣମଣି ରେ ।
ଦେବି ମୁଁ ଅଧାମ ସର ଅଧିକ ଲବଣୀରେ (୩) ॥
ଧୂଳିରୁ ଝାଡ଼ଣ ମାସ୍ତେ ପୋଛେ ପଣତରେ ।
ଚୁମ୍ବନ ଦିଅନ୍ତି ମାସ୍ତେ ଅତି ସ୍ନେହଭରେ ॥
ଯେତେବେଳେ ମୁଖକୁ ଭବ ବିରଞ୍ଚି ଧ୍ୟାବନ୍ତି ।
କହେ ସାଲବେଗ ଧନ୍ୟ ଭାଗ୍ୟ ଯଶୋବନ୍ତୀ (୪) ॥

---

* ପ୍ରସ୍ତୁତ ରଚନାଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ।

(୧) ପରିମୁଣ୍ଡା—ରୁଷିଥିବା ବା ଅଭିମାନ କରିଥିବା ବ୍ୟକ୍ତି ନିକଟରେ ନେହୁରା ହେବା । (୨) 'ଶ୍ରୀବାଉ' ମୂଳପାଠ; କିନ୍ତୁ 'ସ୍ରବାଉ'—ଝରାଉ, ଶୁଦ୍ଧପାଠ ହେବା ସମୀଚୀନ । (୩) 'ଦେବି ଘୃତ ଅଧାମ ସର ଅଧିକ ନବନୀରେ' ମୂଳପାଠ; କିନ୍ତୁ ତା' ଫଳରେ ଛନ୍ଦଭଙ୍ଗ ହେଉଛି; ବିଶେଷତଃ ଶ୍ରୀକୃଷ୍ଣ ଅଧାମ, ସର ଓ ଲବଣୀର ପ୍ରିୟ ଥିଲେ । ପିଲାମାନେ

ସାଧାରଣତଃ ଘିଅ ଅପେକ୍ଷା ଅଧାମ, ସର, ଲବଣୀକୁ ଅଧିକ ଭଲପାଆନ୍ତି । ତେଣୁ ଏଠାରେ 'ଘୃତ' ଶବ୍ଦଟି ଉଠାଇଦେଇ ଛନ୍ଦ ରକ୍ଷା କରିବାକୁ ଚେଷ୍ଟା କରାଯାଇଛି । (୪) ଭକ୍ତକବି ସାଲବେଗ ଶ୍ରୀକୃଷ୍ଣଙ୍କର ପିଲାଳିଆ ଅଭିମାନର କାଳ୍ପନିକ ସ୍ୱରୂପ ଚିନ୍ତା କରି ଅଛଟିଆ 'ବାଳମୁକୁନ୍ଦ'ଙ୍କ ଲୀଳା ବର୍ଣ୍ଣନା କରିଛନ୍ତି ।

## ୯୬

ମୁରଲୀ ତେ ନିଲ ପ୍ରାନ ହାରିୟା (୧) ରେ ! *
କାଲିଆ !
ଯେକେତେ କାଲିଆ କାହ୍ନୁ
ଅଧରେ ମୋହନ ବେନୁ
ଯୁଡାଟା (୨) ବେନ୍ଧେଛେ ବାମେ ଟାଲିୟାରେ ॥
ଅଗୁରୁ (୩) ଚନ୍ଦନ ଗାୟେ
(୪) ଝଂଟକ ନୂପୁର ପାୟେ
ଚଲି ଚଲି ନାଚେ ଫେରଫେରିୟାରେ ॥
ଯେହ୍ନି ତ କଦମ୍ବ ତଲେ
କାଦମ୍ବେରି (୫) ମାଲ ଗଲେ
କିବା ନଟବର ବେଶ ଧରିୟାରେ ॥
କହେ ସାଲବେଗ ହୀନ
ନିଲ ରେ କାଲିଆ ଚିନ
ବାଂଶିୟାତେ ଆକୁଲ କରିୟାରେ ॥
ଆରେ ଶ୍ୟାମ କାଲିୟା !
ମୁରଲୀତେ ନିଲ ପ୍ରାନ ହାରିୟା ରେ ॥

---

* ପ୍ରସ୍ତୁତ ପଦ୍ୟଟି ଶ୍ରୀନିବାଦ ରଥଙ୍କଠାରୁ ସଂଗୃହୀତ । ଏଠାରେ ଶ୍ରୀକୃଷ୍ଣଙ୍କ ନଟବର ବେଶ ଦେଖି ଶ୍ରୀମତୀ ରାଧା ଠାକୁରାଣୀ ନିଜ ମନର ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି । ଗୀତଟି ସଂପୂର୍ଣ୍ଣ ବଙ୍ଗଳା ଭାଷାରେ ରଚିତ; କିନ୍ତୁ 'ଯେହ୍ନିତ' 'ଯେକେତେ' 'ଟାଲିୟା' ପ୍ରଭୃତି ଓଡ଼ିଆ ପଦ ଓ କ୍ରିୟା ଏଠାରେ ପ୍ରୟୋଗ କରାଯାଇଛି । କବି ସାଲବେଗ ଭାଷା ଉପରେ ଗୁରୁତ୍ୱ ଆରୋପ ନକରି, ନିଜ ହୃଦୟର ଉଦ୍‌ଗାରକୁ ଏଠାରେ ବ୍ୟକ୍ତ କରିଛନ୍ତି ।

(୧) 'ହରିୟା' ଶୁଦ୍ଧପାଠ ! (୨) 'ଚୂଡ଼ା' ବଙ୍ଗଳା ପାଠ ଅନୁସାରେ ଶୁଦ୍ଧପାଠ । (୩) 'ଅଗରୁ' ମୂଳପାଠ । (୪) 'ଚଟକ' ବଙ୍ଗଳାନୁସାରେ ଶୁଦ୍ଧପାଠ । (୫) 'କାଦମ୍ବରୀ' ମୂଳପାଠ ।

## ୯୩

ମୁରଲୀ,

ତୋର ଶରଣ ଗଲିରେ, ମୁରଲି !
ଆଉ ନ ଡାକବୁ ରାଧିକା ବୋଲି, ରେ ମୁରଲୀ !
ଜାତ ତୋର କଣ୍ଠା ବାଉଁଶ ସିନା ।
ଗୋପସ୍ତ୍ରିଙ୍କର ପରାଣଘେନା ॥
ଜାତ ତୋର କଣ୍ଠା ବାଉଁଶ ଖଣ୍ଡ ।
ହସ୍ତରେ ଧରିଛୁ କୁସୁମକାଣ୍ଡ ॥
ଯମୁନାର ପାଣି ବହେ ଉଜାଣି ।
ପାଷାଣ ତରଳ ଶୁଣି ଯା ଧ୍ୱନି ॥
ମୁରଲୀ କେ ଆଣି ଦିଅନ୍ତା ମୋତେ ।
ଭସାଇ ଦିଅନ୍ତି ଯମୁନା ସ୍ରୋତେ ॥
କହେ ସାଲବେଗ ଜାତିରେ ହୀନ ।
ରାଧାକୃଷ୍ଣ ବିନୁ ନାହିଁ ମୋ ଆନ ॥*

* ପ୍ରସ୍ତୁତ ଗୀତଟି ବନମାଳୀ ପଦ୍ୟାବଳୀରେ ନିମ୍ନଲିଖିତମତେ ପରିଦୃଷ୍ଟ ହୁଏ ।

"ମୁରଲୀ, ତୋରେ ଶରଣ ଗଲି ରେ
ହିନେ ନଡାକବୁ ରାଧିକା ବୋଲିରେ ॥
ସେ ନନ୍ଦସୁତ ମୁଁ ରାଜକୁମାରୀ,
ବଂଶୀ ହେଲୁ ସିନା ପରତେ କରି ରେ ॥
ଲୁଚି ଲୁଚି ଯାଏ ସଖୀ ସଙ୍ଗତେ ।
କି ଘେନି ଲୁଚିଲୁ ମୁରଲୀ ମୋତେ ରେ ॥
ଜାତ ତୋର କଣ୍ଠା ବାଉଁଶ ଖଣ୍ଡ ।
ଧ୍ୱନି ସଙ୍ଗେ ଆଇ ପଞ୍ଚମ କାଣ୍ଡରେ ॥
କୃଷ୍ଣ ହସ୍ତୁ ତୋତେ କେ ଦିଅନ୍ତା ମୋତେ ।
ଭସାଇ ଦିଅନ୍ତି ଯମୁନାସ୍ରୋତେ ରେ ॥ ଇତ୍ୟାଦି

ବନମାଳୀ ପରବର୍ତ୍ତୀ କବି ହୋଇଥିବାରୁ ସାଲବେଗଙ୍କ କବିତାର ଅନୁକରଣରେ ସେ ଏହି ଗୀତଟି ଲେଖିଥିଲେ, କିମ୍ବା ସମ୍ପାଦକ ସାଲବେଗଙ୍କ କବିତାଟିକୁ ସାମାନ୍ୟ ପରିବର୍ତ୍ତନ କରି ପଦ୍ୟାବଳୀରେ ସମାବେଶ କରିଛନ୍ତି ।

ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O. L./761ରେ ସାମାନ୍ୟ ପରିବର୍ତ୍ତିତ ଭାବରେ ଲିଖିତ ହୋଇଛି । ପଦ୍ୟଟି ହେଉଛି—

"ମୁରଲୀ, ତୋରେ ଶରଣ ଗଲି ରେ !
ଆଉ ନ ଡାକିଲୁ ରାଧିକା ବୋଲି ରେ ॥
ଜାତ ତୋର କଣ୍ଟା ବାଉଁଶ ଗଣ୍ଡ,
ଧ୍ୱନି ଚମକାଇ ତିନି ବ୍ରହ୍ମାଣ୍ଡ ରେ ॥
ବଂଶୀଖଣ୍ଡି ଲମ୍ବ ମୁଠୁଣୀ ହାତେ,
ଧ୍ୱନି ଚମକାଇ ତିନିଜଗତେ ରେ ॥
ଲୁଚି ଲୁଚି ଯାଇ ସଖୀ ସଙ୍ଗତେ ।
ଖୋଜି ଖୋଜି ବଂଶୀ ଚିହ୍ନିଲା ମୋତେ ରେ ॥
ରୂଳା ଦେଇଥାଇ ଶ୍ରବଣ ପଥେ ।
ଗଳି ଗଳି ବଂଶୀ ଭେଦିଲା ମୋତେ ରେ ॥
କୃଷ୍ଣହସ୍ତ ବଂଶୀ କେ ଦ୍ୟନ୍ତା ମୋତେ ।
ଭସାଇ ଦିଅନ୍ତି ଯମୁନା ସ୍ରୋତେ ରେ ॥
କହେ ସାଲବେଗ ବଂଶୀ ଗାରମା ।
ଭଗତକୁଳକୁ ଉଦେ ଚନ୍ଦ୍ରମା ରେ ॥"

## ୧୪

ମୁରଲୀ, ତୋରେ ଶରଣ ଗଲି, ରେ ମୁରଲୀ ! *
ଆଉ ନ ଡାକବୁ ରାଧିବା ବୋଲି, ରେ !
ଗୋପପୁରେ ଗୋପୀ ନାହାନ୍ତି କେତେ ।
ମୋ ନାମ ଜାଣିଲୁ ବଂଶୀ (୧) କେମନ୍ତେ ?
ଯମୁନା ଉଜାଣି ବହୁଛୁ ପାଣି ।
ଶିଳା ଗଳିଗଲେ (୨) ତୋ' ଧ୍ୱନି ଶୁଣି ॥
ଯମୁନାରୁ ନୀର ଆଣିବା ବେଳେ ।
କାଖରୁ କଳସୀ ପଡ଼ିଲା ତଳେ ॥
(୩) ଅକୁଳ ଘରକୁ କୁଳଚନ୍ଦ୍ରମା ।
କହେ ସାଲବେଗ ବଂଶୀ ଗାରମା ॥

---

* ପ୍ରସ୍ତୁତ ବଂଶୀ-ଗୀତଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1740ରୁ ସଂଗୃହୀତ । ଏହି ଗୀତଟିର ପ୍ରଥମ ଦୁଇପାଦ ଅବିକଳ ଅନ୍ୟ ପଦ୍ୟରେ ଦେଖାଯାଏ ।

(୧) 'ବୈଁଈଶୀ' ପୋଥିପାଠ । (୨) 'ଶିଳା ତରଲଲେ' ବୋଲି ପାଠ ହେଲେ ସମୁଚିତ ହେବ । (୩) 'ଅକୋଳ ଘରକୁ କୋଳଚନ୍ଦ୍ରମା' ପୋଥିପାଠ । କୁଳହୀନ ଅର୍ଥାତ୍ ଅପୁତ୍ରକ ନନ୍ଦଘରେ ଶ୍ରୀକୃଷ୍ଣ କୁଳରକ୍ଷାକାରୀ ଚନ୍ଦ୍ରମା ସଦୃଶ ହୋଇଥିଲେ ।

୯୫

ମୋ ଚିତ୍ତ ହରିନେଲା କହ୍ନାଇ, *
ବଂଶୀ ବଜାଇ ॥
ଅଙ୍ଗେ ଚନ୍ଦନ ଶୋଭା,
ଶିରେ ମାଳତୀ ଗଭା,
ଭଲି ସେ ଛଳି ଛଳି ନାଚଇ ॥
କହେ ସାଲବେଗ,
କାଳିଆ ନବରଙ୍ଗ,
ମୋ ଚିତ୍ତ ନେଲା ସେ ତ ସ୍ୱେରାଇ ॥

---

* ପ୍ରସ୍ତୁତ ଗୀତଟି ଡକ୍ଟର ବଂଶୀଧର ମହାନ୍ତିଙ୍କ ଲିଖିତ 'ଭକ୍ତକବି ସାଲବେଗ' ଶୀର୍ଷକ ପ୍ରବନ୍ଧରୁ (ଝଙ୍କାର ୯ମ ବର୍ଷ; ୧୨ଶ ସଂଖ୍ୟା) ସଂଗୃହୀତ । ଖୁବ୍ ସମ୍ଭବତଃ ଏହି ଗୀତଟି ଅସମ୍ପୂର୍ଣ୍ଣ; କାରଣ ପ୍ରସ୍ତୁତ ଗୀତଟିର ଦୁଇଟି ପଦ ଥିବାରୁ ଅନ୍ୟ ଅଂଶତକ ଡକ୍ଟର ମହାନ୍ତି ପାଇନାହାନ୍ତି କିମ୍ବା ଭଜନଟି ସେହି ଦୁଇ ପଦରେ ଶେଷ ହୋଇଛି ।

ସାଲବେଗଙ୍କ ଭଜନଗୁଡ଼ିକ ମଧ୍ୟରେ ବଂଶୀ ପ୍ରସଙ୍ଗ ଥିବା ଗୀତଗୁଡ଼ିକ ସୁଶ୍ରାବ୍ୟ ଏବଂ ହୃଦୟଗ୍ରାହୀ । 'ବଂଶୀ କଲା ପ୍ରମାଦ' 'ବୈଂଶୀ ଗୋ କୃଷ୍ଣ କାହୁଁ ଆଣିଲେ', 'ମୁରଲୀରେ ତୋର ଶରଣ ଗଲି', 'ମୁରଲୀ ତେ ନିଲ ପ୍ରାନ ହାରିଆ' ପ୍ରଭୃତି ଭାଷା, ଭାବ ତଥା ରଚନାଗତ ଶୈଳୀ ଦୃଷ୍ଟିରୁ ଅତ୍ୟନ୍ତ ଉପାଦେୟ । କେବଳ ସାଲବେଗ କାହିଁକି, ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀରେ ଯେତେ କବି ଶ୍ରୀକୃଷ୍ଣ-ଭକ୍ତଧାରାର ଅବଲମ୍ବନରେ କବିତା ରଚନା କରିଛନ୍ତି, ସମସ୍ତଙ୍କ ରଚନାରେ ବଂଶୀ ପ୍ରସଙ୍ଗ ବେଶ୍ ମନୋରମ ହୋଇଛି । ବିଶେଷତଃ ବନମାଳୀଙ୍କ ପଦ୍ୟାବଳୀରେ ପ୍ରଦତ୍ତ—

'ବଂଶୀରେ ତୋର ଏଡ଼ିକି ଦାଉ, ଦମ୍ଭ ଧରି କେ ବା ସହିବ ଆଉ ?'

× × ×

'ବନମାଳୀ ବୋଲେ ନ ବାଜ ଆଉ, ସବୁ ଯାଉ ପଛେ ମହତ ଥାଉ ॥' ଗୀତଟି ଅତ୍ୟନ୍ତ ହୃଦୟଗ୍ରାହୀ ।

୪୭

ମୋତେ ସେହି ରୂପ ଦେଖାଅ ହରି !
ଜୟ ଶ୍ରୀରାଧେ ରାଧେ ଡାକେ ବାଂଶରୀ ।
ଯେଉଁ ରୂପେ ବଳିଦ୍ୱାରେ ହେଲ ଭିକାରି ॥
ତ୍ରି ପାଦରେ ଦାନ ନେଇ ବଳିକି ପାତାଳେ ଥୋଇ
ଫେଣ୍ଟୁ କରି ଶୁକ୍ର ମନ୍ତ୍ରୀ ନୟନରେ କୁଶ ଭରି ॥
କୈକେୟୀ ହେଲେ ଭଗାରି ରାମ ହେଲେ ବନବାସୀ
ସଙ୍ଗତେ ସୀତୟା ନାରୀ ଲକ୍ଷ୍ମଣ ଯା' ସେବାକାରୀ ॥
ଗୋପେ ଜନମ ହୋଇଲ ବନେ ଧେନୁ ଚରାଇଲ
ଗୋପାଳ ପୁଅଙ୍କ ମେଳେ ନାଚୁଥାଅ ଚଳଚଳ ॥
ଡାହାଣେ ଶ୍ରୀ ହଳପାଣି ମଧ୍ୟେ ସୁଭଦ୍ରା ଭଉଣୀ
ବାମ ପାଶେ ବସିଛନ୍ତି ଶଙ୍ଖ-ଚକ୍ର-ଗଦାଧାରୀ ॥
କହେ ସାଲବେଗ ହୀନ ଜାତିରେ ଅଟେ ଯବନ
କଂସ ଅଷ୍ଟମଲ୍ଲ ମାରି କାହାକୁ ନ ଅଛ ତାରି ॥ *

---

ପ୍ରସ୍ତୁତ ପଦ୍ୟରେ କବି ସାଲବେଗ ସତ୍ୟଯୁଗର ବଳି-ବାମନ ଚରିତ୍ରର ଅବତାରଣା କରିଛନ୍ତି । ବାମନରୂପରେ ବିଷ୍ଣୁ ବଳିଠାରୁ ଦାନ ଗ୍ରହଣ କରିବା ସମୟରେ ଶୁକ୍ର ମହର୍ଷି ବାଧାଦେବାରୁ ବାମନ କୁଶଦ୍ୱାରା ଶୁକ୍ରଙ୍କର ଚକ୍ଷୁ ଭେଦକରିଥିଲେ । ତ୍ରେତୟା ଯୁଗରେ କୈକେୟୀଙ୍କ ଯୋଗୁ ରାମ ସୀତା ବନବାସ କରିଥିଲେ ଏବଂ 'ଚଉଦବର୍ଷ କାଳ ଲକ୍ଷ୍ମଣ ତାଙ୍କର ସେବା କରି କଟାଇଥିଲେ । ପ୍ରଭୁ ଦ୍ୱାପର ଯୁଗରେ ମଥୁରାରେ ଜନ୍ମ ଗ୍ରହଣ କରିଥିଲେ ହେଁ, ଗୋପରେ ଗୋପବାଳକଙ୍କ ସହିତ କ୍ରୀଡ଼ା କରି ସେ ଯୁଗର ଲୀଳା ଶେଷ କରିଥିଲେ । ସେ ବିଶ୍ୱକ୍‌ସେନ କଳିଯୁଗରେ ଶ୍ରୀମନ୍ଦିରରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଓ ସୁଦର୍ଶନ ରୂପରେ ପୂଜିତ ହୋଇ ପତିତମାନଙ୍କୁ ଉଦ୍ଧାର କରୁଛନ୍ତି । ଏହି ଚାରି ଯୁଗର ପ୍ରଭୁଙ୍କ ଲୀଳା ଗାନକରି ଭକ୍ତକବି ଇହଜୀବନ କୃତାର୍ଥ କରିଛନ୍ତି ।

୪୮

ମୋହ ମନ, ମୋହରି ସେ ନୋହିଲୁ ରେ !
ମୋ ମନ ମୋତେ ଭଗାରି ନ ଭଜିଲୁ ରାମହରି
ଯମ ନେବ ଧରିକରି ବୋଇଲି ରେ !

ଆସି ହେଲା ପ୍ରାନ୍ତ କାଳ ନ ଭଜିଲ୍ଟି ନନ୍ଦବାଳ
ଯେତେ ଥିଲା ପୁଣ୍ୟଫଳ ସଇଲା ରେ !
ମୋ ମନ ମୋତେ ରସାଇ ନାନା ଅମୃତେ ଭସାଇ
ବିଷୟାରେ ବିଷ ଦେଇ ମାରିଲା ରେ !
କହେ ସାଲବେଗ ହୀନ ଏହି ମୋର ନିବେଦନ
ବୃନ୍ଦାବନ ଭ୍ରମଣ ମୋ ନୋହିଲା ରେ !*

---

* କବି ସାଲବେଗ ଏଠାରେ ମୋହାଚ୍ଛନ୍ନ ମନକୁ ଧିକ୍‌କାର କରିଛନ୍ତି; କାରଣ ମନ କାହାର ଆୟତ୍ତରେ ନ ଥାଏ । କେବଳ ଯୋଗୀମାନେ ମନକୁ ଆୟତ୍ତ କରି ଯୋଗସାଧନାରେ ତଲ୍ଲୀନ ହୋଇଥାନ୍ତି । ଭକ୍ତକବି ଏଠାରେ ମନକୁ ଶତ୍ରୁ ବୋଲି କହିଛନ୍ତି ଏବଂ ପରିଣତ ବୟସରେ ମଧ୍ୟ ମନ ତାଙ୍କର ଆୟତ୍ତ ହୋଇନଥିବାରୁ କ୍ଷୋଭ ପ୍ରକାଶ କରିଛନ୍ତି । ଅବଶ୍ୟ ନାମ-ଭଜନର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ କବି ସାଲବେଗ ବିଷୟ-ବାସନା ପ୍ରତି ନାମଭଜନ ବିଷତୁଲ୍ୟ ବୋଲି ବର୍ଣ୍ଣନା କରିଛନ୍ତି । ନାମଭଜନ ଫଳରେ ଭକ୍ତକବିଙ୍କର ମନବୋଧ ହୋଇଥିଲେ ହେଁ 'ବୃନ୍ଦାବନଭ୍ରମଣ' ତଦବଧି ହୋଇନଥିବାରୁ ମନର ଅଭିଳାଷ ଅପୂର୍ଣ୍ଣ ରହିଛି । ତେଣୁ ସେ ଅନ୍ୟ ଗୋଟିଏ ଭଜନରେ ପ୍ରକାଶ କରିଛନ୍ତି—'ଜୀବନରେ ଥିବ ଯେବେ ଯିବି ବୃନ୍ଦାବନ' ।

## ୯୮

ଯାଅ ତୁମ୍ଭେ ନନ୍ଦ କହ୍ନାଇ !
ମୋ ନାମେ ମୁରଲୀ ବାଇବ ନାହିଁ ।
ଶିରରେ ତୁମ୍ଭର ମୟୂର ପିଚ୍ଛ
ବାମେ ଆଉଜାଇ ବାନ୍ଧିବ ନାହିଁ ।।
ବାମେ ଆଉଜାଇ ବାନ୍ଧିବ ଯେମନ୍ତେ
ପୁଞ୍ଜା ପୁଞ୍ଜା ମଲ୍ଲୀ ଖଞ୍ଜିବ ନାହିଁ ।
କଟୀରେ ତୁମର କ୍ଷୁଦ୍ର ଘଣ୍ଟିକା
ବେଗ ବେଗ ହୋଇ ଚାଲିବ ନାହିଁ ।।
ପଦ୍ମରେ ତୁମ୍ଭର ରତ୍ନକଟାହି
ଧୀର ଧୀର ହୋଇ ଚାଲିବ ନାହିଁ ।
ଧୀର ଧୀର ହୋଇ ଚାଲିବ ଯେମନ୍ତେ
ପୀତାମ୍ବର ଖଣ୍ଡ ପିନ୍ଧିବ ନାହିଁ ।।

ନାଚି ନାଚି ଆସୁଥାନ୍ତି ନାନା ରଙ୍ଗେ
ତହିଁକି ଗୋପିକା ହୋଇଲେ ବାଇ ।
କହେ ସାଲବେଗ ଜାତିରେ ଯବନ
ରାଧାକୃଷ୍ଣ ପାଦ ହୃଦରେ ଧ୍ୟାୟି ।।*

* ଶ୍ରୀକୃଷ୍ଣଙ୍କର ବାଲସୁଲଭ ପ୍ରତ୍ୟେକ ବେଶଭୂଷା ଶ୍ରୀରାଧାଙ୍କ ମନ ମୋହନ ପାଇଁ ଉତ୍ତେଜକ ଉପାଦାନ ରୂପେ କାମ କରୁଛି । ଗୋପଦାଣ୍ଡର ଭୃଣ୍ଡବାଇଦ ଓ ଶାଶୁ ନଣନ୍ଦଙ୍କ ଗଞ୍ଜଣା ସତ୍ତ୍ୱେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ମୋହନମୂର୍ତ୍ତି, ବିଶେଷତଃ ତାଙ୍କର ବେଶଭୂଷା ଦେଖି ଧୈର୍ଯ୍ୟ ଧରିପାରୁନଥିଲେ ।

ଏହି ଭାବନା ତଥା ପ୍ରଭୁଙ୍କର ସେହି ମନମୋହନ ରୂପ ଭକ୍ତକବିଙ୍କର ଗଣ୍ଠିଧନ ହୋଇଯାଇଛି । କବି ସେହି ଅପରୂପ କାନ୍ତିର ବର୍ଣ୍ଣନା ପ୍ରସ୍ତୁତ ଗୀତରେ କରି ଗୋପିକା-ଭାବରେ ପ୍ରଭୁଙ୍କ ପାଦସେବା ଲାଗି ହୃଦୟରେ କାମନା କରିଛନ୍ତି ।

ଏହି ଗୀତର ଅନୁକରଣରେ ପରବର୍ତ୍ତୀ କବି ବନମାଳୀ ଦାସଙ୍କ 'ଶ୍ୟାମ ନାଗର ହେ ଏ ବେଶ ହୋଇବ ନାହିଁ' ରଚିତ ହୋଇଛି ।

## ୯୯

ଯାଅ ଯାଅ ମୋଠାରୁ ତୁମ୍ଭେ ରସିକ କହ୍ନାଇ
ତରଳ ତରଙ୍ଗ ରୂପ ଅଙ୍ଗ ଦିଶୁନାହିଁ ।
ଦଣ୍ଡେହେଁ ନ ରହ ମୋହଠାରେ ହେ ମୋହନ,
ବିପରୀତ ଦେଖିଲି ମୁଁ ଅଙ୍ଗରେ ଅଞ୍ଜନ ।
କପୋଳେ କସ୍ତୁରୀ ଚିତା ଲାଗିଛି ଅଳତା,
କି ବୋଲି କା'ଠାକୁ ଗଲ ସେ କାହା ବନିତା ।
ଅଙ୍ଗୁଷ୍ଠିର ରତ୍ନମୁଦମାନ କି ସକଳ,
ରତି ଅଳସରେ ଅବା ଦେଇ ତ ଆଇଲ ।
ଅନଦ୍ରାରେ ନେତ୍ର ବେନି ଘୂର୍ଣ୍ଣିତ ହୋଇଛି,
ଆଲିଙ୍ଗନ ଚିହ୍ନ ସଖା ଦେହେ ତ ଲାଗିଛି ।
ଅତି ସଙ୍କଟରେ ତୋରେ ପାଇଥିଲି ଏତେ,
ଗୁରୁଆଡ଼େ ଅପକୀର୍ତ୍ତି ପତାକା ତ ଉଡ଼େ । (୧)

କହେ ସାଲବେଗ ଯେବେ ପ୍ରମାଦ ପଡ଼ିଲା,
କେ କହିବ ରାଧା ଆଗେ ଦୂତୀ କେଉଁଣେ ଗଲା ।*

---

* ଏ ରଚନାଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ହୋଇଛି । ଶ୍ରୀମତୀ ଠାକୁରାଣୀଙ୍କର ମନୋଦଶା ଦେଖି ସାଲବେଗଙ୍କର ଭକ୍ତ-ହୃଦୟରେ ଗଭୀର ଦୁଃଖ ରେଖାପାତ କରିଛି । ତେଣୁ ଶ୍ରୀମତୀଙ୍କ ପ୍ରମାଦକୁ ନିଜର ପ୍ରମାଦ ରୂପେ ବର୍ଣ୍ଣନା କରିଛନ୍ତି । ଶ୍ରୀରାଧା-କୃଷ୍ଣଙ୍କ ଭକ୍ତିଭାବରେ ବିହ୍ୱଳ କବି ସାଲବେଗଙ୍କର ଏ ଭକ୍ତିପୂର୍ଣ୍ଣ ବ୍ୟଗ୍ରତା ପ୍ରତ୍ୟେକ ଭାବୁକ ପାଠକର ହୃଦୟକୁ ସ୍ପର୍ଶକରେ ।

(୧) 'ଯେତେ' ମୂଳ ପାଠ । (୨) ଅନ୍ୟ ନାୟିକା ବୋଧହୁଏ ଦୂତୀ ସହିତ ରସକେଳୀ ପରେ ଶ୍ରୀକୃଷ୍ଣଙ୍କଠାରେ ସମ୍ଭୋଗ ଚିହ୍ନମାନ ଦେଖି ଶ୍ରୀରାଧା ଠାକୁରାଣୀ ଖଣ୍ଡିତା ନାୟିକା-ରୂପେ ଶ୍ରୀକୃଷ୍ଣଙ୍କୁ ଅଭିମାନସୂଚକ ଭର୍ତ୍ସନା କରିଛନ୍ତି ।

## ୧୦୦

ରାଧା ମଧୁର ମଙ୍ଗଳ ମୂରତି ।*

ବ୍ରଜ ରମଣୀମଣି
ବୃଷଭାନୁନନ୍ଦିନୀ
ସକଳ ରୂପ ଗୁଣ ରସବତୀ ।
ନବଘନଶୋଭା ଗୋରୀ,
କୋଟିକାମ ମନୋହାରୀ,
ପ୍ରାଣପତିର ସେ ବଶ ଅତି ।
କହେ ସାଲବେଗ ହୀନ
ସେ ପାଦେ ଶରଣ
ବିନୁ ନାହିଁ ମୋର ଆନ ଗତି ।

---

* ପଦ୍ୟଟି ଡକ୍ଟର ବଂଶୀଧର ମହାନ୍ତିଙ୍କ ଲିଖିତ 'ଭକ୍ତକବି ସାଲବେଗ' ଶୀର୍ଷକ ପ୍ରବନ୍ଧରୁ (ଝଂକାର, ନବମ ବର୍ଷ, ୧୨ଶ ସଂଖ୍ୟା) ସଂଗୃହୀତ । ଶ୍ରୀରାଧାଙ୍କ ମଧୁର ମୂରତି ଧ୍ୟାନରେ ଭକ୍ତ ସାଲବେଗ ତଦ୍‌ଗତମନା ହୋଇ ଗୀତଟି ରଚନା କରିଛନ୍ତି । ଶ୍ରୀରାଧାଙ୍କ ରୂପବର୍ଣ୍ଣନା କରି ସାଲବେଗ 'କନକ କେତକୀ ଚମ୍ପା ତଡ଼ିତବରନା' ଶୀର୍ଷକ ଆଉ ଗୋଟିଏ ଗୀତ ରଚନା କରିଛନ୍ତି ।

## ୧୦୧

ରାମନାମ ବୋଲ ଭାଇ,
କୃଷ୍ଣନାମ ବୋଲ ।
ତରୁଆ କଦମ୍ବ ମୂଳେ ମୁରଲୀ ବଜାଅ ॥
ଦିନ ଯାଏ ଦୁଃଖେ ସୁଖେ,
ରାତ୍ର ଯାଏ ନିଦେ,
ନ ଭଜି ପାରିଲି କୃଷ୍ଣ-
ଚରଣାରବିନ୍ଦେ ।

ମାତା ତେଜ୍ୟା, ପିତା ତେଜ୍ୟା,
ଆବର ତେଜ୍ୟା ଭାଇ,
ସକଳ କୁଟୁମ୍ବ ତେଜ୍ୟା କରି,
ଗୋବିନ୍ଦରେ ଧାୟୀ ।

ପିତା ମୋ ମୋଗଲ ବେଟା,
ମାତା ମୋ ବ୍ରାହ୍ମଣୀ,
ହୀନ କୁଳେ ଜାତ ମୁହିଁ
ହିନ୍ଦୁ ନ ଛୁଏଁ ପାଣି ।
କଲମ୍ ଘୋଡ଼ା ବାନ୍ଧେ ଜଡ଼ା,
ଶିରରେ ପାଗୁଡ଼ି,
ଏହି ରୂପେ ସାଲବେଗ
ଭୂମିରେ ଯା'ଏ ଗଡ଼ି ।*

* ଗୀତଟି ସାଲବେଗଙ୍କ ଜୀବନଚରିତ ସମ୍ବନ୍ଧରେ ଏକ ପ୍ରକୃଷ୍ଟ ଉଦାହରଣ । ଏହି ଗୀତଟିରେ ସାଲବେଗ ପିତାମାତାଙ୍କୁ ତ୍ୟାଗ କରି ସନ୍ନ୍ୟାସୀ ହୋଇଥିବାର ଗୋଟିଏ ଦୃଷ୍ଟାନ୍ତ ରହିଛି । କେବଳ ସେତିକି ନୁହେଁ, ଭକ୍ତକବି ହୀନକୁଳରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କ ମନରେ ଅତ୍ୟନ୍ତ କ୍ଷୋଭ ଜାତ ହୋଇଥିବାର ପ୍ରମାଣ ମିଳୁଛି । ଅଧିକ ମଧ୍ୟ ବଡ଼ଦାଣ୍ଡରେ ବୁଲୁଥିବା ସମୟରେ ସାଲବେଗଙ୍କ ବେଶ ସମ୍ବନ୍ଧରେ ମଧ୍ୟ ସୂଚନା ମିଳୁଛି । ଏଥିରୁ ଆହୁରି ମଧ୍ୟ ଜଣାଯାଏ ଯେ, ଏ ଗୀତ ରଚନା କରିବା ବେଳକୁ ସାଲବେଗ ବୃନ୍ଦାବନ ଯାତ୍ରା କରିନଥିଲେ ।

## ୧୦୨

ରାମ ହରି !

ପ୍ରଭୁ ବିଜେ କରିଅଛ ନୀଳଗିରି ହେ !

ଶ୍ରୀପୁରୁଷୋତ୍ତମ କ୍ଷେତ୍ରବାସୀ  ଭାଗ୍ୟ ଥିଲେ ସାଧୁ ସଙ୍ଗେ ମିଶି
ସର୍ବଜନମାନେ କ୍ଷେତ୍ରରେ ପ୍ରବେଶ ଗତି ମୁକ୍ତି ଦେନ୍ତି ପରିବାସୀ ହେ ।୧।
ବଡ଼ଦାଣ୍ଡେ ହେଲେ ପରବେଶ  ରେଣୁ ଧୂଳିରେ ପୂରିଲା ଗାତ୍ର
ଦାଣ୍ଡରେ ବସିଛୁ କୈବଲ୍ୟ ପସରା ଝଙ୍କ ଭୋଗଣିରେ ମନ ତୋଷ ହେ ।୨।
ସିଂହଦ୍ୱାରଠାରେ ବେତ ବାଡ଼ି  ବାଜିଲେ ପାତକ ଯାଏ ଛୁଡ଼ି
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ସାଧୁଜନମାନେ ଠେଲାଠେଲି ହେ ।୩।
ବାଇଶି ପାବଚ୍ଛ ଗଲି ଶିଖେ  କୈବଲ୍ୟ ବସିଛୁ ବେନ୍ନ ପାଖେ
ବ୍ରାହ୍ମଣ କ୍ଷତ୍ରିୟ ଶୂଦ୍ର ଚ୍ୟୁରିବର୍ଣ୍ଣ କୈବଲ୍ୟ ଦିଅନ୍ତି ମୁଖେ ମୁଖେ ହେ ।୪।
ରୋହିଣୀ କୁଣ୍ଡ ପାଦୁକା ରଜ  ସିଂହ ମାଡ଼ିବସିଅଛି ଗଜ
ସତେ କି ଏ ଜୀବ ସଫଳ (୧ ହୋଇବ କାକପକ୍ଷୀ ହେଲେ ଚତୁର୍ଭୁଜ ହେ ।୫।
ଗରୁଡ଼ ପଛରେ ରହି ଦେଖି  କି ଶୋଭାପାଉଛି ପଦ୍ମମୁଖି
ହାର ମାଳା ମୋତି ମାଣିକ୍ୟ ଜଳୁଛି ହୃଦେ ଲମ୍ବି ଅଛି ବ୍ୟାଘ୍ରନଖ ହେ ।୬।
ସଲଖ ସୁନ୍ଦର ବଡ଼ଦାଣ୍ଡ  ନବକୋଟି ଲୋକ ତହିଁ ରୁଣ୍ଡ
ଦର୍ଶନ ମାତ୍ରକେ ପାପ କ୍ଷୟ ଯିବ ପାପାତ୍ମା ପାତକ ହୋଇ ଖଣ୍ଡ ହେ ।୭।
ସିଂହଦ୍ୱାର ଆଗେ ତିନି ରଥ  ପାଟପଉଣୀରେ ମଣ୍ଡି ନେତ
ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା ପଛେ ବିଜେକଲେ ଜଗନ୍ନାଥ ହେ ।୮।
କହେ ସାଲବେଗ ମୂଢ଼ମତି  ରାଧାକୃଷ୍ଣ ପାଦେ (୨) ଦେଇ ମତି
ଜନ୍ମେ ଜନ୍ମେ ମତେ ଏହି ଆଜ୍ଞା ହେଉ, ରଖାକର ବାରେ ଲକ୍ଷ୍ମୀପତି ହେ ।।*

---

* ଏ ପଦ୍ୟଟିରୁ ଜଣାଯାଏ ଯେ, ଭକ୍ତକବି ମନ୍ଦିର ମଧ୍ୟରେ ପ୍ରବେଶ କରି ଶ୍ରୀଜଗନ୍ନାଥଙ୍କୁ ଗରୁଡ଼ ପଛରେ ରହି ଦର୍ଶନ କରିଥିଲେ; କିନ୍ତୁ ଅଷ୍ଟମ ପଦରେ ଥିବା 'ସିଂହଦ୍ୱାର ଆଗେ ତିନିରଥ'ରୁ ଜଣାଯାଏ ଯେ କବି ମାନସଚକ୍ଷୁରେ ଶ୍ରୀମନ୍ଦିର ଭିତରେ ଶ୍ରୀଜଗନ୍ନାଥଙ୍କ ଶୋଭା ଅବଲୋକନ କରିବା ପରେ, ରଥଯାତ୍ରା ସମୟରେ ପ୍ରଭୁଙ୍କୁ ଦର୍ଶନ କରି ନେତ୍ରତୃଷ୍ଣା ମେଣ୍ଟାଇଥିଲେ ।

(୧) 'ସାଫଲ୍ୟ' ପୋଥିପାଠ (O.L/453) । (୨) 'ରାଧାକୃଷ୍ଣ ତଳେ ଦେଇ ମତି' —ପୋଥିପାଠ ।

## ୧୦୩

ଶିବ ହେ ବାରେ ଜଣାଣ ଘେନ ।*
ଶିବ ଶିବ ବୋଲି ଯାଉ ଜୀବନ ॥
କୋଟି ପରବତ ଘାଘୁଡ଼ି ମାଳୀ ।
ଈଶ୍ୱର ନାଚନ୍ତି ବଜାଇ ତାଳି ॥
ଜୁଡ଼ା ଅଜଗର ମାଳ କାଛେଣି ।
ଶିରେ ବହିଅଛ ସପତଫଣୀ ॥
ବାସୁଆ ବଳଦ ତୁମ୍ଭ ବାହନ ।
ବାମକରେ ଶିଙ୍ଗା ଡାକଇ ରାମ (୧) ॥
ଈଶ୍ୱର ମୁଣ୍ଡରେ ଢାଳନ୍ତି ପାଣି ।
ଚମ୍ପା ବେଲପତ୍ରି ଗଇଣ ଘେନି ॥
କହେ ସାଲବେଗ ଜାତିରେ ହୀନ ।
ଶିବ ଶିବ ବୋଲି ଯାଉ ଜୀବନ ॥

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟର ପୋଥି O.L./1740ରୁ ସଂଗୃହୀତ । ଅନୁରୂପ ପଦ୍ୟଟିଏ ସାଲବେଗଙ୍କ ନାଆଁରେ ପ୍ରଚଳିତ ରହିଛି; କିନ୍ତୁ ଏଥିରେ ଅଧିକାଂଶ ପଦ ପରିବର୍ତ୍ତିତ ହୋଇଛି ।

(୧) ମହାଦେବ ସଦାସର୍ବଦା ରାମନାମ ଜପ କରୁଥିବାର ପୌରାଣିକ କିମ୍ବଦନ୍ତୀ ରହିଛି ।

## ୧୦୪

ଶିବ ହେ ମୋର ଘେନ ଜଣାଣ *
ବାରେ ମାତ୍ର ମୋର ଗୁହାରି ଶୁଣ ॥
କୋଟିସ୍ୱେ ପର୍ବତ ଘାଘୁଡ଼ିମାଳୀ ।
ବ୍ରହ୍ମା ଆଦି ସୁର ଦେବେ ଅର୍ଦ୍ଧଳୀ ॥
କାଳୀ ନାଗ କଲେ କଣ୍ଠେ ପଇତା ।
ଶେତ (୧) ନାଗ କଲେ ଶିରରେ ଛତା ॥
ଡବଡବ ବାଜେ ଡମ୍ବରୁ କର ।
ଗଙ୍ଗାଦେବୀ ଅଛୁ ଜଟା ଭିତର ॥

ବୁଢ଼ା ଅଜଗର କଟି କାଛେଣି ।
ଶ୍ୱେତ ନାଗ କଲ୍ ଶିରେ ମଣ୍ଡଣି ॥
ବିଭୂତି ଭୂଷଣ ତ୍ରିଶୂଳଧାରୀ ।
ମଧ୍ୟେ ସଦାଶିବ ନାଚନ୍ତି ଭଲ ॥
କହେ ସାଲବେଗ ଜାତିରେ ହୀନ ।
(୨) ମୋ ମନ ରହୁବ ଶିବଚରଣ ॥

---

* ପ୍ରସ୍ତୁତ ପଦ୍ୟଟି ଶ୍ରୀନିବାସ ରଥଙ୍କଠାରୁ ସଂଗୃହୀତ ।

(୧) 'ଶ୍ୱେତ ନାଗ କଲ୍ ଶିରରେ ଛତା' ଓ 'ଶ୍ୱେତ ନାଗ କଲ୍ ଶିରେ ମଣ୍ଡଣି' ଦୁଇଟି ପାଦ ଦ୍ୱିରୁକ୍ତ ବୋଲି ମନେହୁଏ ।

(୨) 'ତବ ପାଦପଦ୍ମେ ରହୁ ମୋ ମନ'—ପାଠଭେଦ ।

## ୧୦୪

ଶ୍ୟାମବନ୍ଧୁ ଲାଗିରେ, ଦୀନବନ୍ଧୁ ଲାଗି
ମୁଁ ସଢ଼ିଲି କି ଗୋ !
ମା ମୁଁ କି କଲି ॥
ଯମୁନାକୁ ନୀର ଆଣି ଗଲାବେଳେ ଯାଉଥାଇ ଡର ଡର,
କଦମ୍ବମୂଳେ ମୁରଲୀ କରେ ଧରି ଚାହିଁଦେଲେ ଭଙ୍ଗୀ କରି,
କି ଗୋ ମା !
ଶିରେ କେକୀଚୂଳ ବାଙ୍କେ ବାନ୍ଧିଥାଇ ବନସ୍ତର ଫୁଲ ଖଞ୍ଜି,
ରଙ୍ଗି ମା ଅଧରୁ କହୁଦେଉଥାନ୍ତି ମଧୁର ମଧୁର କରି (୧),
କି ଗୋ ମା !
ଚଞ୍ଚଳ ଚକ୍ଷେ ଚରଣ ନ ଚଳଇ ନ ପାରଇ କୁମ୍ଭ ଧରି,
ଲୋକଲାଜ (୨) ମୁହିଁ ଛାଡ଼ି ଯା ଅଇଲି ଦୁଷ୍ଟ ନଣନ୍ଦକୁ ଡରି,
କି ଗୋ ମା !
ଚନ୍ଦ୍ରପ୍ରତିମା ପ୍ରାୟେ ତାଙ୍କୁ ମଣଇ ଚାହିଁ ତା ବେଶ ଚାତୁରୀ,
ଅନ୍ତରେ ଶ୍ୟାମ ବ୍ୟାଧି (୩) ମୋତେ ହୋଇଣ ବାମଦେବରିପୁ (୪) ଡରି,

କି ଗୋ ମା !
ଶ୍ୟାମବନ୍ଧୁ ସଙ୍ଗେ ପ୍ରୀତି କରି ଦିଅ ସଙ୍ଗେ ଦିଅ ସହଚରୀ,
କହେ ସାଲବେଗ ଜାତିରେ ଯବନ ସଂସାର ସାଗର ତରି,
କି ଗୋ ମା ! *

---

* ଶ୍ରୀକୃଷ୍ଣଙ୍କ ବିରହରେ ପ୍ରପୀଡ଼ିତା ଶ୍ରୀରାଧାଙ୍କର ବୃନ୍ଦା ପୌର୍ଣ୍ଣମାସୀ ପ୍ରତି ନିବେଦନ ।

(୧) 'ମଧୁର ମଧୁର କରି' ପୋଥିପାଠ (O.L./453) । (୨) ଲୋକ ଲଜ୍ୟା—ପୋଥିପାଠ । (୩) 'ଅନ୍ତରେ ଶ୍ୟାମ ଭ୍ୟାଧି ମରେ ହୋଇଣି' ପୋଥିପାଠ । ଏଥିରୁ ଅର୍ଥ ସଙ୍ଗତ ହେଉନାହିଁ । (୪) ବାମଦେବରିପୁ—କନ୍ଦର୍ପ ।

## ୧୦୭

ଶ୍ୟାମ ସୁନ୍ଦର, ଜଗବନ୍ଧୁ ବିକେ ନୀଳକନ୍ଦର ।
ଏ ପରି ଗୋପରେ ଗୋରୁଙ୍କ ପଛରେ,
ବୁଲୁଥିଲେ ବନକନ୍ଦର ।।
ଶ୍ୟାମ ସୁନ୍ଦର··· !
ମାଗି ଖାଉଥିଲେ ଏ ଘର ଲବଣୀ,
ପୁଣି ହୋଇଥିଲେ ନନ୍ଦର ।
ଏ ପରି ଗୋପରେ ଇନ୍ଦ୍ର ବିବାଦରେ,
ବାମେ ଧରିଥିଲେ ମନ୍ଦର ।।
ଶ୍ୟାମ······ !
କାଳିନ୍ଦୀ ଜଳ ନିର୍ବିଷ କଲେ ହରି,
ନୃତ୍ୟ କଲେ କାଳୀଫଣାର
ମିଥିଳାପୁରେ ଜନକ ରାଜା ଘରେ,
ଧନୁ ଭଙ୍ଗିଥିଲେ ଶିବର ।।
ଶ୍ୟାମ······ !
ଶିବଧନୁ ଭାଙ୍ଗି ସୀତ୍ୟା ବିଭା ହୋଇ,
ପ୍ରବେଶ ଅଯୋଧ୍ୟା ନଗର ।
ଅହଲ୍ୟା ତାରି କବନ୍ଧ ନିସ୍ତାରିଲେ
ବାନ୍ଧିଗଲେ ସେତୁବନ୍ଧର ।।
ଶ୍ୟାମ · !

କହେ ସାଲବେଗ ଜାତରେ ଯବନ,
ଲୁଚିଯାଇ ପାଦପଦ୍ମର ।।
ଶ୍ୟାମ ସୁନ୍ଦର... ! *

* ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ କଳ୍ପନାମୂଳକ ପଦ୍ୟ ମଧ୍ୟରେ ପ୍ରସ୍ତୁତ ପଦ୍ୟଟି ଅତ୍ୟନ୍ତ ହୃଦୟଗ୍ରାହୀ । ଲ, ଲ, ର ସମକରେ ପଦ୍ୟଟି ବେଶ୍ ମନୋଜ୍ଞ ହୋଇଛି । ସରଳ ତଥା ସାବଲୀଳ ପଦ ପ୍ରୟୋଗରେ ସାଲବେଗ ଏଠାରେ ମଞ୍ଜୁଳ କାବ୍ୟିକ ଧାରା ପରିପ୍ରକାଶ କରିଛନ୍ତି ।

୧୦୭

ଶ୍ୟାମ ସୁନ୍ଦର, ଜଗବନ୍ଧୁ ବିଜେ ନୀଳକନ୍ଦର ।
ଯେ ପରି ଲବଣୀ ମାଗି ଖାଉଥିଲେ,
ପୁଅ ହୋଇଥିଲେ ନନ୍ଦର ।।
ବଛାଙ୍କ ପଛରେ ଲଗୁଡ ହସ୍ତରେ,
ବୁଲୁଥିଲେ ବୃନ୍ଦାବନର ।
ଭକ୍ଷିଲେ ଅନଳ ରଖିଲେ ଗୋକୁଳ,
ଚକ୍ଷୁଦାନ ଦେଲେ ଅନ୍ଧର ।।
ଯେ ପରି ଗୋପରେ ଇନ୍ଦ୍ରର କୋପରେ,
ବାଣ ଧରିଥିଲେ ମନ୍ଦର ।
କହେ ସାଲବେଗ ମୋ ମନ ମୋହିଲେ,
ଲୁଚିଯାଇ ପ୍ରାଣବନ୍ଧୁର ।।*

* ପ୍ରସ୍ତୁତ ପଦ୍ୟଟି ପୂର୍ବବର୍ତ୍ତୀ ପଦ୍ୟର ଅନୁରୂପ ହୋଇଥିଲେ ମଧ୍ୟ କେତେକ ପାଠ ଭେଦ ଥିବାର ଦେଖାଯାଏ । ପଦ୍ୟଟି ଡକ୍ଟର କୃଷ୍ଣଚନ୍ଦ୍ର ସାହୁଙ୍କ ଦ୍ୱାରା ସମ୍ପାଦିତ ଶ୍ରୀଜଗନ୍ନାଥ ଲୀଳାମୃତ ପୁସ୍ତକରୁ ଗୃହୀତ ।

୧୦୮

ଶ୍ରୀକୃଷ୍ଣର ବଂଶୀଧ୍ୱନି ଶୁଣି (୧)
ଥକିତ ହେଲା ଯମୁନାପାଣି ।
ମୃଗମାନେ ତୃଣ ଗ୍ରାସିଣ ରହିଲେ ଭାଙ୍ଗିଗଲା ତାଙ୍କ ବାଙ୍କଗ୍ରୀବାଣି ।।

ବଂଶୀସ୍ୱନ,
ଆହ୍ନ ନ ବଜା ନ ବଜା ଶ୍ୟାମଘନ ହେ ॥
ଇନ୍ଦ୍ର ବିବାଦୀ ହୋଇଲେ ଛନଛନ
ଧ୍ୱନି ଶୁଣି ଉଚ୍ଛୁଳିଲା ତ୍ରିଭୁବନ (୨)
ପାଷାଣ ତରଳି ବହିଗଲା,
ଅସମ୍ଭବରୁ ନାଶ୍ୱ ସମ୍ଭବିଲା,
ଯୋଗରେ ଥିଲେ ଯେ ଯୋଗାଧିପୁରୁଷ ତାଙ୍କ ଆସନ ହିଁ ଟଳିଗଲା ହେ ॥
ଜଳ ଛାଡ଼ି ମୀନ କୂଳେ ପଡ଼ି
ବୃକ୍ଷରୁ ପତର ଗଲା ଝଡ଼ି,
ଶୁଷ୍କ ତରୁମାନେ ପଲ୍ଲବିତ ହେଲେ, କୁଳବଧୂ ଗଲେ ଲାଜ ଛାଡ଼ି ହେ ॥
ଗୋପପୁରେ ଯେତେ ଗୋପୀ ଥିଲେ
ବିଷୟା ବିଷାଦ ପାସୋରିଲେ,
ଶାଶୂ-ନଣନ୍ଦଙ୍କ ଆକଟ ନ ଘେନି ଯମୁନାକୁ ନୀର ଆଣି ଗଲେ ହେ ॥
କାଷ୍ଠ ପିତୁଳୀର ପ୍ରାୟେ ହୋଇ
ସହସ୍ର (୪) ଗୋପୀ ରହିଲେ ଚାହିଁ,
ଭଣେ ସାଲବେଗ ବଂଶୀରେ ଶରଣ ରାଧାକୃଷ୍ଣ ବିନୁ ଅନ୍ୟ ନାହିଁ ହେ ॥*

---

(୧) 'ଆହା ସେ ବଇଁଶୀସ୍ୱନ'—କେତେକ ପାଠ ଥିବାର ଦେଖାଯାଏ । (୨) 'ଧ୍ୱନି ପୂରି ଉଚ୍ଛୁଳିଲା ତ୍ରିଭୁବନ'—ପାଠଭେଦ ଥିବାର ଦେଖାଯାଏ । (୩) ଏହି ପଦଟି ଅନ୍ୟତ୍ର ଦେଖାଯାଏ ନାହିଁ । (୪) 'ସକଳ ଗୋପୀ'—ପାଠଭେଦ ।

* ସମୁଦାୟ ଗୀତଟିରେ ବଂଶୀବାଦନର ଅପ୍ରସ୍ତୁତ ନିନ୍ଦା କରାଯାଇଥିଲେ ହେଁ, ବାସ୍ତବରେ ଶ୍ରୀକୃଷ୍ଣଙ୍କ ବଂଶୀସ୍ୱନର କୁହୁକ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି । କବି ସାଲବେଗ ମଧ୍ୟ ଗୋପୀମାନଙ୍କ ପରି ବଂଶୀସ୍ୱନର ମାଧୁର୍ଯ୍ୟ ହୃଦୟରେ ଅନୁଭବ କରି ନିଜକୁ ଗୋପିକା-ଭାବରେ ବଂଶୀର ଶରଣ ପଶିଛନ୍ତି ।

## ୧୦୯

ଶ୍ରୀପୁରୁଷୋତ୍ତମ ଯିବା ମନ,
ସାଙ୍ଗ ହୋଇ ଯିବା ପାଞ୍ଚଜଣ ।
ଭିନ୍ନ ହୋଇ ଯିବା କେହି ନ ଜାଣିବେ,
ବସି ଭାଳୁଥିବା ମନେ ମନ ॥
ଆହେ ପାଞ୍ଚଜଣ··· । ୧ ।

ସଲଖ ସୁନ୍ଦର ବଡ଼ଦାଣ୍ଡ,
ନବକୋଟି ଲୋକେ ତହିଁ ରୁଣ୍ଡ ।
ଦେଖିବା ମାନଙ୍କେ ପାପ କ୍ଷୟ ଯିବ,
ପାପାଧି ପାତକ ହେବ ଖଣ୍ଡ,
ଆହେ ବଡ଼ଦାଣ୍ଡ । ୨ ।

ଦାଣ୍ଡକୁ ଘେରିଛି ସିଂହଦ୍ୱାର
ବାଇଶି ପାବଛି ତ୍ରୈଲୋକ୍ୟର ।
ବଟମୂଳେ ଥାଇ ଅନନ୍ତ ମୂରତି,
ମୁକୁତା ମଣ୍ଡପେ ବମ୍ଭାଧର,
ଆହେ ତ୍ରୈଲୋକ୍ୟର । ୩ ।

ସାଜେଣି ହୋଇଛି ତିନ ରଥ
କି ଶୋଭା ପାଉଛି ପଦ୍ମମୁଖ ।
ହୀରା ନୀଳା ମୋତି ମାଣିକ୍ୟ ଜଳୁଛି,
ଫରହର ବାନା ଉଡ଼େ ନେତ,
ଆହେ ଜଗନ୍ନାଥ । ୪ ।

ଏହି ଜଗନ୍ନାଥ ଗୋପପୁରେ
ବଢ଼ୁ ରଖିଥିଲେ ନନ୍ଦଘରେ ।
ଇନ୍ଦ୍ର ବବାଦରୁ ଅଷ୍ଟମଲ୍ଲ ମାରି,
ଗିରି ଟେକିଥିଲେ ବାମ କରେ,
ଆହେ ଗୋପପୁରେ । ୫ ।

ଏହି ଜଗନ୍ନାଥେ ଆଶ୍ରେ କରି,
* ସାଲବେଗ ବୋଲେ ରାମହରି ।
ତ୍ରି ସନ୍ଧ୍ୟା କାଳରେ ସମ୍ମୁଖେ ହୋଇଲ,
ପାଶକର ଦାରୁ ଦୂର କରି । ୬ ।

---

* 'ସବେ ବୋଲୁଥିବେ' କେତେକ ସ୍ଥାନରେ ପାଠଭେଦ ଥିବାର ଦେଖାଯାଏ ।

## ୧୧୦

ସଖୀ ଗୋ, ମୋତେ କି କଲେ କାଳିଆ ।*
**ବଂଶୀଧ୍ୱନି ଶୁଣି ଭୁଲିସାଇ ଦେଲି ହୁଆ ।।**

ଏ କୁଳେ ସେ କୁଳେ,
ସଖୀ ଗୋ,
ନୋହିଲି ଦ' କୁଳେ ।
କୃଷ୍ଣରେ କଳଙ୍କୀ ରାଧା ବୋଲନ୍ତି ଗୋକୁଳେ ॥
ନିର ଅଣି ଯିବାବେଳେ ଜଗିଥାନ୍ତି ବାଟ ।
ଦଧି ବିକା ଲେଉଟାଣି ମାଗୁଥାନ୍ତି ଘାଟ (୧) ॥
ଯୁଝି (୨) ଲଗାଇଣ ଗଲ ଯିବା ମଧୁପୁରୀ ।
କୃଷ୍ଣ ଲଗି କଂଧ ଆଗେ କରିବା ଗୁହାରି ॥
ଜାତିକୁଳ ନେଲ ସବୁ ନନ୍ଦପୁଅ କାହ୍ନୁ ।
ରାଧା ରାଧା ବୋଲି ସେ ଯେ ଡାକୁଥାଏ ବେଣୁ ॥
କହେ ସାଲବେଗ ହୀନ ଜାତିରେ ଯବନ ।
ଶ୍ରୀରଙ୍ଗାଚରଣ ବିନୁ ନାହିଁ ଆନେ (୩) ମନ ॥

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟସ୍ଥ ପୋଥି O.L./1789ରୁ ସଂଗୃହୀତ ।

(୧) 'ଘାଟ' ଅର୍ଥାତ୍ ଘାଟ-କଉଡ଼ି । (୨) 'ଯୁଝି' ଅର୍ଥାତ୍ ଚିତାଗ୍ନି ଜାଳି ମଧୁପୁରୀ ଯିବାର ତାତ୍ପର୍ଯ୍ୟ କିଛି ବୁଝାଯାଉନାହିଁ, ଖୁବ୍ ସମ୍ଭବତଃ 'ଯଦି ଶ୍ରୀକୃଷ୍ଣ ଆଉ ଥରେ ହଟହଟା କରନ୍ତି, ତେବେ ଆତ୍ମହତ୍ୟା କରିବା' ଏହି ଉଦ୍ଦେଶ୍ୟରେ ପ୍ରୟୋଗ ହୋଇଛି । (୩) 'ମୋର' ପୋଥିପାଠ ।

## ୧୧୧

ସଖି ଗୋ, ବଂଶୀ କାହୁଁ ଆଣିଲି
ଯଶୋଦାନନ୍ଦନ ମୋ ପ୍ରାଣ ନେଲା ।
ଆଜର ସପନ ଦେଖିଲି ନିଶି
ବଜାଏ କଲେ ଗୋ ଶ୍ରୀ ବ୍ରହ୍ମରାଶି ।୧।
ପଲଙ୍କ ପରେ ଧଇଲେ କୋଳରେ,
ଗୁହିଁ ଚମକି ପଡ଼ିଲି ଭୂମିରେ ।୨।
ଯେଉଁ ଦିନ ତାରେ ହୋଇଲି ଦାସୀ
ଲଗାଇଲା ମୋତେ ଅନଙ୍ଗ-ଫାଶୀ ।୩।
କି ଅବା କଜାଣି ମନ୍ତ୍ରର କଲା,
ନିରବଧି ଶ୍ୟାମ ମନୁ ନ ଗଲା ।୪।

କେତେ ଯୁବା ସ୍ତିରୀ ନାହିଁ ଏ ଗ୍ରାମ,
କେମନ୍ତେ ଜାଣିଲେ ମୋହର ନାମ । ୫ ।
ମୁହିଁ କୁଳବଧୂ ଅବଳା ନାରୀ,
ବଂଶୀ ସିନା ମୋତେ ହେଲା ଭଗାର । ୬ ।
ସ୍ନାହାନ କାଳେ ବଂଶୀନାଦ ଦେଇ,
ଭୋଜନ ସମୟେ ଡାକେ ଗୋ ସହି । ୭ ।
ଶୟନ କାଳେ ବଂଶୀ କଲା ଡକା,
ନିଶିରେ ବୋଲଇ ଆସ ରାଧିକା । ୮ ।
ଦୂତୀ କର ଧରି ଚନ୍ଦ୍ରବଦନୀ,
ସାବଧାନ ହୋଇ ଶୁଣ ସଜନୀ । ୯ ।
ମୁରଲୀ ଶୁଣି ଗୋ ଅଥିର ତନୁ,
ଥରହର ହୋଇ କମ୍ପିଲା ଜାନୁ । ୧୦।
ସୁନ୍ଦରପଣେ ଶ୍ୟାମ ମନୋହାରୀ,
(୧) ବିଷ୍ଣୁଏ ଭଜନ୍ତି ନାମ ଯାହାରି । ୧୧ ।
(୨) ଭଗତକୁଳକୁ ଉଦେ ଚନ୍ଦ୍ରମା,
କହେ ସାଲବେଗ ବଂଶୀଗାରିମା । ୧୨ ।*

---

*ଏହି ଗୀତର ଅବିକଳ ନକଲ ଆଉ ଗୋଟିଏ ଗୀତ ସାଲବେଗଙ୍କ ଭଣିତାରେ ମିଳୁଛି; କିନ୍ତୁ ସେଥିରେ ୩ୟ, ୪ର୍ଥ, ୯ମ, ୧୦ମ ଓ ୧୧ଶ ପଦର ସାମଞ୍ଜସ୍ୟ ପଦ ଆଦୌ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ ।

(୧) 'ବିଷ୍ଣୁଏ' ଗୋଟିଏ ପାଠରେ ଦେଖାଯାଏ; କିନ୍ତୁ ଏଠାରେ 'ବିଷ୍ଣୁଏ' ପଦ ବିଶେଷ ଅର୍ଥସଙ୍ଗତ ନୁହେଁ । ବିଷ୍ଣୁ ବଦଳରେ ବରଂ 'ଜିଷ୍ଣୁ' ଜୟଶୀଳ ଅର୍ଥାତ୍ ଦେବବୃନ୍ଦ ହେଲେ ଅର୍ଥସଙ୍ଗତ ହେବ ।

(୨) ଭକ୍ତମାନଙ୍କ ମନର ଅଜ୍ଞାନ ଓ ଅବିଦ୍ୟା ରୂପକ ଅନ୍ଧକାର ଦୂର କରିବାରେ ଶ୍ରୀକୃଷ୍ଣ ଚନ୍ଦ୍ରସ୍ୱରୂପ ଶୀତଳ ତଥା ଉଜ୍ଜ୍ୱଳ ଆଲୋକଦାୟୀ ।

## ୧୧୨

ସତ୍ୟବାଦୀ ଗୋପୀନାଥ !*
ମୋହନ ମୁରଲୀ ନାଦେ ମୋହି ନେଲ ଚିତ୍ତ ॥

ସତ୍ୟ ବଚନେ ପ୍ରଭୁ କାଶୀରୁ ଅଇଲ ।
ବ୍ରାହ୍ମଣକୁ କନ୍ୟା ଦେଇ ସେଠାରେ ରହିଲ ।।
କପୋଳେ ଚନ୍ଦନବିନ୍ଦୁ ଚନ୍ଦ୍ର ପରି ଶୋହେ ।
ତାଳୁରେ ମୟୂରପୁଚ୍ଛ ତ୍ରିଭୁବନ ମୋହେ ।।
କର୍ଣ୍ଣରେ କୁଣ୍ଡଳ ଅଙ୍ଗୁଷ୍ଠିରେ ରତ୍ନମୁଦି ।
କଟିତଟେ ଶୋଭାଦଣେ ପୀତାମ୍ବରୀ ଖଦି ।।
କି ଲୀଳା କରୁଛ ପ୍ରଭୁ ସିଂହାସନେ ରହି ।
ଭକତ ନିମନ୍ତେ ଭୁଜ ଟେକିଛ ଗୋସାଇଁ ।।
କହେ ସାଲବେଗ ହୀନ ଜାତିରେ ଯବନ ।
ତୁମ୍ଭେ ଦୟାକଲେ ମୁଁ ଯେ କରିବି ଦର୍ଶନ ।।

---

* ପ୍ରସ୍ତୁତ ପଦ୍ୟଟି ସଂଗ୍ରହାଳୟସ୍ଥ ପୋଥି O.L./1740ରୁ ସଂଗୃହୀତ । ଭକ୍ତକବି ସତ୍ୟବାଦୀର ଶ୍ରୀ ସାକ୍ଷୀଗୋପାଳଙ୍କ ଉଦ୍ଦେଶ୍ୟରେ ଏ ପଦ୍ୟଟି ରଚନା କରି ଶ୍ରୀଜଗନ୍ନାଥ ଓ ସାକ୍ଷୀଗୋପାଳଙ୍କ ମଧ୍ୟରେ ଅଭେଦ କଳ୍ପନା କରିବା ସଙ୍ଗେ ସଙ୍ଗେ, କିମ୍ବଦନ୍ତୀରେ ପ୍ରଚଳିତ ଦାକ୍ଷିଣାତ୍ୟ ବୃଦ୍ଧ ବ୍ରାହ୍ମଣର ପ୍ରତିଶ୍ରୁତି ଭଙ୍ଗ ଓ ବୃନ୍ଦାବନର ଗୋପାଳ-ବିଗ୍ରହଙ୍କ ଉତ୍କଳ ଆଗମନ ତଥା ପଛକୁ ଚାହିଁଦିଅନ୍ତେ ସେହିଠାରେ ଗୋପାଳଙ୍କ ଅବସ୍ଥାନ ଆଦିର ଅବତାରଣା କରିଛନ୍ତି ।

## ୧୧୩

ସୁନ୍ଦର ବଦନ ପଙ୍କଜଡୋଳା ।*
ଦରଶନେ ନ କରି ହେଲା ।।
କର୍ଣ୍ଣରେ କୁଣ୍ଡଳ ଗଳେ ରତ୍ନହାର
ତଡ଼ପରି ହୋଇ ଲମ୍ବିଛି ମାଳା ।
ଯମୁନା ନଦୀକି ନାବ ଖେଳିଗଲେ
ପାରି କରିଦିଅ ନନ୍ଦର ବଳା ।।
ଲକ୍ଷେ ରାଜା ମୁଖେ କାଳୀ ଲଗାଇଲି
ସାତବେଣ୍ଟି କଲି ସହୋଦ୍ର ଶଳା (୧) ।
ଜଗନ୍ନାଥ ପ୍ରଭୁ ନୀଳାଞ୍ଚଳେ (୨) ବିଜେ
ଆଉ ଏଡ଼େ ପ୍ରଭୁ ନୋହିବେ ପରା ।।

ଅଳକାପନ୍ତିକ (୩) କଳକା ସୁନ୍ଦର
କଳାମେଘେ ଯେହ୍ନେ ଝଟକେ ତାରା ।
ଜଗନ୍ନାଥ ପ୍ରଭୁ ଏହୁ ଦେଉଳରେ
ଏଡ଼େ ପ୍ରଭୁ ଆଉ ନଥିବେ ପରା ।।
ନୀଳାଞ୍ଚଳେ ଦାରୁ- ସ୍ୱରୂପେ ବିଜୟେ
(୪) ନାମ-ସଂକୀର୍ତ୍ତନେ ହୋଇଲେ ଖେଳା ।
କହେ ସାଲବେଗ ଜାତିରେ ଯବନ
ଭବସାଗରକୁ ତୋ ନାମ ଭେଳା ।।

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟ ପୋଥି O.L./1749ରୁ ସଂଗୃହୀତ ।

(୧) ରୁକ୍ମିଣୀ ବିବାହ ପ୍ରସଙ୍ଗରେ ଶ୍ରୀକୃଷ୍ଣ ଭୀଷ୍ମକପୁତ୍ର ରୁକ୍ମାଙ୍ଗଦକୁ ରଥ ଖମ୍ବରେ ବାନ୍ଧି ସାତବେଣି କରି ତାର କେଶ କର୍ତ୍ତନପୂର୍ବକ ଅପମାନିତ କରିଥିଲେ । (୨) ନୀଳାଚଳ ଅର୍ଥରେ ପ୍ରାଚୀନ କବିମାନେ 'ନୀଳାଞ୍ଚଳ' ଶବ୍ଦ ପ୍ରୟୋଗ କରନ୍ତି । (୪) କବି ସାଲବେଗ ନାମ-ସଂକୀର୍ତ୍ତନର ପ୍ରବର୍ତ୍ତକ ଶ୍ରୀଚୈତନ୍ୟଦେବଙ୍କ ପ୍ରଚାରକୁ ଲକ୍ଷ୍ୟକରି ଏଠାରେ କହୁଛନ୍ତି । (୩) 'ଅଳକା ସୁନ୍ଦର' ପୋଥିପାଠ ।

## ୧୧୪

ସୁନା ସୁଅ ବାଟଇରେ,
ଖାଇବ ଲବଣୀ ସର ।
ନାହିଁ ନାହିଁ ବୋଲି ଶ୍ରୀମୁଖ ହଲାଇ
କହନ୍ତି କରୁଣାକର । ୧ ।
ସୁନା ଡାଟିଆରେ ଗୋଟିକା ଅଧାମ,
ସାଚନ (୧) ନବାତ କ୍ଷୀର ।
ଖାଅ ବୋଲି ମାସ୍ତେ ସରପୁଲି ନେଇ
ଦିଅନ୍ତି ରଙ୍ଗା ଅଧର । ୨ ।
ଏମନ୍ତ ସମସ୍ତେ ସବଂ ଗୋପୀ ଯାଇ,
ମିଳିଲେ ନନ୍ଦ-ମନ୍ଦିର ।
ତାହାଙ୍କୁ ଅନାଇଁ ଯଶୋଦେ ବୋଲନ୍ତି
କୃଷ୍ଣ ମୋ ବଡ଼ ସୁନ୍ଦର । ୩ ।

ଗୋପୀଏ ବୋଲନ୍ତି ନୀଳୁଆ ବାଇରେ (୨),
ଚରଣ ଦେଖାଅ ତୋର ।
ଖାଅ ସରସୁଲ ବୁଲଇ ଅଣିବି
ସବୁଗୋପୀଙ୍କର ଘର । ୪ ।
ଯଶୋଦା ବୋଲନ୍ତି ଶୁଣ ଲୋ ଯୁବତୀ,
କାହ୍ନୁ ନାଗରଙ୍କ ବର (୩) ।
କହେ ସାଲବେଗ କୃଷ୍ଣରେ ଶରଣ,
ପାଦକୁ ପାଦ ଅନ୍ତର (୪) । ୫ ।

---

(୧) ସାଚନ—ଶ୍ୱେତଶର୍କରା ବା ଧଳାଗୁଡ଼ । ଆଜକାଲି ଚିନିରେ ପ୍ରସ୍ତୁତ ଖଇକୁ 'ସାଚ ଖଇ' ବୋଲି କୁହାଯାଏ । (୨) 'ବାଇରେ' ପୋଥି ପାଠ । 'ବାଇ' ପାଠ ଅର୍ଥସଙ୍ଗତ; ଅର୍ଥାତ୍ ସ୍ନେହରେ ବାଇ ବା ବାୟା ଡାକ ସ୍ନେହସୂଚକ । (୩) 'ଶ୍ରୀକୃଷ୍ଣ ଶ୍ରେଷ୍ଠ ନାଗର' ବୋଲି ଯଶୋଦାଙ୍କ ଉକ୍ତି ଆପତ୍ତିଜନକ । ଏଭଳି ପ୍ରୟୋଗ ଅନ୍ୟତ୍ର ବୋଧହୁଏ ଦେଖାଯାଏ ନାହିଁ । (୪) 'ପାଦକୁ ପାଦ ଅନ୍ତର', ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ପ୍ରତ୍ୟେକ ପଦକ୍ଷେପରେ ମାଧୁରୀ ରହିଛି, ଏଇ ଅର୍ଥରେ କବି ପ୍ରୟୋଗ କରିଛନ୍ତି ।

## ୧୧୫

ସୁମନରେ, କିଷ୍ଟୟ ଏ ଜୀବ ଯିବ !
ସାଧୁସଙ୍ଗ ପ୍ରୀତି ଦାନ ଧର୍ମ କୀର୍ତ୍ତି ଏହି ମାତ୍ର ରହିଥିବ ॥
ବାଳୁତ ପୁଏ ଯେ ଖେଳଘର କରି
ଖେଳୁଥାନ୍ତି ବସି ନିତି ।
ଖେଳ ସରିଲେ ଚରଣେ ଭାଙ୍ଗି ଦିଅନ୍ତି
ତୋହର ଏ ସେହି ମତି ॥
ତୁହି ଯେତେ ଧନ ଯୁବତୀରତନ
ଏ ମାନ ତୁ ଭୁଞ୍ଜୁ ଦେଖି ।
ତୁହି ଅନ୍ତଃକାଳେ ଦହିବେ ଅନଳେ
କେହି ନ ପାରିବେ ରଖି ॥
ମୋହର ମୋହର ବୋଲୁଅଛୁ ତୁହି
ମୋହମାୟା ସଂସାରକୁ ।
ମଲେ ତୁ ଆଉ କ ଲେଉଟି ଦେଖିବୁ
ପୀରତି ବନ୍ଧୁଜନଙ୍କୁ ॥

ଭଜ ରାମକୃଷ୍ଣ ଗୋବିନ୍ଦ ଗୋପାଳ
ଚିନ୍ତା କର ମନ ନିତ ।
କହେ ସାଲବେଗ ଜାତିରେ ଯବନ
ମନରେ ନ କର ଖିଡ ॥*

* ଭକ୍ତକବି ସାଲବେଗଙ୍କର ଖୁବ୍ ସମ୍ଭବତଃ ଏହା ପରିଣତ ବୟସର ରଚନା । ସେ ପ୍ରସ୍ତୁତ ଗୀତରେ ଧନ ଦାରା ସୁତ ଆଦି ବିଷୟବାସନାର ଅନିତ୍ୟତା ଦର୍ଶାଇ ରାମକୃଷ୍ଣଙ୍କ ନାମଭଜନର ଯଥାର୍ଥତା ଅନୁଭବ କରିଛନ୍ତି ଏବଂ ନିଜେ ମଧ୍ୟ ସେହି ଭାବରେ ନିଜକୁ ପ୍ରସ୍ତୁତ କରି ଜୀବନଯାତ୍ରା ସାଙ୍ଗକରିବାର କଳ୍ପନା କରିଛନ୍ତି । ଭକ୍ତକବିଙ୍କର ଏହା ଏକ ନିର୍ଗୁଣ ଭକ୍ତିମୂଳକ ଚିନ୍ତାଧାରା ବୋଲି ମନେହୁଏ ।

## ୧୧୭

ସେ' ତ ଚିକ୍କଣ କାଳିଆ କାହା ପୁଅ ଗୋ କହ କହ ।
ସେ ତ କଦମ୍ବମୂଳିଆ କାହା ପୁଅ ଗୋ କହ କହ ।
ସେ ତ କାଇଁଚମାଳିଆ କାହା ପୁଅ ଗୋ କହ କହ ।୧।

ଦୂତୀ ଆଗେ ଚନ୍ଦ୍ରାବଳୀ କହି
କାଲି ଯମୁନା (୧) ଗଲି ସହି,
କଦମ୍ବମୂଳରେ କି ରୂପ ଦେଖିଲି ଚାହିଁ ଚମକିପଡ଼ିଲି ମୁହିଁ,
ଗୋ କହ କହ । ୨ ।

ଦେଖିଲେ ବୋଲଇ ରହ ରହ
କାଖରୁ କଳସୀ (୨)ତଳେ ଥୁଅ,
ବଙ୍କିମା ନୟନେ ତେରଛ ଚାହିଁଲେ କାମେ ଜରଜର ମୋର ଦେହ,
ଗୋ କହ କହ । ୩ ।

ନନ୍ଦର (୩ ନନ୍ଦନ ରୂପ ଭଲ
କେଉଁ ନାରୀ ତାକୁ (୪)ନାହିଁ ଭଲ,
କାହୁଁ ସେ ଆଣିଛି ମୋହନ ମୁରଲୀ ଗୋପନାରୀ ଚିତ୍ତ ଚୋରିକଲା,
ଗୋ କହ କହ । ୪ ।

ଚନ୍ଦ୍ରାବଳୀ ଆଗେ ଦୂତୀ କହି
ନନ୍ଦନନ୍ଦନ (୫) ଗୋ ସେହି ସେହି,

କହେ ସାଲବେଗ ଜାତିରେ ଯବନ ଶ୍ରୀରଙ୍ଗାଚରଣ କତେ ଧ୍ୟାୟି;
ଗୋ କହ କହ । ୫ ।

(୧) 'କାଳି ଯମୁନାକୁ ଗୋ ଗଲି ସଖି' ପୋଥିପାଠ; ମାତ୍ର 'ଗୋ' ପଦଟି ହଟାଇଦେଲେ ଛନ୍ଦ ଅତୁଟ ରହୁଛି । (୨) ଏଠାରେ ମଧ୍ୟ ପୂର୍ବପଦ ପରି ମୂଳରେ 'ଗୋ' ଶବ୍ଦ ରହିଛି । (୩) 'ନନ୍ଦେଶ୍ୱର ନନ୍ଦନ' ପୋଥିପାଠ । (୪) 'ତାକୁ ଗୋ' ପୋଥିପାଠ । (୫) 'ନନ୍ଦେର ନନ୍ଦନ' ମୂଳପାଠ । ତାହା ଫଳରେ ଛନ୍ଦଭଙ୍ଗ ହେଉଛି ।

## ୧୧୭

ସେ ଯେଉଁ ରାମ,
ପରଂବ୍ରହ୍ମ (୧) ନାରାୟଣ ॥
କହେ ହନୁମାନ ଶୁଣରେ ରାବଣ,
ଯେଉଁ ଦେଲା ତୋତେ ବର
ତୁ ଯାଇ ପଚାର ସେ ବିଷ୍ଣୁନାଥଙ୍କୁ,
ସେ ନାମେ ଜପେ ଶଙ୍କର । ୧ ।
ଭାଇ ବିଭୀଷଣ ପଶିଲା ଶରଣ,
ରାମ କଲେ ତାକୁ ଦୟା ।
ସେତୁବନ୍ଧ ବାନ୍ଧି ସିନ୍ଧୁ ପାରହୋଇ,
ଗଡ଼ କଲେ ସୁବଳୟା ।୨ ।
ତୁ ବୋଲୁ ମୁଁ ବଡ଼ ସିନ୍ଧୁ ମଧ୍ୟେ ଗଡ଼
(୨) ଛତ୍ରି ସମ ନାହିଁ ରଣେ ।
ଯେଉଁ ବାଲି ତୋତେ (୩) କାଖେ ଜାକନେଲା,
ସେ ମଲା ଶ୍ରୀରାମ ବାଣେ । ୩ ।
ସୀତା ସତୀ ନେଇ ରାମ ପାଶେ ଦେଇ,
ପଶ ତୁ ବେଗେ ଶରଣେ ।
ଶରଣ ପଶିଲେ ତୋତେ ନ ମାରିବେ,
ଦୟାଳୁ ସେ ନାରାୟଣ । ୪ ।
ସୀତା ସତୀ (୪) ନେଲୁ ରାମ ପାଶେ ଦେଲୁ(୫)
ମୋଡ଼ନ୍ତି ତୋ ଦଶଶିର ।
ଲଙ୍କା ଉପାଡ଼ିଣ ସମୁଦ୍ରେ ପକାନ୍ତି,
ଆଜ୍ଞା ନାହିଁ ରଘୁବର ।୫ ।

ଅବନୀର ଛଳେ ଦଶରଥସୁତ
ଜନମିଲେ ସୂର୍ଯ୍ୟବଂଶେ,
ଜହେ ସାଲବେଗ ଜାତିରେ ଯବନ
ଶ୍ରୀରାମଚରଣେ ଦାସ । ୭ । *

(୧) 'ପରମବ୍ରହ୍ମ' ପୋଥି ପାଠ । (୨) 'କ୍ଷେତ୍ରି' ପୋଥିପାଠ । (୩) 'ଭଜେ ପୋଥିପାଠ । (୪) ଓ (୫) ନଅନ୍ତ ଓ ଦଅନ୍ତ ଅର୍ଥରେ ପ୍ରୟୋଗ କରାଯାଇଛି ।

## ୧୧୮

ସ୍ୱପ୍ନେ ଦେଖିଲି ଆଜ ରଜନୀ,
ନନ୍ଦନନ୍ଦନ ମୋତେ କୋଳେ ଘେନି,
କେତେ ଭାବ କଲେ ମୁରଲୀପାଣି,
ଗୋ ସଜନି !
କଞ୍ଚନ ଦନ୍ତମସ୍ତ ପଲଙ୍କରେ,
ବଜେ କର ହାର ଧରଣ କରେ ।
ନାନା ଅଳଙ୍କାର ଖଞ୍ଜି ଅଙ୍ଗରେ,
ସାଜିଲେ ବେଶ ଅତି ଆନନ୍ଦରେ ।।
ସାଜ ବେଣୀରେ ମୁକୁତା ଅନେକ
ନେଇ ଖଞ୍ଜିଲେ ନାସାରେ ଥଳେକ ।।
ମୁକୁର ଦେଖାଇ ଯଦୁନାୟକ ।
ଧଇଲେ ମୋ ଅର୍ଦ୍ଧ ଇନ୍ଦୁ ଚବୁକ ।।
କୁଚବାଣା ତୁମ୍ଭି ମାନସ ଦଣ୍ଡି ।
ପ୍ରେମ ଆରାଜି ଗୁଣା ତହିଁ ଖଞ୍ଜି ।।
ତୀକ୍ଷଣ କରଜେ ମନ୍ମଥ ଗୁଡ଼ି ।
ନରତେ ଶୃଙ୍ଗାର ରସ ଉପୁଜି ।।
କେତେ ସୁପତରେ ସେ କାମକାର ।
ବିସ୍ତରିଲେ ଥରେ ନୋହେ ଅନ୍ତର ।।
ନୀବିବନ୍ଧ ଛନ୍ଦ ନୋହେ ବାହାର ।
ଜୁଡ଼ିକଲେ କେଳି ରସଭଣ୍ଡାର ।।

ସରିଲା ସୁରତ ହାରିଲା କାମ ।
ମୋ ଅଙ୍ଗେ ଆଉଜି ରହିଲେ ଶ୍ୟାମ ॥
ନେତ୍ରପ୍ରାନ୍ତକାଳେ ଯେସନେ ଘୂମ ।
ମଘବା-ସମ୍ପତ୍ତି ନୋହିବ ସମ ॥
ସ୍ୱେଦଉଷ୍ମରୁ ପାଇଲି ଚେତନ ।
ଉଠି ଲୋଡ଼ନ୍ତେ କୋଳେ ନାହିଁ ଶ୍ୟାମ ॥
ତେତେବେଳେ ଯାହା ହେଲା ମୋ ମନ ।
ଏ ରସେ ଭଣେ ସାଲବେଗ ହୀନ ॥*

---

* ପ୍ରସ୍ତୁତ ପଦ୍ୟଟି ରାଜ୍ୟ ସଂଗ୍ରହାଳୟସ୍ଥ ପୋଥି O.L.1801ରୁ ସଂଗୃହୀତ ହୋଇଛି । ସାଲବେଗଙ୍କ ରଚନା ମଧ୍ୟରେ ଯେପରି ଉତ୍କଟ ଆଦିରସର ସ୍ପର୍ଶ ଦିଆଯାଇଛି, ଅନ୍ୟତ୍ର ଦେଖାଯାଏ ନାହିଁ ।

## ୧୧୯

ହେ ଚକାଡ଼ୋଳା !
ଗୃହେଁ ଗୃହେଁ ବୁଡ଼ିଲା ମୋ ଭେଳା ॥

ଏକ ଚକେ ରଥ ଚଳୁଥିଲା,
ବେନି ଚକ ହେଲୁ ନ ଚଳିଲା ।
ଚାଳ ରୂପା ଦ୍ୱାରେ କବାଟ ଲଗିଛୁ, ତହିଁ ମଉଗଜ ଖେଳୁଥିଲା ।୧।
ବନ୍ଧ ନାହିଁ ପାଣି ରହୁଥିଲା,
ବନ୍ଧ ହେଲା ପାଣି ବହିଗଲା,
ସେ ବନ୍ଧ କାଟନ୍ତେ ତଳକୁ ନ ଯାଇ ଉପରକୁ ପାଣି ବହିଗଲା ।୨।
ବାଇଶି ପାବଚ୍ଛ ଗଲମୁଖେ,
କୈବଲ୍ୟ ରହିଛି ବେନି ପାଖେ,
ବ୍ରାହ୍ମଣଠାରୁ ଚଣ୍ଡାଳ ପରଯନ୍ତେ କୈବଲ୍ୟ ଦିଅନ୍ତି ମୁଖେ ମୁଖେ ।୩।
କହେ ସାଲବେଗ ରସଲୀଳା,
କେ କହିପାରିବ କୃଷ୍ଣଲୀଳା,
ସହସ୍ରା ଦୀପରେ ଅନଳ ଜଳୁଛି ତଇଲ ପକାନ୍ତେ ଲିଭିଗଲା ।୪।*

* ପ୍ରସ୍ତୁତ ପଦ୍ୟଟି ସାଲବେଗଙ୍କର ବ୍ରହ୍ମଜ୍ଞାନମୂଳକ ଭଜନ । ଏଥିରେ ଶରୀରକୁ ଏକଚକ୍ର ରଥ ରୂପେ ବର୍ଣ୍ଣନା କରି, ଶରୀରର ମୁକ୍ତି ସକାଶେ ନୀଳାଚଳର 'ବାଇଶି ପାବଚ୍ଛ' ଓ 'କୈବଲ୍ୟ' ଏକମାତ୍ର ଆଧାର ରୂପେ ବର୍ଣ୍ଣନା କରାଯାଇଛି । ଜାତିଭେଦଶୂନ୍ୟ ନୀଳାଚଳରେ ସର୍ବଧର୍ମର ସମନ୍ୱୟ ହେଉଥିବାରୁ, ସେଠାରେ ପ୍ରତ୍ୟେକ ମତବାଦର ସ୍ଥାନ ଥିଲା ଏବଂ ସାଲବେଗ ଶ୍ରୀରାଧା କୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ଭକ୍ତିଭାବରେ ନିମଜ୍ଜିଲେ ହେଁ, ଶରୀରତତ୍ତ୍ୱ ସମ୍ବନ୍ଧରେ ତାଙ୍କର କେତୋଟି ଭଜନ ଅତ୍ୟନ୍ତ ଉପାଦେୟ । ଖୁବ୍ ସମ୍ଭବତଃ କବି ସାଲବେଗ ଶେଷ ଜୀବନରେ ଭଜନଟି ରଚନା କରିଥିଲେ । କାରଣ ଶରୀରର ଗହନ-ତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରିବାକୁ ହେଲେ ବୟସର ପ୍ରୌଢ଼ତା ହିଁ ଏକାନ୍ତ ପ୍ରୟୋଜନ ।

## ୧୬୦

ହେମ ଚମ୍ପାବରଣୀ
ନବଘନ କେଶୀ ।
ଦନ୍ତ ଡାଳିମ୍ବ ପନ୍ତି
ବିମ୍ବ ଅଧର ଜ୍ୟୋତି
ବଦନ ଶରଦ ସମ୍ପୂର୍ଣ୍ଣ ଶଶୀ ।
କର୍ଣ୍ଣେ ହେମ ମୁଣ୍ଡି ବେନି,
ଭ୍ରୂ ଲତା ଭୁଜଙ୍ଗିନୀ,
ମୃଗଜ ନୟନୀ ମୁଖେ ମୃଦୁହାସି ॥
ଗିରି ନିତମ୍ବ ଶୋଭି
କି ସୁନ୍ଦର ନଟ ଆଭି
ଗଜଗମନୀ ନବାବୟସୀ ॥
ନିନ୍ଦେ ଜାନୁଯୁଗ ରମ୍ଭା,
ପଙ୍କଜ ଶୋଭା,
କହେ ସାଲବେଗ ଏଡ଼ୁ ରସେ ରସି ॥*

---

* ଏ ପଦ୍ୟଟି ଡକ୍ଟର ବଂଶୀଧର ମହାନ୍ତିଙ୍କ ଲିଖିତ 'ଭକ୍ତକବି ସାଲବେଗ' ଶୀର୍ଷକ ପ୍ରବନ୍ଧରୁ ('ଝଙ୍କାର' ନବମବର୍ଷ, ୧୨ଶ ସଂଖ୍ୟା) ସଂଗୃହୀତ । ଗୀତରେ କବି ସାଲବେଗ ଶ୍ରୀରାଧାଠାକୁରାଣୀଙ୍କର କେବଳ ସର୍ବାଙ୍ଗ ରୂପବର୍ଣ୍ଣନା କରି କ୍ଷାନ୍ତ ହୋଇଛନ୍ତି । କବି ନିଜେ ଗୋପିକାଭାବରେ 'କନକ କେତକୀ ଚମ୍ପା ତଡ଼ିତବରନୀ' ଶୀର୍ଷକ ଶ୍ରୀମତୀଙ୍କ ସ୍ୱରୂପ ବର୍ଣ୍ଣନା

କରିଥିଲେ ହେଁ, ରସିକରାଜ ଶ୍ରୀକୃଷ୍ଣଙ୍କ ସହିତ ତାଙ୍କର ସୁରତକ୍ରୀଡ଼ା ଶେଷରେ ଘର୍ମାକ୍ତ ଶରୀରକୁ ବ୍ୟଜନ ଧରି ବିଞ୍ଚିବା ଲାଗି ବାଞ୍ଛା କରିଛନ୍ତି; କିନ୍ତୁ ଏଠାରେ ଠାକୁରାଣୀଙ୍କର 'ଯୁବାବୟସୀ' ରୂପର ବର୍ଣ୍ଣନା କେଶଠାରୁ ପାଦ ପର୍ଯ୍ୟନ୍ତ କରି ସହୃଦୟତ୍ୱର ପରିଚୟ ଦେଇଛନ୍ତି; ଅନ୍ୟଥା ପାଦଠାରୁ ବର୍ଣ୍ଣନା କରାଯିବା ବିଧେୟ ।

## ୧୨୧

ହେରହୋ ନୀଳଗିରିପତି ରାଜ ହି (୧)
ସୁଭଦ୍ରା ବଳରାମ ସଙ୍ଗେ ଅନୁପାମ
ସିନାନ ମଣ୍ଡପ ମାଝ ହି । ଧ୍ରୁ. ପ. ।
ଶଙ୍ଖ ଘଣ୍ଟା କାଂସୀ ବେଣୁ ବୀଣା ବଂଶୀ
ମଧୁର ଦୁନ୍ଦୁଭି ବାଜନ୍ତି ।
(୨) ସେବକ ପଡ଼ିଆରି ଘଟ ଭରି ବାରି
(୩) ଢାରନ୍ତି ତାହାଙ୍କୁ ମାଝନ୍ତି ॥
ଜୟ ଜୟ ଧ୍ୱନି ସୁର ନର ମୁନି
ସ୍ତୁତି ନତି ପ୍ରଣିପାତ ହି,
ଶ୍ରୀମୁଖ ଚନ୍ଦ୍ରରୁ (୪) ସୌରଭ ଆସୁଛି
ଗଜେନ୍ଦ୍ର ବେଶ ଉ ଆପ ହି ॥
ଜୟ ଯଦୁପତି ଜନଲୋକ ଗତି
ବହୁ ଉପହାର ଭୋଜନ୍ତି,
ମଣି-କୋଠାଚଳେ (୫) ସାଲବେଗ ବୋଲେ
ଦେବ ନାରଗଣ ନାଚନ୍ତି ।

---

(୧) ପଦ୍ୟଟି ଶ୍ରୀନିବାସ ରଥଙ୍କ ଆନୁକୂଲ୍ୟରୁ ପ୍ରାପ୍ତ । ଏହି ଭଜନଟି 'ଶ୍ରୀ ଶ୍ରୀ ପଦକଳ୍ପତରୁ' ପୁସ୍ତକରେ ୧୫୪୨ ପଦାବଳୀ ରୂପେ ମୁଦ୍ରିତ ହୋଇଛି । ସେଥିରେ "ଅଥ ନୀଳାଚଲସ୍ୟ ପଦଂଯଥା ଆଶୋଦ୍ଧାରି ଉତ୍ତାପ୍ସାଖେମଟା" ଶୀର୍ଷକ ରହିଛି । (୨) 'ସେବାତ ପଡ଼୍ୟାରି' ବୋଲି ପଦକଳ୍ପତରୁ ପାଠ । (୩) 'ଢାରଇ ତାକଙ୍କୁ' ବଙ୍ଗଳା ପାଠ; କିନ୍ତୁ ଖୁବ୍ ସମ୍ଭବତଃ 'ଢାଳ ଢାଳ ତାଙ୍କୁ' ଶୁଦ୍ଧ ପାଠ ହେବ । (୪) 'ଶ୍ରୀମୁଖ ଚନ୍ଦ୍ରକୁ ସୌରଭ ଆଉଛ' ବଙ୍ଗଳା ପାଠ । ବୋଧହୁଏ ଶୁଦ୍ଧ ପାଠ ହେବ 'ଶ୍ରୀମୁଖ ଚନ୍ଦ୍ରରୁ ସୌରଭ ଆସୁଛି' । (୫) ମଣିକୋଠାଚଲ ଅର୍ଥାତ୍ ନୀଳାଚଳ । □□□

# ପରିଶିଷ୍ଟ

## ୧୨୨

ମୀନନୟନା ମାନ କାହିଁକି ଗୋ !
ହଲାଇ ଦେ ତୁ ଲବେ ବେଣୀକି ଗୋ ।।
ଶରଣାଗତକୁ ଦେଖି        କହଇ ଶଶୀମୁଖୀ
ଖସି ପଡ଼ିବ ଅବା ମସ୍ତକି ଗୋ ।
ତୁ ଯଦ୍ଧ ସର୍ବ ସନ୍ଧୁ        ଗର୍ବ କର୍ମାଇଁ ବନ୍ଧୁ
ତୋ ଚିତ୍ତେ ଦୟାଧର୍ମ ନାହିଁକି ଗୋ ।।
ସୁପକ୍ଷ ତୁ ଚତୁର        ଟେକ ଧର ଛାଡ଼ର
ମଧ୍ୟରେ ନାହିଁ ଜାଗା କେଣିକି ଗୋ ।
କହେ ସାଲବେଗ ହୀନ        ଏହୁ ମୋର ନିବେଦନ
ରଙ୍ଗା ଚରଣେ ଚିତ୍ତ ଧାୟୁଁ କି ଗୋ ।।*

---

* ରାଜ୍ୟ ସଂଗ୍ରହାଳୟ ପୋଥି OL/1362 ରୁ ସଂଗୃହୀତ । ଖୁବ୍ ସମ୍ଭବତଃ ଏଠାରେ ଅଭିମାନିନୀ ରାଧାଙ୍କୁ ପ୍ରୀତ ଶ୍ରୀକୃଷ୍ଣ ଚାଟୁବାଣୀ କହି ପ୍ରବୋଧନା ଦେଉଛନ୍ତି ।

## ୧୨୩

ମାଗୋ, ଭଗୀରଥୀ ଗଙ୍ଗା !
ଭାସୁଅଛୁ ଭବଜଳେ କୂଳେ ନେଇ ଲଗା ।।
ଭଗୀରଥି ଗଙ୍ଗା ତୁମେ ମା' ପୁଣ୍ୟବନ୍ତ ନଦୀ ।
ସପତ ପାତାଳପୁର ବହୁଅଛ ଭେଦି ।।
ମହା ମହାବାରେଣୀ ଯେ ଗଙ୍ଗାରେ ପଡ଼ିଲା ।
ମୋ ଗ୍ଣୁର ପାଦେକୋ ମୁଣ୍ଡ ଥରେ ନ ବୁଡ଼ିଲା ।।
ଗଙ୍ଗା ନାରାୟଣୀ ବୋଲି ମା' ସମସ୍ତେ ବୋଲନ୍ତି ।
କାହିଁରୁ ଜନମ ଗଙ୍ଗା କେହି ନ ଜାଣନ୍ତି ।।
ତ୍ରିବେଣୀ ବହୁଅଛ ମା', ତିନିଧାର ହୋଇ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଉଦ୍ଧାରିବା ପାଇଁ ।।

ରାଜା ଯେ ମୁକୁନ୍ଦ ଦେବ ମା' ଘାଟ ବନ୍ଧାଇଲେ ।
ତ୍ରିବେଣୀରେ ସ୍ନାନ ସାରି ମୁକତି ଲଭିଲେ ॥
ଭାଗୀରଥୀ ଗଙ୍ଗା ତୁମ୍ଭେ ମା' ଦୟା ରଖିଥିବ ।
କହେ ହୀନ ସାଲବେଗ ଗର୍ଭେ ଠାବ ଦେବ ।*

---

* ପ୍ରସ୍ତୁତ ପଦ୍ୟଟି ଆଲୋଚକ ଶ୍ରୀ ଅମୂଲ୍ୟ କୃଷ୍ଣ ମିଶ୍ରଙ୍କ ଦ୍ୱାରା ସଂଗୃହୀତ ଏବଂ 'ଶ୍ରୀ ଜଗନ୍ନାଥ' ଶୀର୍ଷକ ପତ୍ରିକା (ରଥଯାତ୍ରା-୧୯୮୦)ରେ ପ୍ରକାଶିତ 'ଜଗନ୍ନାଥଙ୍କ ପରମଭକ୍ତ ସାଲବେଗ' ଶୀର୍ଷକ ପ୍ରବନ୍ଧରୁ ଗୃହୀତ । କବି ଏଠାରେ ଗଜପତି ମୁକୁନ୍ଦ ଦେବ ଗଙ୍ଗାରେ ଘାଟ ନିର୍ମାଣ କରିବା କିମ୍ବଦନ୍ତୀଟିକୁ ଲୋକ ମୁଖରୁ ଶୁଣି ଏଠାରେ ଲିପିବଦ୍ଧ କରିଛନ୍ତି । ଏହି ପଦ୍ୟରୁ ଆହୁରି ମଧ୍ୟ ଜଣାଯାଏ ଯେ, ସାଲବେଗ ପ୍ରସ୍ତୁତ ପଦ୍ୟଟି ଲେଖିବା ବେଳକୁ ଓଡ଼ିଶା ବାହାରକୁ, ବିଶେଷତଃ ବୃନ୍ଦାବନ ଧାମନକୁ ଯାଇ ନଥିଲେ । ବିଶେଷତଃ ଗଙ୍ଗାରେ 'ମହା ମହା ବାରୁଣୀ ଯୋଗ' ପଡ଼ିଥିବାରୁ ସାଲବେଗ ଗଙ୍ଗାସ୍ନାନ ନିମିତ୍ତ ଯିବାକୁ ଚେଷ୍ଟା କରି ବ୍ୟର୍ଥ ହେବା ପରେ ପଦ୍ୟଟି ରଚନା କରିଛନ୍ତି । □□□

# ସହାୟକ ଗ୍ରଂଥସୂଚୀ


୧ । ଓଡ଼ିଆ ଭଜନ—୧ମ, ୨ୟ ଓ ୩ୟ ଭାଗ ।
ରାଜ୍ୟ ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ବିଭାଗଦ୍ୱାରା ପ୍ରକାଶିତ ।

୨ । ଓଡ଼ିଆ ଇତିହାସ—ଡକ୍ଟର ହରେକୃଷ୍ଣ ମହତାବ ।

୩ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର O.L./536, Cy/662, Cy/452. O.L./72, O.L./157, O.L./740, O.L./453, O.L./1116, O.L./1740, O.L./1789, O.L.1801, O.L./1598 ସଂଖ୍ୟକ ପୋଥି ।

୪ । ଖୁର୍ଦ୍ଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର

୫ । ଗୋପାଳକୃଷ୍ଣ ପଦ୍ୟାବଳୀ

୬ । ଝଙ୍କାର, ୯ମ ବର୍ଷ, ୧୨ଶ ସଂଖ୍ୟା ।

୭ । ଦାର୍ଢ୍ୟତାଭକ୍ତି ରସାମୃତ—ରାମଦାସ

୮ । ପଦକଳ୍ପତରୁ (ବଙ୍ଗଳା)

୯ । ଶ୍ରୀଜଗନ୍ନାଥ ଲୀଳାମୃତ : ସ—ଡକ୍ଟର କୃଷ୍ଣଚରଣ ସାହୁ

୧୦ । ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ (ପ୍ରାଚୀ)

୧୧ । ପ୍ରାଚୀନଦୀର ଐତିହାସିକ ବିଭବ—ସ୍ୱର୍ଗୀୟ ରାଧାଚରଣ ପଣ୍ଡା

୧୨ । ବନମାଳୀ ପଦ୍ୟାବଳୀ : ସମ୍ପାଦକ—ବାବାଜୀ ବୈଷ୍ଣବଚରଣ ଦାସ

୧୩ । କବି ବନମାଳୀ ଓ ତାଙ୍କ ପଦ୍ୟାବଳୀ ସ—ଅଧ୍ୟାପକ ଡକ୍ଟର ରତ୍ନାକର ଚଇନି

୧୪ । ବିଶ୍ୱକୋଷ (ବଙ୍ଗଳା) ସ୍ୱର୍ଗୀୟ ନରେନ୍ଦ୍ର ନାଥ ବସୁ

୧୫ । ଭଜନସବସାର—ଜଗନ୍ନାଥ ପୁସ୍ତକାଳୟଦ୍ୱାରା ପ୍ରକାଶିତ

୧୬ । ମୁକୁନ୍ଦବିଳାସ—କବି ରଘୂତ୍ତମ ତୀର୍ଥ

୧୭ । ରସିକମଙ୍ଗଳ—କବି ରସିକାନନ୍ଦ ଗୋସ୍ୱାମୀ

୧୮ । ବନମାଳୀ ପଦ୍ୟାବଳୀ : ସମ୍ପାଦକ—ପଣ୍ଡିତ ଶ୍ରୀ ସଙ୍କାର ଚରଣ ଦାସ

୧୯ । ଶ୍ରୀନିବାସ ରଥଙ୍କ ସଂଗୃହୀତ ପଦ୍ୟାବଳୀ ।

୨୦ । ଶ୍ରୀକ୍ଷେତ୍ର (ବଙ୍ଗଳା)—ସୁନ୍ଦରାନନ୍ଦ ବିଦ୍ୟାବିନୋଦ

୨୧ । ବୈଷ୍ଣବ ପଦ୍ୟାବଳୀ (ବଙ୍ଗଳା)

୨୨ । Descriptive Catalogue of Sanskrit—
Manuscripts, Vol. V
By Sri M. P. Dash

୨୩ । History of Brajabuli Literature—
By. Dr. Sukumar Sen

୨୪ । Journal of Indian History, Vol. XI.

୨୫ । The History of Medieval Vaishavism in Orissa.
By P. Mukherjee

□□□